ହେଲ, ସେ କଥା ମଧ୍ୟ କେହି ବିଚାରକୁ ନେଲେ ନାହିଁ । ବେଶୀ ଧାନ ଉତ୍ପନ୍ନ କରିବା ହିଁ ହେଲ ଜୀବନର ମୂଳ ବ୍ରତ ।

ଦେଶରେ ଚଣ୍ଡାଳମାନଙ୍କ ପରି ନାରୀମାନେ ମଧ୍ୟ ଅବହେଳିତ ଥିଲେ । ଚଣ୍ଡୀ ପୁରାଣର ପ୍ରସଙ୍ଗ ଅନୁଯାୟୀ ନାରୀମାନେ ଦେବୀ ରୂପରେ ଯୁଦ୍ଧକ୍ଷେତ୍ରରେ ପୁରୁଷମାନଙ୍କ ସହ ସଂଗ୍ରାମ କରୁଥିଲେ ହେଁ, ଏହା କେବଳ କଥାର ଏକ ଅଂଶ ଥିଲ, କବିଙ୍କର ପ୍ରକୃତ ଲକ୍ଷ୍ୟ । ଏଥିରେ ନିହିତ ନ ଥିଲ । କବି ସେଥିପାଇଁ ଦେବୀମାନଙ୍କର ମାହାତ୍ମ୍ୟ ଓ ନାରୀ ମହିମାକୁ ସ୍ୱତନ୍ତ୍ର କରି ଦେଖାଇଲେ । ଦେବୀଙ୍କର ମାହାତ୍ମ୍ୟ ପ୍ରଚାର କଲବେଳେ ସେ କହିଲେ—

'କ୍ଷଣକେ ମୋହିନୀ ସେ କ୍ଷଣକେ କାମଦେହଣା
ମୋହ ଫାଶ ଲଗାଇ ସେ କରନ୍ତି ଅତି ଦଣ୍ଡା ।
ଅସୁର ବଳ ସଇନ ସେ ନାନା ଅବସ୍ଥା
କହିବାକେ ନ ସରଇ ସେ ଦେବୀଙ୍କର କଥା ।

ପ. ସଂ— ୧୪୯, ୭-୭

ଅନ୍ୟ ସ୍ଥଳରେ ମଧ୍ୟ ସେହିକଥା—

'ହୋ ବୁଧଜନେ କ୍ଷଣେ କ୍ଷଣକେ ସେ ଶତେକରୂପ ଧରନ୍ତି ଯେବଣ ଦେବୀ
ମୁହିଂ ତାହା କେତେ ଲେଖନ କରିବି । ପ. ସଂ— ୬୭ ୪

ଦେବୀମାନଙ୍କୁ ସମାଜରେ ବିଭିନ୍ନ ଭାବେ ସମ୍ମାନ ପ୍ରଦର୍ଶିତ ହେଉଥିଲେହେଁ, ନାରୀମାନଙ୍କ ପାମରୀ, ଦୁରନ୍ତୀ, ସ୍ତିରୀ ମାତ୍ର ଛାର, ମୋଢ଼ି ଓ ନାଶରୀ କହି ଲୋକେ ହୀନ ଦୃଷ୍ଟିରେ ଦେଖୁଥିଲେ । ନାରୀମାନଙ୍କୁ 'ସ୍ତିରୀ ଲିଙ୍ଗ' କହିବା ଭିତରେ ମଧ୍ୟ ନାରୀ ଜାତି ପ୍ରତି ହେୟ ଅନାଦରତା ପ୍ରତିଫଳିତ ହୁଏ । ଅନେକ ମନ୍ତ୍ରୀ ମହିଷାସୁରକୁ ପରାମର୍ଶ ଦେଲବେଳେ ସେଥିପାଇଁ କହିଥିଲ—

'ଅନେକ ବୋଇଲା ହୋ ରୂ କହିଲେ ନ ଜାଣି
ସ୍ତିରୀ ଲିଙ୍ଗ ବୋଲି ସେ କହୁ ପୁଣି ପୁଣି ।' ପ. ସଂ – ୩୮ ୨

ପୁରୁଷମାନେ ଅତ୍ୟନ୍ତ ନୀଚ ଭାବରେ ସ୍ତ୍ରୀମାନଙ୍କୁ ହୀନ ଓ ଛାର କହୁଥିଲେ ହେଁ, ସେମାନେ ପ୍ରକୃତରେ ଅବହେଳାର ପାତ୍ର ନୁହନ୍ତି, ନାରୀ ଜାତିକୁ ଘୃଣା କରୁଥିବା ଅଜ୍ଞାନୀ ଓ ଦୁଷ୍ଟ ଲୋକଙ୍କୁ ସତର୍କ କରି ସେଥିପାଇଁ—

'ନାରାୟଣୀ ବୋଇଲେ ଶୁଣ ହେ ଦେବଅର
ଆମ୍ଭେ ରେ ସ୍ତିରି ଜାତି ନୋହୁରେ ପାମେରି ।'

ସ: ସଂ—୨୮୩୭

ସାରଳା ଦାସ ଯେ କେବଳ ନାରୀମାନଙ୍କର ମହିମା ଗାନ କରିଥିଲେ, ତାହା ନୁହେଁ, ଭାରତରେ ରଚିତ ସବୁ ପୁରାଣରେ ନାରୀମାନଙ୍କ ପାତିବ୍ରତ୍ୟ ଓ ନାରୀ-ପୁରୁଷର ସମାନାଧିକାର ପ୍ରଚାରିତ ହୋଇଥିଲା ଲୋପାମୁଦ୍ରା, ଅରୁନ୍ଧତୀ, ସାବିତ୍ରୀ, ଶାଣ୍ଡିଲ୍ୟା । ସତୀ, ଲକ୍ଷ୍ମୀ ପ୍ରଭୃତି ନାରୀ ହେଲେ ହିନ୍ଦୁ ସମାଜର ଭୂଷଣ । ଏକମାତ୍ର ପୁରାଣହିଁ ଗାର୍ଗୀ, ମୈତ୍ରୀ ପ୍ରଭୃତି ଉପନିଷଦୀୟ ଯୁଗର ନାରୀମାନଙ୍କୁ ସ୍ୱୀକୃତି ଦେଇ 'ନାରୀ-ପୁରୁଷର ସମାନାଧିକାରର ଆଦର୍ଶକୁ ପ୍ରଚାର କରିଥିଲା । ସାରଳ ଦାସ ନାରୀମାନଙ୍କ ଗୁଣ ଓ ମହିମାକୁ କେବଳ ଆଦର୍ଶ ରୂପେ ନ ରଖି କର୍ମ ଜଗତରେ ସେମାନଙ୍କୁ ପ୍ରତିଷ୍ଠିତ କରିଥିଲେ ।

ପୁରାଣ ସମ୍ବନ୍ଧରେ ମତ ଦେଇ ସ୍ୱାମୀ ବିବେକାନନ୍ଦ କହିଥିଲେ, 'ଆଜିକାଲିର ବିଶୁଦ୍ଧ ପ୍ରଣାଳୀବଦ୍ଧ ଗଣିତ ପରି ସଠିକ ସୁସଂଗତ ଭାଷା, ଆଉ ପ୍ରାଚୀନ ଲୋକଙ୍କ ଭାଷା ମଧ୍ୟରେ ପ୍ରଭେଦ କେବଳ ମାତ୍ରାର ଉଚ୍ଚତା-ନିମ୍ନତା । ଏ ସବୁ ଗଳ୍ପର ଅନ୍ତରାଳରେ ଏକ ମହତ୍ ସତ୍ୟ ବିଦ୍ୟମାନ ଏବଂ ପୂର୍ବପୁରୁଷମାନେ ଯେପରି ଏହି ସତ୍ୟକୁ ପ୍ରକାଶ କରିବାକୁ ଚେଷ୍ଟା କରୁଥିଲେ । ଅନେକ ସମୟରେ ଏହି ସବୁ ପ୍ରାଚୀନ ଗଳ୍ପ ମଧ୍ୟରେ ମହାମୂଲ୍ୟ ସତ୍ୟ ନିହିତ ଥାଏ । ଏବଂ ଦୁଃଖର ସହିତ କହିବାକୁ ପଡ଼ୁଛି, ଆଧୁନିକ ବିଦ୍ୱାନମାନଙ୍କ ସୁନ୍ଦର ମାର୍ଜିତ ଭାଷା ମଧ୍ୟରେ ଅନେକ ସମୟରେ କେବଳ ଅସାର ଜିନିଷ ମିଳିଥାଏ । ଅତଏବ ପୌରାଣିକ କାହାଣୀ ଦ୍ୱାରା ଆବୃତ କହି ଏବଂ ଆଧୁନିକ ଯୁଗର ଅମୁକ ମହାଶୟ କି ସମୁକ ମହାଶୟର ମନକୁ ପାଇଲା ନାହିଁ ବୋଲି, ସବୁ ପୁରୁଣା ଜିନିଷକୁ ଫିଙ୍ଗି ଦେବା ଠିକ୍ ନୁହେଁ । [୧] ।

ବିବେକାନନ୍ଦଙ୍କ ବାଣୀରେ କେତୋଟି କଥା ବିଶେଷ ଭାବେ ଲକ୍ଷ୍ୟଣୀୟ । ପୁରାଣ ମାପିଚୁପି କଥା କୁହେ ନାହିଁ ପୁଣି ଯାହା କୁହେ ସ୍ପଷ୍ଟଭାବେ ନ କହି ଆବରଣ ଦେଇ କୁହେ । ଏହାସତ୍ତ୍ୱେ ରବୀନ୍ଦ୍ରନାଥଙ୍କ ଭାଷାରେ ଏଥିରେ ଅଛି, ପ୍ରାଚୀନ ଯୁଗର ଇତିହାସ ଓ ଆଦର୍ଶ ।

---

୧ । ବିବେକାନନ୍ଦେର ବାଣୀ ଓ ରଚନା, ୨ୟ ଖଣ୍ଡ, ୨୬ ପୃ ।

ସାରଳା ଦାସଙ୍କ ଚଣ୍ଡୀପୁରାଣରେ ଏହିପରି ଗୋଟିଏ କଥାର ଉଦାହରଣ ଦିଆଯାଇପାରେ । କଥାଟି ହେଲା, ଦୁର୍ଗାଙ୍କ ସମ୍ମୁଖରେ ପୃଥିବୀ ଦେବୀଙ୍କର ଦୁଃଖ ନିବେଦନ । ପୃଥିବୀ ହେଲେ, ସଜ୍ଜନ ଓ ଦୁର୍ଜ୍ଜନଙ୍କ ମଳା ଝୁଲୀ । ଦୁର୍ଜ୍ଜନମାନଙ୍କ ପାପ ଭାରରେ ଯେତେବେଳେ ପୃଥିବୀ ଭାରାକ୍ରାନ୍ତ ହୁଏ, ସେତେବେଳେ ପୃଥିବୀର ବିକାର ଜାତ ହେବା ସଙ୍ଗେସଙ୍ଗେ ଏହା ଉପରେ ବାସ କରୁଥିବା ସମସ୍ତ ପ୍ରାଣୀଙ୍କର ଅହିତ ହୁଏ । ଦେଶରେ ରୋଗ, ପୀଡ଼ା ବୃଦ୍ଧି ପାଏ । ଲୋକମାନେ ବ୍ୟାଧିଗ୍ରସ୍ତ ହୋଇ ଅଳ୍ପଦିନେ ମୃତ୍ୟୁ ବରଣ କରନ୍ତି । କେବଳ ସେତିକି ନୁହେଁ, ଯନ୍ତ୍ର, ମନ୍ତ୍ର, ମୌଷଧି କାଟେ ନାହିଁ । ଖାଇବାକୁ ଇଚ୍ଛା ହୁଏ ନାହିଁ । ବନ୍ଧୁ ବାନ୍ଧବଙ୍କ ଠାରୁ ସ୍ନେହ କମିଯାଏ । ଶାସ୍ତ୍ର, ସଂହିତା ପାଠରେ ମନ ଲାଗେ ନାହିଁ । ଯେତେବେଳେ ଦେଶରେ ଏହିପରି ଏକ ଦୁର୍ଦ୍ଦିନ ଆସେ, ସେତେବେଳେ ଲୋକେ ଭଲମନ୍ଦ ବିଚାର ନ କରି, ନିଜ ନିଜ ମଧ୍ୟରେ ହାଣାହଣି ହୋଇ ମରନ୍ତି । ରୋଗ ଓ ପ୍ରତିକାର ପାଇଁ ମେଷ, ଛାଗଳ ବଳି ଦିଅନ୍ତି । ସେହି ସବୁ ରକ୍ତ ପୃଥିବୀ ଉପରେ ପତିତ ହେଲେ, ପୃଥିବୀ ଶାନ୍ତି ଲାଭ କରେ । ଲୋକେ ସୁଖରେ ରହନ୍ତି । ସାରଳା ଦାସଙ୍କ ଏହି ବର୍ଣ୍ଣନା ଅପାତତଃ ସମାଜରେ ପ୍ରଚଳିତ ଥିବା ବଳି ପ୍ରଥାର ସପକ୍ଷରେ ପ୍ରଦତ୍ତ ଏକ ଭାଷଣ ପରି ଜଣା ଯାଉଥିଲେ ହେଁ, ଏହାଥିଲା, ଅସୁରଙ୍କ ବଧ ପାଇଁ ପୃଥିବୀ ଦେବୀଙ୍କ ନିବେଦନ ।

ଅସୁରମାନେ ବ୍ରହ୍ମାଙ୍କ ଠାରୁ ଅମର ବର ପାଇଥିଲେ । ଫଳରେ ଦେବଙ୍କୁ ଜରା, ରୋଗ, ପୀଡ଼ା ଲୋପ ପାଇଲେ । ଅସୁର ବୃଦ୍ଧି ପାଇବା ଫଳରେ ସେମାନଙ୍କ ପାପ ଭାରରେ ପୃଥିବୀ ପ୍ରପୀଡ଼ିତ ହେଲା । ଏହାର ନିରାକରଣରେ ଏକମାତ୍ର ଉପାୟ ହେଲା, ଅସୁର କୁଳର ବିନାଶ ।

ସାରଳା ଦାସ ଅସୁର କହିଲେ, ମୁସଲମାନଙ୍କୁ ହିଁ ବୁଝୁଥିଲେ । ପୁରାଣରେ ବର୍ଣ୍ଣନା ଭିତରେ ତାଙ୍କ ସମୟର ଇତିହାସ ଲୁକ୍କାୟିତ ଥିଲା । ଯାହା କୁହାଯାଏ, ଦେଶରେ ଅତ୍ୟାଚାର ଓ ଲୁଣ୍ଠନ ବୃଦ୍ଧି ପାଇବା ଫଳରେ ସାଧାରଣ ଲୋକେ ଭଲ କରି ପେଟେ ଖାଇବାକୁ ପାଇ ନ ଥିଲେ, ଦେଶରୁ ସୁଖ ଓ ଶାନ୍ତି ଲୋପ ପାଇ ଯାଇଥିଲା, ଖାଦ୍ୟ ଓ ବାସ ଗୃହର ଅଭାବରୁ ଲୋକେ ରୋଗ, ଶୋକ ଓ ପୀଡ଼ାରେ ପ୍ରପୀଡ଼ିତ ହୋଇଥିଲେ, ଏବଂ ସେତେବେଳେ କବି ସାରଳା ଦାସ କହିଥିଲେ, ଏ ସବୁରୁ ରକ୍ଷା ପାଇବାକୁ ହେଲେ, କେବଳ ମେଷ, ଛାଗଳ ବଳି ଦେଲେ ଚଳିବ ନାହିଁ । ଚଣ୍ଡୀଙ୍କ ସମ୍ମୁଖରେ ନରବଳି ଆବଶ୍ୟକ । ଏହାପୁଣି ସାଧାରଣ ନରବଳି ନୁହେଁ, ଦୁର୍ଜ୍ଜନ ନରମାନଙ୍କର ବଳି । ତେବେ ସତ୍ୟର ଅପଳାପ

ହେବ ନାହିଁ । ସାରଳା ଦାସ ପୁରାଣ କହିବା ଭିତରେ, ଇତିହାସକୁ ଯେ ଲିପିବଦ୍ଧ କରୁଥିଲେ, ଏବଂ ଦେଶବାସୀଙ୍କୁ ବିଭିନ୍ନ ଦୃଷ୍ଟାନ୍ତ ଦେଇ ଜାଗ୍ରତ କରିବାକୁ ଚାହିଁଥିଲେ, ଏହି ଘଟଣା ହେଉଛି, ତାହାର ଅନ୍ୟତମ ପ୍ରମାଣ । ପୁରାଣର ସବୁଦିନେ ଲକ୍ଷ୍ୟ ରହିଲା, ଦେଶବାସୀଙ୍କ ବିଶ୍ୱଭ୍ରାତୃତ୍ୱ, ସ୍ୱଦେଶପ୍ରେମ, ସମାଜର ସ୍ୱାର୍ଥରକ୍ଷା, ସମାଜବଦ୍ଧ ଜୀବର କଲ୍ୟାଣ, ସମାଜରେ ନାରୀ ଓ ଶୂଦ୍ରର ଅଧିକାର, ମହାମାନବତା, ନାରୀ-ପୁରୁଷର ସମାନାଧିକାର, ଭକ୍ତି, କର୍ମ ଓ ଜ୍ଞାନ ମାଧ୍ୟମରେ ସତ୍ୟଧର୍ମର ପ୍ରତିଷ୍ଠା, ଜାତିଭେଦ ପ୍ରଥାର ବିଲୋପ ପ୍ରଭୃତି ସମ୍ପର୍କରେ ସଚେତନ କରିଦେବା । ଏହିସବୁ ଉଦ୍ଦେଶ୍ୟ ନେଇ ପୁରାଣ ସବୁରେ ବହୁ ଉପାଖ୍ୟାନ ଗ୍ରଥିତ ହେଲା । ମୂଳ କଥା ହେଲା ସଂସାରରେ ସବୁବେଳେ ଧର୍ମ ଓ ଅଧର୍ମର, ସତ୍ୟ ଓ ଅସତ୍ୟର ଅମୃତ ଓ ମୃତ୍ୟୁର ସଂଘର୍ଷ ଲାଗି ରହିଛି । ଅଧର୍ମ ଓ ଅସତ୍ୟ ସବୁବେଳେ ମନୁଷ୍ୟକୁ ଆସକ୍ତି ଆଡ଼କୁ, ଭୋଗ ଆଡ଼କୁ, ଲାଭ ଏବଂ ଲୋଭ ଆଡ଼କୁ ଟାଣୁଛି । ସେଥିରୁ ମାନବ ସମାଜରେ ଆସିଲା, ଅଶାନ୍ତି ଓ ମୃତ୍ୟୁ । ଜୀବର ମୃତ୍ୟୁ ନିଶ୍ଚିତ ହେଲେ ମଧ୍ୟ ତା'ର ଲକ୍ଷ୍ୟ ମୃତ୍ୟୁ ଆଡ଼କୁ ନୁହେଁ, ଅମୃତ ଆଡ଼କୁ । ସେଥିପାଇଁ ସେ ଚାହେଁ, ଦୟା, ଶୌଚ, କ୍ଷମା, ସନ୍ତୋଷ, ଓ ବିବେକର ଅଧିକାରୀ ହେବା ପାଇଁ, ପୁରାଣ ସେଥିପାଇଁ ପ୍ରଚାର କରେ ବହୁ କୀର୍ତ୍ତିମାନ ପୁରୁଷଙ୍କର ଚରିତ । ଯେଉଁମାନେ କାମ, କ୍ରୋଧ ଓ ଦୁଷ୍କର୍ମରୁ ନିବୃତ୍ତ ହୋଇ, ନର୍କ ପଥ ତ୍ୟାଗକରି ସଦାଚାର, ସତକର୍ମ ଓ ଶୀଳତା ବଳରେ ସ୍ୱର୍ଗ ଲୋକର ସନ୍ଧାନ କରିଛନ୍ତି, ସେହିମାନେ ହେଲେ ପୁରାଣ କଥାର ଆଦର୍ଶ । ପୁରାଣକାର ସାରଳା ଦାସ ପୁରାଣରେ ଏହି ମହାନ ପରମ୍ପରାର ଉପଯୁକ୍ତ ଦାୟାଦ ଥିଲେ । ଦେଶରୁ ଜାତି-ପ୍ରଥାକୁ ବିଲୋପ କରି, ନାରୀ ମାନଙ୍କୁ ପୁରୁଷ ସହିତ ସମାନ ଅଧିକାର ଦେଇ, ରୋଗ, ଶୋକ ଓ ପୀଡ଼ାରୁ ଦେଶକୁ ମୁକ୍ତ କରି ଏକ ଧନଧାନ୍ୟପୂର୍ଣ୍ଣ ଉନ୍ନତ ଓ ସମୃଦ୍ଧ ଦେଶ ଦେଖିବାହିଁ ଥିଲା, ତାଙ୍କର କାମ୍ୟ । ଚଣ୍ଡୀପୁରାଣର ବିଭିନ୍ନ ଚରିତ ଓ ଉପାଖ୍ୟାନ ମଧ୍ୟରେ କବିଙ୍କର ଏହି ଆଦର୍ଶକୁ ଦେଖିହୁଏ ।

ଲୋକ ମଙ୍ଗଳକୁ ଆଖିରେ ରଖି ଚଣ୍ଡୀପୁରାଣ ରଚିତ ହୋଇଥିବାରୁ କବି ଏଥିରେ ବହୁ ଗୁରୁଗମ୍ଭୀର ଦାର୍ଶନିକ ତତ୍ତ୍ୱକୁ ଅତି ସହଜ ଓ ସାଧାରଣ ଭାଷାରେ ପ୍ରକାଶ କରିଛନ୍ତି । ଜଗନ୍ନାଥ ଦାସଙ୍କ ଭାଗବତର ବାଣୀପରି ଏହା ସାଧାରଣ ଜୀବନ-ଯାପନର ଗାଇଡ଼୍ ନ ହେଲେ ବି, ଅର୍ଥାତ ଲୋକେ ଏହି ସବୁ ବାଣୀକୁ କର୍ମ କ୍ଷେତ୍ରରେ ଚଣ୍ଡୀ ପୁରାଣରୁ ଉଦ୍ଧାର ନ କରୁଥିଲେ ବି, ଏ ସବୁ ଯେ ସମାଜର ଅତ୍ୟନ୍ତ ପରିଚିତ ବାଣୀ ଏଥିରେ ସନ୍ଦେହ ନାହିଁ । ଉଦାହରଣ ସ୍ୱରୂପ, ହରାଇଣ ବୁଦ୍ଧି ଶିଖିଲି (ପଃସ—୩୮୪୯), ନାଶନ୍ତି କାଳକୁ ଧର୍ମ ଗୁଡ଼ାଇ (ପଃ ସଂ—୧୧୬୦), ଜାତି ହୋଇଲେ ଅବଶ୍ୟ ମୃତ୍ୟୁ ଅଛି, (ପ: ସଂ—୧୬୯୦)

ମିଛରୁ ପାପ ନାହିଂ (ପ. ସଂ—୨୦୨୨) ପ୍ରଭୃତିକୁ ଦେଖା ଯାଇପାରେ । ଏ ସବୁ ସଂସ୍କୃତ ସାହିତ୍ୟରେ ବି ପ୍ରଚଳିତ । ପ୍ରାୟ ସବୁ ଲୋକଙ୍କ ମୁଖରେ ଏ ସବୁକୁ ଶୁଣିବାକୁ ମିଳିଥାଏ । ସାରଳା ଦାସ ପ୍ରସଙ୍ଗ ସହିତ ଏ ସବୁକୁ ଏପରି ମିଶାଇ ଦେଇଛନ୍ତି ଯେ, ପ୍ରସଙ୍ଗ ଖୁବ ପୁଷ୍ଟ ହୋଇ ଯାଇଛି ।

ସଂସାରର ନଶ୍ୱରତା ପ୍ରତି ଲୋକମାନଙ୍କର ଦୃଷ୍ଟି ଆକର୍ଷଣ କରିବା ଭାରତୀୟ ଦର୍ଶନର ଏକ ସ୍ୱତନ୍ତ୍ର ଦିଗ । ଏହା ଆଉ ଦର୍ଶନ ଶାସ୍ତ୍ର ମଧ୍ୟରେ ଆବଦ୍ଧ ହୋଇ ରହିପାରି ନାହିଁ । ଭାରତର ପ୍ରତ୍ୟେକ ଲୋକ ଏ ବିଷୟରେ ସଚେତନ । ସାରଳା ଦାସ ଅଦ୍ଭୁତ ବିଶ୍ୱ ସୃଷ୍ଟିର ସ୍ୱରୂପ ଉଦ୍‌ଘାଟନ କରି କହିଛନ୍ତି—

'ଆହୋ ! ସଂସାର ଯାକ ସେ ଅଦ୍‌ଭୁତ ରଚନା
ପାପ ପୁଣ୍ୟ ଯାହା କରଇ ସେହି ରହଇ ସିନା
ଯହୁଂ ଆସିଥିଲେ ତହିଂକି ବୋଲିଗଲେ
ଜଳବିମ୍ବ ପ୍ରାଏକ ରୂପ ଦେଖାଇଲେ । ପ. ସଂ—୨୧୩୯

ସମ୍ପଦ କାହାର ନିକଟରେ ଚିରଦିନ ରହେ ନାହିଁ । 'ଆଜି ଯେ ରାଜେନ୍ଦ୍ରାସନେ କାଲି ସେ ଫକୀର ।' ଆଜି ଯେଉଁ ଜାତି ଉନ୍ନତିର ଚରମ ସୀମାରେ ଉପନୀତ, କାଲି ସେହି ଜାତି ଦୁର୍ଦ୍ଦଶାଗ୍ରସ୍ତ ହୋଇ ବହୁ ବିପଦର ସମ୍ମୁଖୀନ ହୁଏ । ସଂସାରର ଏହି ଚିରନ୍ତନ ସତ୍ୟକୁ ରୂପ ଦେବାକୁ ଯାଇ ସାରଳା ଦାସ ଲେଖିଛନ୍ତି—

'ଆହୋ ସର୍ବଦା ପ୍ରାଣୀଙ୍କର ନୋହିଇ ସମ୍ପଦ
ଯେ ବଢ଼ଇ ସେ ଛୁଡ଼ଇ ପଡ଼ଇ ପରମାଦ ।' ପ. ସଂ—୨୮୨୫

ସମାଜ କେତେକ ନୀତି ନିୟମ ଉପରେ ପ୍ରତିଷ୍ଠିତ । ଗୁରୁଜନମାନଙ୍କୁ ସମ୍ମାନ ପ୍ରଦର୍ଶନ କରିବା ଏହାର ଏକ ବୈଶିଷ୍ଟ୍ୟ । ସାଧାରଣତଃ ଅଜ୍ଞାନୀମାନେହିଁ ଏହି ଚିରନ୍ତନ ନୀତିକୁ ଲଂଘନ କରିଥାନ୍ତି । ସାରଳା ଦାସ ଚଣ୍ଡମୁଣ୍ଡଙ୍କୁ ଚେତାବନୀ ଶୁଣାଇ କହିଛନ୍ତି—

'ରାଜାଙ୍କର ଭାରିଯା ତୁମ୍ଭର ଗୁରୁ ପତ୍ନୀ
ମହାଗୁରୁ ହରି ଲୋଡ଼ ଏଡ଼େକ ଅଜ୍ଞାନୀ ।' ପ. ସଂ—୨୧୬୦

ହିନ୍ଦୁ ସମାଜରେ ନାରୀମାନେ ବିଶେଷଭାବେ ସମ୍ମାନିତା । ନାରୀ ହତ୍ୟାକୁ ଏକ ମହାପାପ ମଧ୍ୟରେ ପରିଗଣନା କରାଯାଇଥାଏ । ଏହା ହେଉଛି ସାଧାରଣ ନାରୀଙ୍କ କଥା । ସବୁ ନାରୀ ସମାନ ନୁହନ୍ତି । ସେଥିରେ କୁମାରୀ,

ପାମରୀ ନାରୀମାନେ ବି ଅଛନ୍ତି । ସେପରି ନାରୀଙ୍କୁ ଦଣ୍ଡ ଦେଇ ସମାଜକୁ ଶୃଙ୍ଖଳିତ କରିହୋଇପାରେ । କିନ୍ତୁ ତାହା ନୁହେଁ । ନାରୀ ଯେ କୌଣସି ପରିସ୍ଥିତିରେ ଥିଲେ ବି ଅବଧ୍ୟ । ସାରଳା ଦାସ କହିଛନ୍ତି—

'ମାରନ୍ତେଣ ସ୍ତ୍ରିରି ହତ୍ୟା ଜୀବନ୍ତେ ନାହିଁ ଯଶ ।'

ପ: ସ୍ୱ°—୨୧୮୧

ସାରଳା ଦାସ ସବୁବେଳେ ଆଚରଣ ଉପରେ ଗୁରୁତ୍ୱ ଦେଉଥିଲେ । ମନୁଷ୍ୟ ଶ୍ରେଷ୍ଠ ଜାତିରେ ଜନ୍ମ ହେଲେ, ଶ୍ରେଷ୍ଠ ହୁଏ ନାହିଁ । ସମାଜରେ ତା'ପାଇଁ ନିର୍ଦ୍ଦିଷ୍ଟ କର୍ମକୁ ନ କଲେ ସେ ହୁଏ ନିନ୍ଦିତ । ବୁଦ୍ଧଦେବ ମଧ୍ୟ ତାଙ୍କ ଶିଷ୍ୟଙ୍କୁ ସମ୍ବୋଧନ କରି କହିଥିଲେ, 'ଜାତିମାଂ ପୁଚ୍ଛ' ଚରଣଂ ପୃଚ୍ଛ' । ସାରଳା ଦାସ ମଧ୍ୟ କହିଛନ୍ତି—

'ପିତା ହୋଇ ଯେ କୁଟୁମ୍ବ ନ ସମ୍ଭାଳଇ
ତାହାକୁ ବଧ୍ୟ କଲେ ଦୋଷ ନାହିଂ ସର୍ବକାଳହିଂ'

ପ: ସ୍ୱ°—୧୩୬୮

ଜଗମୋହନ ରାମାୟଣରେ ଲକ୍ଷ୍ମଣ ମଧ୍ୟ ତାଙ୍କ ପିତା ଦଶରଥଙ୍କର ଅତ୍ୟଧିକ କାମବାସନା ପ୍ରତି କଟାକ୍ଷ କରି ତାଙ୍କୁ 'ସ୍ତ୍ରୈଣ' କହିବାକୁ କୁଣ୍ଠା ପ୍ରକାଶ କରିନଥିଲେ ।

ବୀରତ୍ୱ ହେଉଛି, କ୍ଷତ୍ରିୟ କୁଳର ପ୍ରକୃତ ଅଭିମାନ । ସଂଗ୍ରାମ କରି ମରିବା ହେଲା, ଏହି ଜାତିର ଧର୍ମ । ଯୁଦ୍ଧକୁ ଡରି ଶରଣ ପଶିବାକୁ କ୍ଷତ୍ରିୟ କେବେହେଲେ ପ୍ରୋତ୍ସାହନ ଦିଏ ନାହିଁ । ମହିଷାସୁର ଯୁଦ୍ଧକ୍ଷେତ୍ରରେ ପରାସ୍ତ ହେଲେ ମଧ୍ୟ 'କାତର' ହୋଇ ଶରଣ ପଶିବାକୁ ଇଚ୍ଛା କରିନାହିଁ । ସେତେବେଳେ ସାରଳା ଦାସ କହିଛନ୍ତି—

'କାତର ହୋଇକରି କରିବାକ କିସ
କ୍ଷତ୍ରି କୁଳକୁ ସେ ଅଟଇ ଉପହାସ'

ପ. ସ୍ୱ°—୧୪୨୪

ସାରଳା ଦାସ ସବୁବେଳେ ତାଙ୍କ ପ୍ରିୟ ଦେଶବାସୀଙ୍କୁ କାମବାସନାରୁ ଦୂରରେ ରହିବା ପାଇଁ ସଚେତନ କରିଛନ୍ତି, ତାଙ୍କ ମହାଭାରତରେ ପୁଣି ଚଣ୍ଡୀ ପୁରାଣରେ । ଏଥିପାଇଁ ଚଣ୍ଡୀ ପୁରାଣରେ ସେ ସଂସ୍କୃତରେ ନଥିବା କିଛି

ଉପାଖ୍ୟାନର ସଂଯୋଜନ କରିଛନ୍ତି । ସେ ସବୁ ଉପାଖ୍ୟାନରେ ସେ କେବଳ ଗୋଟିଏ ତତ୍ତ୍ୱ ଉପରେ ଗୁରୁତ୍ୱ ଦେଇଛନ୍ତି । ତାହା ହେଲା—

'ପରସ୍ତ୍ରୀ ଲୁବ୍ଧେ ବହୁତ କଷ୍ଟପାଇ' ପ. ସଂ—୧୭୧୭

ଅନ୍ୟ ସ୍ଥଳରେ ପଣ୍ଡିତମାନଙ୍କୁ ସମ୍ବୋଧନ କରି କବି କହିଛନ୍ତି—

'ତୈଲୋକ୍ୟଂ ଯେବଣ ଶମ୍ଭୁ ନିଶମ୍ଭୁ ସାଧି
ସେ ନାଶ ଗଲେ ଯେ ସ୍ତ୍ରୀଙ୍କ ରତୁ ବୁଦ୍ଧି ।
ହେ ପଣ୍ଡିତ ଜନେ ବିଗ୍ରର କର ହୃଦେ
ତର ଆବଶ୍ୟ କ୍ଷଏ ଯାଇଟି ପରସ୍ତ୍ରୀ ଲୁବ୍ଧେ ।

ପ. ସଂ—୨୧୦୧-୨୧୦୨

କାମନାରୁ ଲୋଭ, ଲୋଭରୁ ପାପ, ଓ ପାପରୁ ମୃତ୍ୟୁ ହୁଏ । ମଣିଷ ମନରେ କାମନା ପ୍ରତି ଆସକ୍ତି ଯେତିକି ବୃଦ୍ଧି ପାଏ, ମନୁଷ୍ୟ ଅମରତ୍ୱ ଠାରୁ ସେତିକି ଦୂରେଇ ଯାଏ । କେବଳ ସେତିକି ନୁହେଁ, କାମନା ସଙ୍ଗେ ମନୁଷ୍ୟର ଚିନ୍ତା ବଢ଼େ । ମନୁଷ୍ୟ ଜୀବନର ଏହି ରହସ୍ୟକୁ ପ୍ରକାଶ କରି ସାରଳ ଦାସ କହିଛନ୍ତି—

'ପୁଣି ବୋଇଲା ମୋହର ପାପ ଆତ୍ମା ଥିଲେ
ଦିନେ ଦିନେ ଅନେକ ଚିନ୍ତା ହେଉଥିବ ଭଲେ'

ପ. ସଂ—୪୦୩୩

ସାରଳା ଦାସଙ୍କ ନୀତି ବଚନର ସାର କଥା ହେଉଛି, ପାପକର୍ମରୁ ଦୂରରେ ରୁହ, ମିଛ କଥା କୁହ ନାହିଁ । ଏ ସଂସାର ସତ୍ୟ ଉପରେ ପ୍ରତିଷ୍ଠିତ । ଅଜ୍ଞାନତାକୁ ଦୂରକର, ଅହଂ ଗୁଣକୁ ବିନାଶ କର, କର୍ମକୁ ଆଦର, 'ଦୈବ କହିଲା' କଥାକୁ ମନରେ ରଖି ଦାନ ଧର୍ମରେ କାଳାତିପାତ କର । ଏ ସବୁ ବିଧି ବିଧାନକୁ ଜଗିରଖି ଚଳିଲେ ମଧ୍ୟ ଧର୍ମ ଗ୍ଭଡ଼ିଲେ କେହି ରକ୍ଷାକରି ପାରିବେ ନାହିଁ । ମଣିଷର ଶେଷବେଳ ଉପସ୍ଥିତ ହେଲେ, ତାର ମତିଭ୍ରମ ହୁଏ ଓ ସେତେବେଳେ ତାକୁ ଧର୍ମ ଗ୍ଭଡ଼େ । ସାରଳା ଦାସ କହିଛନ୍ତି –

'ନାଶନ୍ତ କାଳକୁ ଯେ ଗ୍ଭଡ଼ିଲୁ ସର୍ବଧର୍ମ
ସେ କାଳକୁ ଧର୍ମ ଗ୍ଭଡ଼ଇ ପ୍ରାଣୀ ହୋନ୍ତି ମତିଭ୍ରମ' ।

ପ. ସଂ— ୧୧୬୮

ନୀତି ବଚନରେ ସାରଳା ଦାସ ଚଣ୍ଡୀ ପୁରାଣକୁ ଭାରାକ୍ରାନ୍ତ କରି ନାହାନ୍ତି । ବ୍ରତଜ୍ଞ ହେଲେ ପଦେ ଅଧେ ନୀତି ବାକ୍ୟ ଶୁଣାଇ ସେ ପୁଣି କଥା କହିବାକୁ ଆରମ୍ଭ କରିଛନ୍ତି । ପୁଣି ବଡ଼ ବଡ଼ ଦର୍ଶନ ତତ୍ତ୍ୱ ନ ଶୁଣାଇ, ଯାହା ସବୁଦିନେ କାମରେ ଲାଗିବ, ସେହିପରି ନୀତି କଥା ସବୁକୁ କହି, ସମାଜରେ ଜଣେ ଦାର୍ଶନିକ ଭାବରେ ନୁହେଁ, ଜଣେ ସାଧାରଣ ସାମାଜିକ ବ୍ୟକ୍ତିଭାବେ ନିଜକୁ ପ୍ରତିଷ୍ଠିତ କରିଛନ୍ତି ।

## ସାଂସ୍କୃତିକ ଚେତନା —

ଉତ୍କଳୀୟ ସଂସ୍କୃତିର ମୂଳ ଉପାଦାନ ହେଉଛି, କଳା ପ୍ରେମ । ପ୍ରସ୍ତର ଗାତ୍ରରେ କମନୀୟ ଚିତ୍ର ଅଙ୍କନ କରି ସେମାନେ ସଂସାରରେ ଯଶସ୍ୱୀ ହୋଇ-ପାରିଥିଲେ । ଧର୍ମ, ସାହିତ୍ୟ, ସଙ୍ଗୀତ ଓ ନୃତ୍ୟ କଳାରେ ମଧ୍ୟ ସେମାନଙ୍କର କୃତିତ୍ୱ କୌଣସି ଦିଗରୁ ଊଣା ନଥିଲା । ସାହିତ୍ୟରେ ଯେତେବେଳେ ଯେଉଁ ପ୍ରବାହ ଆସି ଭାରତଭୂମିକୁ ପ୍ଲାବିତ କରିଥିଲା, ସେତେବେଳେ ସେମାନେ ସେଥିରେ ଯେ କେବଳ ସକ୍ରିୟ ସହଯୋଗ କରିଥିଲେ, ତାହା ନୁହେଁ, ନିଜର ସ୍ୱକୀୟତା ପ୍ରତିପାଦନ କରିପାରିଥିଲେ । ଓଡ଼ିଶାଭୂମିରେ ଏହି ସାଧନାର ମୂଳ ଉତ୍ସ ହେଲେ ସାରଳା ଦାସ । ସଂସ୍କୃତ, ପ୍ରାକୃତ, ଓ ଅପଭ୍ରଂଶର ବନ୍ଧନରୁ ଓଡ଼ିଆ ଭାଷାକୁ ମୁକ୍ତକରି, ଓଡ଼ିଆ ସାହିତ୍ୟର ସେ ଯେଉଁ ବିଶାଳ ସୌଧ ନିର୍ମାଣ କଲେ, ତାହାହିଁ ପରବର୍ତ୍ତୀ ଯୁଗରେ ହେଲା ଓଡ଼ିଆ କବିମାନଙ୍କର ଆଦର୍ଶ ।

ସାରଳା ଦାସ ଥିଲେ, ଓଡ଼ିଶାର ସୂର୍ଯ୍ୟବଂଶୀୟ ସ୍ୱାଧୀନ ନରପତି କପିଳେନ୍ଦ୍ର ଦେବ ଓ ପୁରୁଷୋତ୍ତମ ଦେବଙ୍କ ସମକାଳୀନ କବି । ସେତେବେଳକୁ ମୁସଲମାନ ଶାସକମାନେ, ସମସ୍ତ ଭାରତବର୍ଷରେ ନିଜର ଆଧିପତ୍ୟ ଦୃଢ଼ କରି ସାରିଥିଲେ । ଏକ ବିଚିତ୍ର ମୁଶ୍ଲୀ ସଂସ୍କୃତିର ସଂଘର୍ଷରେ ଆସି ଭାରତୀୟ ହିନ୍ଦୁ ସଂସ୍କୃତିରେ ପତନୋନ୍ମୁଖୀ ଦୃଷ୍ଟି ହେଉଥିଲା । ସାରଳା ଦାସ ନିଜକୁ ମୂର୍ଖ, ଅପଣ୍ଡିତ, ଅଳ୍ପଧୀ ଓ ଅପାଠକ କହୁଥିଲେହେଁ, ଦେଶର ସଂସ୍କୃତି ପ୍ରତି ଆସିଥିବା ବିପଦ ପ୍ରତି ସଚେତନ ଥିଲେ । ଦେଶ ଓ ଜାତିକୁ ମୁସଲମାନ ସଂସ୍କୃତିର ଆକ୍ରମଣରୁ ରକ୍ଷା କରିବା ପାଇଁ ସେ ସତତ ପ୍ରଯତ୍ନଶୀଳ ଥିଲେ । ଏସବୁ ସତ୍ତ୍ୱେ ସେ ଥିଲେ ଜଣେ ସାଧାରଣ ମାନବ । କୌଣସି ବ୍ୟକ୍ତି ତା'ର ସୀମିତ ଶକ୍ତି ଦ୍ୱାରା ଏହି ଆକ୍ରମଣକୁ ପ୍ରତିରୋଧ ବା ପରାହତ କରିବା ସମ୍ଭବ ନଥିଲା । ସେଥିପାଇଁ ସେ ଦେବୀ ଶକ୍ତିର ସାହାଯ୍ୟ ଲୋଡ଼ିଥିଲେ । ସେ ଯେତେବେଳେ ନିଜକୁ 'ଶାରଳା ଦେବୀଙ୍କ ସୁତ' କହୁଥିଲେ, ସେତେବେଳେ ତାଙ୍କ ଭକ୍ତିରେ ଏକ ନୂଆ ଶକ୍ତି ସଞ୍ଚାରିତ ହେଉଥିଲା । ହିନ୍ଦୁମାନେ ତାଙ୍କୁ 'ଦେବୀସୁତ' ଭାବେ ଗ୍ରହଣ କରି ତାଙ୍କର ପ୍ରତ୍ୟେକ

ବାଣୀକୁ ଦେବ ବାଣୀ ରୂପେ ଗ୍ରହଣ କରୁଥିଲେ, ଏବଂ ବିରୋଧୀମାନେ ମଧ୍ୟ ତାଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ପାଇଁ ସାହସ କରୁ ନଥିଲେ । ଏହିପରି ଏକ ପରିବେଶ ସୃଷ୍ଟି କରି ସେ ରଚନା କଲେ ତାଙ୍କର 'ଚଣ୍ଡୀ ପୁରାଣ' ।

ମହିଷାସୁର ବଧ ପାଇଁ ଚଣ୍ଡୀଙ୍କର ଆବିର୍ଭାବ ଏକ ପୁରାଣ କଥା । କିନ୍ତୁ ହିନ୍ଦୁ ଜାତିର ବିଶ୍ୱାସ ଅନୁଯାୟୀ, ଏ ଦେଶକୁ ଓ ଏ ଜାତିକୁ ଯେତେବେଳେ ବିପଦ ଆସେ, ଯେତେବେଳେ ଏ ଦେଶରେ ଭ୍ରଷ୍ଟାଚାର ବ୍ୟାପ୍ତ ହୁଏ, ସେତେବେଳେ ଏ ଦେଶର ପାଳନକର୍ତ୍ତା ବିଷ୍ଣୁ, ଦେବ ବା ଦେବୀ ରୂପରେ ଅବତାର ଗ୍ରହଣ କରନ୍ତି, ଦେଶର ଶତ୍ରୁକୁ ବିନାଶ କରିବା ପାଇଁ । ହିନ୍ଦୁଧର୍ମର ଏହି ମୂଳ ତତ୍ତ୍ୱଟି ହିନ୍ଦୁ ଜାତିକୁ ସବୁବେଳେ ସଙ୍କଟ କାଳରେ ମୁକ୍ତି ପାଇବାର ସାହସ ଦେଇ ଆସିଛି ।

ସାରଳା ଦାସଙ୍କ ଚଣ୍ଡୀ ପୁରାଣରେ ହିନ୍ଦୁ ସଂସ୍କୃତିର ଏହି ମୂଳ ତତ୍ତ୍ୱଟି ଅତି ଜୀବନ୍ତ ଭାବେ ପ୍ରକାଶିତ । ଚଣ୍ଡୀ ଏକ ଅପରାଜେୟ ଶକ୍ତି । ନିଜ ଶରୀରରୁ ଶତ ସହସ୍ର ଦେବୀ ମୂର୍ତ୍ତି ସୃଷ୍ଟି କରି ସେ ସଂଗ୍ରାମ ଭୂମିରେ ଝାସ ଦେଲେ । ସାରଳା ଦାସଙ୍କ ଚଣ୍ଡୀ ପୁରାଣର ଏହି ଅଂଶଟି ପାଠକକୁ ଚମତ୍କୃତ କରେ । ବିଭିନ୍ନ ପ୍ରକାର ବାହାନ, ବିଭିନ୍ନ ପ୍ରକାର ଅସ୍ତ୍ର, ବିଭିନ୍ନ ରୂପ ଓ ବିଭିନ୍ନ ପ୍ରକାରର ନାମ ନେଇ ସେମାନେ ଯେତେବେଳେ ରଣଭୂମିରେ ପ୍ରବେଶ କଲେ, ସେତେବେଳେ ଜଣାଗଲା, ସତେ ଯେପରି ଭାରତବର୍ଷର ପ୍ରତ୍ୟେକ ପ୍ରସିଦ୍ଧ ଦେବୀ ପୀଠର ଆରାଧ୍ୟ । ଦେବୀମାନଙ୍କ ନେତୃତ୍ୱରେ ଭାରତର ଗ୍ରାମଦେବତୀମାନେ ନିଜ ନିଜର ପୀଠସ୍ଥାନ ପରିତ୍ୟାଗ କରି ଯୁଦ୍ଧପାଇଁ ଏକଜୁଟ ହୋଇଗଲେ । ଏଥିରେ ଏକାବେଳେକେ ଦୁଇଟି କାମ ହୋଇଗଲା । ଭକ୍ତ କବି ସାରଳା ଦାସ ଦେବୀଙ୍କର ସହସ୍ରନାମ ଉଚ୍ଚାରଣ କରିବାର ସୌଭାଗ୍ୟ ପ୍ରାପ୍ତ ହେଲେ, ଏବଂ ରଣଭୂମି ମଧ୍ୟ ଲକ୍ଷେ କୋଟି ମଭିତ ଅଗଣିତା ପରମ୍ୟୁଧ, ଚଣ୍ଡୀ, କୁମଣ୍ଡା, ଯୋଗିନୀ, ପିଙ୍ଗୁଳୁଣୀ ଓ ଡାକେଣୀଙ୍କ ଦ୍ୱାରା ପରିପୂର୍ଣ୍ଣ ହୋଇଗଲା ।

ଚଣ୍ଡୀଙ୍କ ସଂପର୍କରେ ହିନ୍ଦୁମାନଙ୍କର ଧାରଣା କେବଳ ଅଦ୍ଭୁତ ନୁହେଁ, ବିକଶାଳ ମଧ୍ୟ । ଶତ୍ରୁକୁ ଧ୍ୱଂସ କରିବା ପାଇଁ ସଂସାରରେ ଯେତେପ୍ରକାର ଭୟଙ୍କର କଳ୍ପନା ହୋଇପାରେ, ସବୁ ଚଣ୍ଡୀଙ୍କଠାରେ ସମ୍ଭବ । ସେମାନେ ଯେତେ ଖାଇଲେ ମଧ୍ୟ ସେମାନଙ୍କ ପେଟ ପୂରେ ନାହିଁ । ସେମାନେ ଅସୁରମାନଙ୍କୁ ଗୋଟା ଗୋଟା ପୁଣି ଜୀଅନ୍ତା ଗିଳି ପକାନ୍ତି । ସେମାନଙ୍କ ଯୋଜନ ଲମ୍ବା ବାହୁକୁ ପ୍ରସାରିତ କରି ସେମାନେ ଏକାବେଳେକେ ଦଶ, ବିଂଶ, ତିରିଶ ଦନ୍ତେ ଧରି, ଖଣ୍ଡ ଖଣ୍ଡ କରି

କାମୋଡ଼ି, ଚିରିବାଇ ଖାଆନ୍ତି । ସେମାନଙ୍କ ସେହି ଭୀଷଣ ରୂପର ବର୍ଣ୍ଣନା କରି ସାରଳା ଦାସ ଲେଖିଛନ୍ତି—

‘ଟହ ଟହ ହାସ୍ୟେ ଯେ ମତୁଆଳ ନାଟ ଖଣ୍ଡି
ହୁଂହୁଂ ଗରଜନ କୂହୁ କୁହୁ ରଡ଼ି ।
ରଟ ରଟ ମଟ ମଟ ବାଜନ୍ତି ହସ୍ତ ଖଣ୍ଡା
ରେ ରେ କାର ଶବଦେ ଡାକନ୍ତି ଚୃମଣ୍ଡା । ପ. ସଂ – ୧୫୯୬-୯୭

ଚଣ୍ଡୀମାନେ ଯେ କେବଳ ‘ରୌଦ୍ରର ବଦନ’, ଘୋର ଅନ୍ଧାର ରୂପ, ଧରି, କଳକଳା ଶବ୍ଦକରି, ଅଷ୍ଟବଙ୍କ ନାଟ ନାଚି, ଖେମଟା ଗୀତ ଗାଇ, ଅକଳିତ ସମୋହ୍ରି ବେଶଧରି ରଣଭୂମିରେ ପ୍ରବେଶ କରିଥିଲେ ତାହା ନୁହେଁ, ଯୁଦ୍ଧଭୂମିରେ ସେମାନେ ଯେଉଁଭଳି ଅସୁରମାନଙ୍କୁ ବିନାଶ କରୁଥିଲେ, ତାହା ମଧ୍ୟ ଅତ୍ୟନ୍ତ ଭୟଙ୍କର ଥିଲା । କବିଙ୍କ ବର୍ଣ୍ଣନା ମଧ୍ଯରୁ ଉଦାହରଣ ପାଇଁ କେବଳ ଗୋଟିଏ ଦୃଶ୍ୟ ଦେଖାଯାଇପାରେ । କବି କହିଛନ୍ତି—

‘ମୁଣ୍ଡ ମୋଷ୍ଡଧରି ଯେ କାମୋଡ଼ନ୍ତି ହୁଆ
ଗିଳନ୍ତି ଗୋଡ଼ କାହାର ଲମ୍ବିଥାଇ ବାହା ।
ଶରୀରସାକ ଗିଳଣ ଦିଶୁଥାଇଂ ମୁଣ୍ଡ
ଗର୍ଭୁ ବାହାର ହୋଇ ଲମ୍ବୁଥାଇ ଶୁଣ୍ଡ ।
ମଧ୍ୟ କଙ୍କାଳ ଖଣ୍ଡେ ଦନ୍ତେ ଥାଇ ଧରି
ମୁଣ୍ଡି ପେଟ କେ ଗୋଡ଼ ଦୁଇ ବାହାର କରି ।
ମୁଣ୍ଡ ମୋଡ଼ିଣ କେ କାଖେ ଚିପି
ରୌଦ୍ରର ବଦନ କେ ଅନ୍ଧାର ଘୋର ରୂପୀ ।’

ପ. ସଂ—୧୬୦୦–୧୬୦୪

କବିଙ୍କର ଏହି ସବୁ ବର୍ଣ୍ଣନା ମଧ୍ଯରେ ପୁରାଣ ଲେଖି କବିତ୍ୱ ଶକ୍ତି ପ୍ରଦର୍ଶନ କରିବାର ଉଦ୍ଦେଶ୍ୟ ଯେ ନ ଥିଲା ତାହା ନୁହେଁ, କିନ୍ତୁ ଏହି ବର୍ଣ୍ଣନା ଏକ ସଙ୍କଟଗ୍ରସ୍ତ ଜାତି ସମ୍ମୁଖରେ ଯେଉଁ ଆଶା ଓ ଭରସାର ବାଣୀ ଶୁଣାଇଥିଲା, ତାହା ମଧ୍ଯ ଭୁଲିବାର ନୁହେଁ । ଅବତାରବାଦରେ ବିଶ୍ୱାସ କରୁଥିବା ହିନ୍ଦୁଜାତି ଯେତେବେଳେ କଳ୍ପନା ଚକ୍ଷୁରେ ଥରେ ଦେଖି ନେଉଥିଲା ଯେ ଭଗବାନ ଏହି ରୂପରେ ଜନ୍ମ ଗ୍ରହଣ କରି ଅତୀତରେ ଅସୁର ବିନାଶ କରିଥିଲେ ଏବଂ ଭବିଷ୍ୟତରେ ମଧ କରିବେ, ସେତେବେଳେ ତା’ର ଅଶ୍ରୁସଜଳ ଶିର ସ୍ୱତଃ ଦୁର୍ଗାଙ୍କ ଚରଣ ତଳେ ଅବନତ ହୋଇ ଯାଇଥିଲା, ଏବଂ ସେ କବିଙ୍କ ସହିତ କଣ୍ଠ ମିଳାଇ ଗାଇଥିଲା—

"ଚଣ୍ଡିକା ଶାହାସ୍ର ଲଏ କର ବାବୁ
ଧର୍ମ ଅର୍ଥ କାମ ମୋକ୍ଷ ପ୍ରାପତ ଅଛୁ ସବୁ ।
ଧନ ସନ୍ମାନ ବର୍ଦ୍ଧିତ ହଅନ୍ତି ମହାମାଏ ।
ବଦସ୍ତନ୍ତି ସାରୋଳ ଦାସ କରନ୍ତି ଜଏ ଜଏ ।
ମ. ସ୦—୨୨୦୭୮

ହିନ୍ଦୁ ସଂସ୍କୃତରେ ଅବତାର ବାଦ ପରି ମୂର୍ତ୍ତିପୂଜା ଅନ୍ୟ ଏକ ବୈଶିଷ୍ଟ୍ୟ । ମୁସଲମାନମାନେ ଯେତେବେଳେ ଏ ଦେଶରେ ପ୍ରବେଶ କଲେ, ସେମାନେ ସେତେବେଳେ ହିନ୍ଦୁ ଧର୍ମକୁ ଲୋପ କରିବା ପାଇଁ ମେଢ଼, ମଣ୍ଡପ, ଦେଉଳ, ଜଗତୀ ଭାଙ୍ଗି ମୂର୍ତ୍ତି ସବୁକୁ ନଷ୍ଟ କଲେ । ଫଳରେ ଦେଶର ଅଗଣିତ ଦେବ ଦେବୀ ମୂର୍ତ୍ତି ଖଣ୍ଡ ବିଖଣ୍ଡିତ ହୋଇଗଲା । ହିନ୍ଦୁ ଧର୍ମର ସ୍ମୃତିକାରମାନେ ପୂର୍ବରୁ ଅକ୍ଷୁର୍ଣ୍ଣ ମୂର୍ତ୍ତି ପୂଜା କରିବାର ବ୍ୟବସ୍ଥା ରଖିଥିଲେ । ସେହି ବ୍ୟବସ୍ଥା ଅନୁଯାୟୀ ବହୁ ଦେବ ଦେବୀ ଅପୂଜା ରହିବାର କଥା ସାରଳା ଦାସ ମହିଷାସୁର ଉପାଖ୍ୟାନ ସହ ଦେଶରେ ଘଟିଥିବା ଏହି ଘଟଣାକୁ ମିଶାଇ ତାଙ୍କ ପୁରାଣରେ ବର୍ଣ୍ଣନା କରିଥିବା ଆଗରୁ କୁହାଯାଇଛି । ଚଣ୍ଡୀପୁରାଣରେ କୁହାଗଲା ମହିଷାସୁରକୁ ବଧ କରିବା ପାଇଁ ଲକ୍ଷ କୋଟି ଦେବୀ ତାକୁ ଘେରି ବସିଥିଲେ । ମହିଷାସୁର ସେମାନଙ୍କୁ ସିଂଘାଡ଼ି ଦେବାରୁ ସେମାନେ ଦୂର ଦୂରାନ୍ତରରେ ଛିଟିକି ପଡ଼ିଗଲେ ଫଳରେ କାହାର ହାତ ଭାଙ୍ଗିଲା ତ କାହାର ଗୋଡ଼ । କେ କଣା ହେଲା ତ କେ କୁଜା ହୋଇଗଲା । ଏପରି ଏକ ସଙ୍କଟ ବେଳେ ସଂସ୍କୃତି ସଚେତନ କବି ସାରଳା ଦାସ ହିନ୍ଦୁ ଧର୍ମର ପ୍ରବକ୍ତା ଭାବେ ଏକ ନୂଆ ବ୍ୟବସ୍ଥାର ପ୍ରଚଳନ କଲେ ।

ଯେବଣ ଦେବୀମାନେ ରହିଲେ ଯେବଣ ସ୍ଥାନେ
ଉଠି ନ ପାରିଲେ ସେ କର ଚରଣ ଭଗ୍ନେ ।
କ୍ଷେତ୍ରି କାଣୀ କୁଜୀ ଅପାରଗ କୁମ୍ଭା
ପଞ୍ଚୁରା ଭଗନ ହୋଇ ବସନ୍ତି ବଡ଼ୁପା
ଯେ ଯେଉଁଠାରେ ପଡ଼ିଲେ ହୋ ପରୀକ୍ଷ ରାଜା
ସବୁ ପାଷାଣ ହୋଇ ଘେନିଲେ ତହିଂ ପୂଜା ।
ମ.ସ—୪୨୦୪-୪୨୦୭

ହିନ୍ଦୁ ସଂସ୍କୃତିର ପୁଣି ଗୋଟିଏ କଥା । ସ୍ମୃତିକାରମାନେ ସ୍ତ୍ରୀ ର ତିନି ଦଶା ଅର୍ଥାତ ସ୍ତ୍ରୀ ବାଲ୍ୟ କାଳରେ ପିତାର, ଯୌବନ ବେଳେ ସ୍ୱାମୀର ଓ

ବୃଦ୍ଧାବସ୍ଥାରେ ପୁତ୍ରର ଅଧୀନ ହୋଇଥାଏ । ସାରଳା ଦାସଙ୍କ ଚଣ୍ଡୀ ପୁରାଣରେ ମଧ୍ୟ କୁହାଯାଇଛି, 'ମା ଗୋ କର୍ମ ଶାହାସ୍ରେ ଯେ ସ୍ତିରୀଙ୍କି ତିନି ଦଶା' ଚଣ୍ଡ ମୁଣ୍ଡ ଦୁର୍ଗାଙ୍କ ସମ୍ମୁଖରେ ସ୍ତୁତିବାକ୍ୟ ଉଚ୍ଚାର କରି ମହିଷାସୁରର ଭାର୍ଯ୍ୟା ହେବା ପାଇଁ ଅନୁରୋଧ କରିଥିଲେହେଁ ଦୁର୍ଗା ଏଥିରେ ସମ୍ମତ ହୋଇ ପାରି ନଥିଲେ । ସତେ ଯେପରି କାହାର ଅଧୀନରେ ରହିବା ପାଇଁ ସେ ସମ୍ପୂର୍ଣ୍ଣ ଅନିଚ୍ଛୁକ । ପୁଣି ଅନ୍ୟ ଏକ ପ୍ରସଙ୍ଗରେ ସ୍ତ୍ରୀର ତିନି ଦଶାର ଅନ୍ୟ ପ୍ରକାର ବ୍ୟାଖ୍ୟା କରାଯାଇଛି । ସେଥିରେ କୁହାଯାଇଛି, ନାରୀ ମାତା ରୂପରେ ମନୁଷ୍ୟକୁ ଜନ୍ମଦିଏ, ଭାର୍ଯ୍ୟା ରୂପରେ ରତି ଦାନ କରେ, ଏବଂ ଅନ୍ତ କାଳରେ କାଳିକା ରୂପ ଧାରଣ କରି ମନୁଷ୍ୟକୁ ବିନାଶ କରେ । ସେତେବେଳେ ସ୍ତ୍ରୀ ଆଉ ଦୁର୍ବଳା ନୁହେଁ, ଭୋଗୀ ନୁହେଁ କି ପାମରୀ ନୁହେଁ, ସେ ସମସ୍ତଙ୍କର ପୂଜ୍ୟା ହୋଇଯାଏ । ସେ ହିଁ ଏ ସୃଷ୍ଟି, ସ୍ଥିତି ଓ ପ୍ରଳୟର କାରଣ । ନାରୀ ଜାତିକୁ ସମ୍ମାନ ଦେବା ମୂଳରେ ହିନ୍ଦୁ ଧର୍ମ ତଥା ସଂସ୍କୃତିକୁ ରକ୍ଷା କରିବା ମନୋଭାବହିଁ ପ୍ରକାଶିତ ହୋଇଥିଲା ।

ସାଂସ୍କୃତିକ ଚେତନା କହିଲେ କେବଳ ଧର୍ମ ନୁହେଁ, ସାହିତ୍ୟ ଏହାର ଅନ୍ତର୍ଭୁକ୍ତ । ଚଣ୍ଡୀପୁରାଣ ମୁଖ୍ୟତଃ ଧର୍ମଭିତ୍ତିକ ହୋଇଥିବାରୁ କବି ଏଥିରେ ଚଣ୍ଡୀ ତଥା ବିଭିନ୍ନ ଦେବତାଙ୍କର ମାହାତ୍ମ୍ୟ, ସ୍ତୁତି, ବନ୍ଦନା, ରୂପ, ବାହାନ, ଗୁଣ, କୀର୍ତ୍ତି, ଶକ୍ତି ଓ ଅଲୌକିକତାର ପ୍ରଚାର କରିବା ସ୍ୱାଭାବିକ ଥିଲା, ପୁଣି ଏହା ଏକ ଭୟାବହ ଯୁଦ୍ଧ କାହାଣୀକୁ ରୂପ ଦାନ କରିଥିବାରୁ, କବି ଏଥିରେ ବୀର, ରୌଦ୍ର, ଭୟାନକ, ବୀଭତ୍ସ ଓ କରୁଣ ରସର ବ୍ୟଞ୍ଜନା ମଧ୍ୟ କରିଥିଲେ, କିନ୍ତୁ ଶୃଙ୍ଗାର ରସ ପାଇଁ ସ୍ୱତନ୍ତ୍ର ସ୍ଥାନର ନିରୂପଣ କରି କବି ଚଣ୍ଡୀପୁରାଣରେ ବିଷୟବସ୍ତୁକୁ ଯେଉଁ ଭାବେ ରୂପାନ୍ତରିତ କରିଛନ୍ତି, ତାହା ବିଶେଷ ଭାବେ ଉଲ୍ଲେଖ ଯୋଗ୍ୟ ।

କବିଙ୍କ ମତରେ ଦେବୀ ନିଜର ଇଚ୍ଛାନୁଯାୟୀ ବିଭିନ୍ନ ରୂପ ପରିଗ୍ରହ କରନ୍ତି । ଏହି ସବୁ ରୂପ ମଧ୍ୟରୁ କବି ତାଙ୍କ ଚଣ୍ଡୀପୁରାଣରେ କେତେକର ସୂଚନା ଦେଇ କହିଛନ୍ତି –

"କ୍ଷଣେକେ ମୋହିନୀ ସେ କ୍ଷଣେକେ ଧୀର ମତି
କ୍ଷଣେକେ ଅଭୟ କ୍ଷଣେକେ ନୃତ୍ୟ ଗୀତ ସେ କରନ୍ତି ।
କ୍ଷଣେକେ ସାଧବୀ ସେ କ୍ଷଣେକେ ଦିବ୍ୟ ରୂପୀ
କ୍ଷଣେକେ ବାଳ ଭାବ କ୍ଷଣେକେ ଗଗନ ଛେପି ।

କ୍ଷଣକେ ଜପ ତପ କ୍ଷଣକେ ଦୁଷ୍ଟ ପ୍ରକୃତି
ବିଶ୍ୱ ବିକଟାଳ ସେ କ୍ଷଣକେ ଶାନ୍ତମୂର୍ତ୍ତି ।

ପ. ସ — ୨୨୭୩-୭୪

ଦେବୀ ତାଙ୍କର ମୋହିନୀ ବା ମାନିନୀ ରୂପରେ ବଧ କଲେ ମହିଷାସୁରର ବହୁ ଅନୁଚରଙ୍କୁ । ଦେବୀଙ୍କର ଏହି ମାନିନୀ ରୂପର ପରିକଳ୍ପନାରୁ କବି ଶୃଙ୍ଗାର ରସର ଚିତ୍ରଣ ପାଇଁ ଗ୍ରନ୍ଥ ମଧ୍ୟରେ କେତୋଟି ସ୍ଥାନ ନିରୂପଣ କରିଥିଲେହେଁ, ଏଥିରେ ଶୃଙ୍ଗାର ରସର ପରିଣତି ସମ୍ଭୋଗରେ ନ ହୋଇ ଅସୁର ବିନାଶରେ ପରିପୂର୍ଣ୍ଣ ହୋଇଛି । ତେଣୁ ଏହା ଆଦୌ ଶୃଙ୍ଗାର ରସ ନୁହେଁ । ଏହା ସତ୍ତ୍ୱେ ଏଥିରେ ପ୍ରଦତ୍ତ ବର୍ଣ୍ଣନାରୁ ଶୃଙ୍ଗାର ରସର ଆଭାସ ମିଳେ । କବି କିନ୍ତୁ ଏହାକୁ ଶୃଙ୍ଗାର ରସ, ରତି ରସ, ଓ ମଦନ ରସ କହିଛନ୍ତି ।

## ପତି ପତ୍ନୀ ଭାବ—

ବିଡ଼ୁଲାକ୍ଷ ଭଗବତୀ ପ୍ରସଙ୍ଗରେ 'ଯଉବନ ବତୀ ଅଭେଦ ରୂପ ଓ 'କାମେଣୀ ନବ ଯୁବା ।' ଭଗବତୀ 'ରୂପ ଦେଖି' ବିଡ଼ୁଲାକ୍ଷ 'କାମଜଳେ' ନିମଜ୍ଜିତ ହେଲା । ନିଜର ବିନମ୍ରତା ଓ ସମ୍ପୂର୍ଣ୍ଣ ଆତ୍ମ ସମର୍ପଣ ଭାବ ପ୍ରକାଶ କରିବା ପାଇଁ ସେ ହସ୍ତରୁ 'ଶସ୍ତ୍ର ପକାଇ', 'ଦନ୍ତରେ ଢରଣ' ରଖି ତାର ହସ୍ତ ଧରି କହିଲା 'ରେ ପ୍ରାଣ ବନ୍ଧୁ ! ରଖ ମୋର ପ୍ରାଣ' । ଅଭିସାର ସ୍ଥାନ ରୂପେ ସେମାନେ 'ଲକ୍ଷ୍ମୀଭଦ୍ରା ନଦୀ ତୀରେ ଗହଳ ମାଧବୀ ଲତା'କୁ ସ୍ଥିର କରି 'ପତି ପତ୍ନୀ ପ୍ରାଏକ' 'ହାଥ ଧରାଧରି' ହୋଇ ଅପସରି ଗଲେ । ସମ୍ଭୋଗ ଶୃଙ୍ଗାରରୁ 'ହାସ୍ୟ ରସ', ଆକର୍ଷଣ, କୋଳାଗ୍ରତ, ଚୁମ୍ବନ ଓ ଆଲିଙ୍ଗନ (ଭିଡ଼ିଲେ ବକ୍ଷସ୍ଥଳ) ପ୍ରଭୃତିର ଉଲ୍ଲେଖ କରାଯାଇଥିଲେହେଁ, ପରିଣାମ ହେଲା—

'ଯେବଣ ବିଡ଼ୁଲାକ୍ଷ ଜିଣିଲା ଯମଦଣ୍ଡ
ଶୃଙ୍ଗାର ରସେ ସେ ହୋଇଲା ଖଣ୍ଡ ଖଣ୍ଡ ।'

ପ. ସଂ — ୨୩୩୯

ଭ୍ରମରବେମାଳ ପ୍ରସଙ୍ଗରେ ବର କନ୍ୟାଙ୍କ କଥା କୁହାଯାଇଛି । ବର ସମ୍ମୁଖକୁ କନ୍ୟା ଆସିଛି ଅଳଙ୍କାର ଓ ଆଭରଣରେ ସଜ୍ଜିତା ହୋଇ । ସାରଳା ଦାସ ଲେଖିଛନ୍ତି—

'ତ୍ରୈଲୋକ୍ୟ ମୋହୋନୀ ସେ କାମେଣ କାମାକ୍ଷୀ
ଦେଖିଣ ଭ୍ରମର ବେମାଳଙ୍କର ନ ପୂରଇ କାଛ ।

'ଅନେକ ଅଳଙ୍କାର ଅଙ୍ଗେଣ ଆଭରଣ
ନାନା ବର୍ଣ୍ଣେ କୁସୁମେ ଖୋପା ପରିହରଣ ।
କାମେମଣୀ କାମବତୀ ହୋଇଛନ୍ତି ଗୋପ୍ୟ
ବେଶଙ୍ଗେନେ ସଂସାର ମୋହ ପାଉନ୍ତି ସରୂପ ।'

ଦୁହିତା ଦାନ ପରେ ଯଜ୍ଞରେ ପ୍ରତିପାଳିବା ପାଇଁ ଉପଦେଶ ରହିଛି । ସେହି ଲକ୍ଷ୍ଣ ଭଦ୍ରାନଦୀ ତଟ ଥିଲେ ବି କବି ଏହା ଉପରେ ଗୁରୁତ୍ୱ ଦେଇ ନଥିଲେ । ରାତି ହେଲେ ମିଳନ ହେବ ସେଥିପାଇଁ ଦିନଦାର 'ଅନେକ ସାନନ୍ଦ'ରେ ଅସୁର-ଦ୍ୱସ୍ତ ମଦିରା ପାନ କରିଥିଲେ । 'ନାନା କଉତୁକ' 'ଅନେକ ପରିହାସ', ମଣ୍ଡି, ରଷ୍ଟି, ରଙ୍ଗ ଖେଳ ଓ 'ମଦନ ରସଖେଳେ' ଦିନ କଟିଗଲା । କାଦମ୍ବୃଷ୍ଟି ପାନ ବର ଦମ୍ପତୀଙ୍କର ଶରୀର ଅସାଷ୍ଟମ ହୋଇଗଲା । ତେଣୁ କେବଳ କଥାରେ ରହିଗଲା, 'ଆରେ ପ୍ରାଣବଲ୍ଲଭି ! କୋଳାଗ୍ରତ କର' । କବି କହିଛନ୍ତି—

'ମଦିରା ପାନେ ଯେ ପଡ଼ିଅଛନ୍ତି ଭୂମିପାତେ
କାହୁଁହିଂ ନୁହନ୍ତି ସେ ନୁଆଁରଲେ ଦଇତେ' ।

ପ. ସଂ—୨୧୫୨

ଷଷ୍ଠ ପଲ୍ଲୀ ଖଣ୍ଡନାର ତୃତୀୟ ଦୃଶ୍ୟଟି ମିଳେ ଈଶ୍ୱର ପାର୍ବତୀଙ୍କ ମିଳନରେ । ଏଠି କନ୍ୟା ପତି ପତ୍ନୀର ହାତ ନଧରି ପତ୍ନୀ ଧରିଛି ପତିର ହାତ । ପତ୍ନୀ ପୁଣି ଜୟମାଳା ଦେଇ ପତିଙ୍କୁ ବରଣ କଲା । ଉଭୟଙ୍କର ବେଶ ସମାନ । 'ଦୁଗାଏ ବୋଇଲେ ରୁହି ଉଲଗ୍ନ ମୁହିଂ ବିବସନ ଶାଙ୍ଖ' । ଏହା ପରେ ସେମାନେ ପରସ୍ପରକୁ 'ତୁମ୍ଭ ଭାରଯା ପ୍ରାଏ ହୋଇଲେ ତୁହାଂଙ୍କ୍ଷେହଂ' । ଏହି ଦୈବିକ ନିର୍ମଳ ଅପୂର୍ବ ମିଳନର ଦୃଶ୍ୟ ଉପସ୍ଥାପିତ କରି କବି ଲେଖିଛନ୍ତି—

'ଆନନ୍ଦେ ସଦାଶିବ ଧଇଲେ ତାହାଙ୍କୁ ଯାଇ କୋଳେ
ଭୁଜେଣ ଭିଡ଼ି ସେ ଗୃପିଲେ ବକ୍ଷସ୍ଥଳେ ।

ଜଟା ମେଲିଣ ସେ ଦେଲେ ଦେବରାଏ
ଅଦୃଶ ହୋଇଲା ସେ ଦେବୀଙ୍କର କାଏ ।

ଏକାମାତ୍ର ଦଶିଲା ଚନ୍ଦ୍ର ବଦନ ଗୋଟି
ଭୁଜେଣ ଭିଡ଼ିଣ କୋଳ କଲେକ ଧୂର୍ଜଟୀ ।

ପ. ସଂ—୪୩୮-୯୦

ଶିବ ଓ ପାର୍ବତୀଙ୍କର ଅର୍ଦ୍ଧନାରୀଶ୍ୱର କଳ୍ପନା ସାରଳା ଦାସଙ୍କ କବିତ୍ୱର ସୃଷ୍ଟିରେ ଶିବ ଓ ପାର୍ବତୀଙ୍କ ଯୁଗଳ ରୂପର ଯେଉଁ ଅପୂର୍ବ ଶୋଭା ସୃଷ୍ଟି କଲା, ତାହା କେବଳ ସାରଳା ଦାସଙ୍କ ଲେଖନୀରେ ହିଁ ସମ୍ଭବ । ଯେଉଁ ଶିବ ତାହାଙ୍କ ଜଟିଳ ଜଟା ମଧ୍ୟରେ ଗଙ୍ଗାଙ୍କୁ ଲୁକ୍କାୟିତ କରି ରଖିଥିଲେ, ସେ ପୁଣି ପାର୍ବତୀଙ୍କୁ ଜଟାରେ ଆବୃତ କରି ତାଙ୍କ ଲୋକଲଜ୍ଜାକୁ ନିବାରଣ କଲେ ।

## ପ୍ରିୟାଭାବ—

ଶମ୍ଭୁ ନିଶମ୍ଭୁ ବଧ ପ୍ରସଙ୍ଗରେ ପତି ପତ୍ନୀ ଭାବ ସ୍ଥାନରେ ଅଛି ପରକୀୟା ପ୍ରିୟାଭାବ । ପୁରୁଷକୁ ଉଚ୍ଚାଟ କରିବା ପାଇଁ କବି ଉଦ୍ଦୀପନ ବିଭାବ ଉପରେ ଗୁରୁତ୍ୱ ଦେଇଛନ୍ତି । ଶମ୍ଭୁ ନିଶମ୍ଭୁ ଯେତେବେଳେ ରତ୍ନଗିରି ପାଖରେ ପହଞ୍ଚିଛନ୍ତି, ସେତେବେଳେ ବନର ଅପୂର୍ବ ଶୋଭା ବିଶେଷ ଭାବେ ଲକ୍ଷଣୀୟ । କବି ଲେଖିଛନ୍ତି—

'ଦେଖନ୍ତି ବନ ଉଦ୍ୟାନ ଯେ ସବୁ ହିଂ ଅପରୂବ
ଭାଷନ୍ତି କୋକିଳ ମଉଗବେ ଜୀବ ।
ଗନ୍ଧ ଆମୋଦଇ ମଳୟ ଶୀତଳ

ବସନ୍ତ ଋତୁର ଏହି ଅପୂର୍ବ ଲୀଳା ମଧ୍ୟରେ ଶମ୍ଭୁ ନିଶମ୍ଭୁ ଅପୂର୍ବ ଅଭୟା ନାରୀଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ଲଜ୍ଜା ଭୟ ସଙ୍କୋଚ ତ୍ୟାଗକରି ପର୍ବତ ଉପରକୁ ଚଢ଼ିଗଲେ ।

ପୃଥିବୀର ଅପୂର୍ବ ଶୋଭା ମଧ୍ୟରେ ଯେଉଁ ନାରୀ ମୂର୍ତ୍ତିକୁ ଦେଖି ସେମାନେ ବଶୀଭୂତ ହୋଇଥିଲେ, ସାରଳା ଦାସଙ୍କ ଭାଷାରେ ସେ ଥିଲେ 'ପୃଥିବୀର ଅଳଙ୍କାର', 'ଅମୂଲ୍ୟ ରତ୍ନକାନ୍ତି' । ସେହି ମୋହିନୀ ତଥା ମାନିନୀ ନାରୀର ରୂପ ବର୍ଣ୍ଣନା କରି ସାରଳା ଦାସ ଲେଖିଛନ୍ତି—

'ଛିନ ବସନ ପରିଧାରଣି ହେଠବଦନ ବାଳୀ
ପଞ୍ଚୁମନ ଦର୍ପଧ୍ୱଂସନୀ ସେ ନ ଗୃହିଂଲ୍ଲ ଚୋଳି ।
ମଉନବ୍ରତ ହୋଇ ସେ ନିଧଅଛି ସମାଧି
ଅସୁର କୁଳକୁ ସେ କାଳ ବନ୍ଧନ ଫାଶି ।

ଦୁର୍ଗାଙ୍କ ପ୍ରତି ଆକୃଷ୍ଟ ହେବା ପରେ ଶମ୍ଭୁ ନିଶମ୍ଭୁ ତାଙ୍କର ସବିଶେଷ ବିବରଣୀ ଜାଣିବା ପାଇଁ ଗୃହିଁଥିଲେ । ଦୁର୍ଗା ମଧ୍ୟ ନିସଙ୍କୋଚ ଭାବେ ନିଜ କୁଳ ଗୋତ୍ର ବର୍ଣ୍ଣନା କଲେ । ଶମ୍ଭୁ ନିଶମ୍ଭୁ ଏଥିରେ ପ୍ରୀତ ହୋଇ ନିଜର କୁଳ,

ଯୋଗ, ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର କଥା କହିଗଲେ । ସେମାନଙ୍କଠାରୁ ସବୁ ଶୁଣିସାରିବା ପରେ ଦୁର୍ଗା ସେମାନଙ୍କୁ ବିବାହ ହେବା ପ୍ରସ୍ତାବ ଆଗତ କଲେ । ନାରୀ ରୂପ ମୁଗ୍ଧ ବୃଦ୍ଧ ପାଖରେ ଏହାଠାରୁ ବଳି ପ୍ରିୟ କଥା ଆଉ କ'ଣ ବା ହୋଇପାରେ ? ସେତିକିବେଳେ ସାରଳା ଦାସ ସାମାଜିକ ଚଳଣିରୁ ପଦେ କହିଦେଇ ଦୁର୍ଗାଙ୍କ ପ୍ରକୃତିରେ ସ୍ୱାତନ୍ତ୍ର୍ୟ ସୃଷ୍ଟି କଲେ । ସମାଜରେ ବିବାହବେଳେ ସାଧାରଣତଃ ଧନ ଦ୍ରବ୍ୟରେ ଇଚ୍ଛାମତ ବର ମିଳେ ନାହିଁ । ଏହା ହେଉଛି ହୃଦୟର କଥା । ପ୍ରେମର କଥା । ଦୁର୍ଗାଙ୍କର ବିଶେଷ ଆଗ୍ରହ ନୃତ୍ୟରେ । ତେଣୁ ନୃତ୍ୟ ଜାଣିଥିବା ବ୍ୟକ୍ତି ହିଁ ହେବ ତାଙ୍କର ଇଚ୍ଛାମତ ସ୍ୱାମୀ । ଶୁମ୍ଭୁ ନିଶୁମ୍ଭୁ ଦୁର୍ଗାଙ୍କଠାରୁ ସବୁ ଶୁଣି ତାଙ୍କ ସମ୍ମୁଖରେ ସେମାନଙ୍କ ନୃତ୍ୟ ଜ୍ଞାନର ପ୍ରଦର୍ଶନ କରି ନୃତ୍ୟ କରିବାକୁ ଆରମ୍ଭ କଲେ । ସେମାନେ ନୃତ୍ୟ କଲାବେଳେ ଦୁର୍ଗା ଟିକେ ଟିକେ ହସି ଦେଉଥିଲେ । ଦୁର୍ଗାଙ୍କ ହସରେ ସେମାନେ ଦ୍ୱିଗୁଣ ଉତ୍ସାହିତ ହୋଇ ମତ୍ତଗଜ ଖାଇକୁ ନ ମାନିବା ପରି ଆହୁରି ଜୋରରେ ନୃତ୍ୟ କରିବାକୁ ଲାଗିଲେ । ସେମାନଙ୍କ ବିହ୍ୱଳତାର ସୁଯୋଗ ନେଇ ଦୁର୍ଗା ସେମାନଙ୍କୁ ପରସ୍ପରର ମସ୍ତକରେ ହସ୍ତଦେଇ ନୃତ୍ୟ କରିବାକୁ ନିର୍ଦ୍ଦେଶ ଦେଲେ । ତାହା ହିଁ ହେଲା । ସେମାନେ ଆଉ ବ୍ରହ୍ମାଙ୍କ କଥା ସ୍ମରଣ କରି ନପାରି ମୃତ୍ୟୁବରଣ କଲେ । ଅତିଶୟ କାମ ଲୋଲୁପତାର ଏହାହିଁ ହେଲା ପରିଣାମ । ସାରଳା ଦାସ ମଧ୍ୟ କହିଲେ ମଣିଷର ଶେଷବେଳ ଉପସ୍ଥିତ ହେଲାବେଳେ, ସେ ଆଉ ଭଲ ମନ୍ଦ ବିଚାର କରିପାରେ ନାହିଁ ।

ନାରୀର ରୂପରେ ଆସକ୍ତ ହେବାର ଆଉ ଏକ ଚିତ୍ର ମିଳେ କାନ୍ତମାଳା ଓ ଉଗ୍ରତାରା ଉପାଖ୍ୟାନରେ । ଅନ୍ୟ ନାରୀଙ୍କ ପରି ଉଗ୍ରତାରା ମଧ୍ୟ 'ମୋହିନୀ କାମସେଣୀ' ହେଲେ ବି ତାଙ୍କ ଶରୀରଥିଲା 'ବଜୁଳି ତେଜସ୍ୱୀଏ' । ତେଣୁ ତାଙ୍କ ପ୍ରଥମ ଦର୍ଶନରେ ହିଁ କାନ୍ତମାଳା 'ଆତ୍ମାକୁ ଅଣକଲେ ସେ ପଡ଼ିଲକ ମଣ୍ଡି' । ନାରୀ ରୂପରେ ତା'ର ପଞ୍ଚଆତ୍ମା ବଶ ହୋଇଯିବା ପରେ ତା'ର ପାଟିରୁ କେବଳ ଗୋଟିଏ କଥା ବିଭିନ୍ନ ରୂପରେ ଆତ୍ମପ୍ରକାଶ କଲା । ତାହା ହେଲା 'ମଦନ ସାଗରୁ ରକ୍ଷା କର ମହାତ୍ମା' । ସେମାନେ 'ଦଶ ନଖ ମୁଖେ ଭରି', ଚରଣ ତଳେ ପଡ଼ି କେବଳ ସୁରତ ସୁଖ ଆଶା କରୁଥିଲେ ।

କାନ୍ତମାଳାର କାମ ବିହ୍ୱଳ ଭାବ ଦେଖି ଉଗ୍ରତାରା ଗୋଟିଏ ସର୍ତ୍ତ ରଖିଥିଲେ । ସର୍ତ୍ତହେଲା ତାଙ୍କ ବ୍ରତ ପାଳନ କଥା । ବ୍ରତଟି କିନ୍ତୁ ଅଦ୍ଭୁତ ଥିଲା—

'ଉଗ୍ରତାର ବୋଇଲ ମୋତେ କାନ୍ଧରେ ବସାଇଁ
ଲଜ୍ୟା ଉପେକ୍ଷିଣ ମୋତେ ମନ୍ଦରକୁ ଘାରଇ ନେଇ
ପୁରୁଷ କୁଳଂ ଯେ ଉତପେକ୍ଷା କରଇ ଲଜ୍ଜା
ତେବେ ସେ ତାହାର ମୁ ହୋଇବ ଭଜ୍ୟା ।'

ପ: ସଂ—୨୯୩୫-୧୬

ପୁରୁଷ କୁଳର ଲଜ, ନାରୀର ଲଜ ନୁହେଁ ଛଡ଼ାଇ, ନାରୀକୁ କାନ୍ଧରେ ବସାଇ ପ୍ରୀତି ପାଳିବାର ଏହି ଯେଉଁ ପରଂପରା ସୃଷ୍ଟି ହେଲା, ତାହା ରାଧାକୃଷ୍ଣ ବା ବୃନ୍ଦାବତୀ-କୃଷ୍ଣ ଉପାଖ୍ୟାନରେ ଦେଖିବାକୁ ମିଳିଲା ପରବର୍ତ୍ତୀ ଯୁଗରେ । ପୁରୁଷର ପରାକ୍ରମ ଓ ସାମର୍ଥ୍ୟକୁ ଲୋପ କରି ପ୍ରୀତି ସମ୍ପାଦନରେ ନାରୀର ପ୍ରାଧାନ୍ୟ ସ୍ୱୀକାର କରି, ସାରଳା ଦାସ ନିଜର ଯୁଗ ପ୍ରତି ଯେଉଁ ଉପହାସ କରିଗଲେ, ତାହାହିଁ ଦେଖିବାର କଥା । ପୁରୁଷମାନଙ୍କୁ 'ଦଉଡ଼ି ଲାଗି ଯେହ୍ନେ ଗମଇ ବଇଲେ' କହିବା ବେଳେ ତାଙ୍କର କଣ୍ଠୁ ପରିହାସହିଁ ଧ୍ୱନିତ ହୋଇଥାଏ ।

ଏହା ସତ୍ତ୍ୱେ ନାରୀ ଜାତିର ଅବମାନନାକୁ ମଧ୍ୟ ସାରଳା ଦାସ ସହ୍ୟ କରି ପାରୁନଥିଲେ । ସମାଜରେ ପୁରୁଷ ପରି ନାରୀ ମଧ୍ୟ ସମ୍ମାନାସ୍ପଦା । ସମାଜ ସୃଷ୍ଟି ପାଇଁ ପୁରୁଷ ପରି ନାରୀର ମଧ୍ୟ ଗୁରୁ ଦାୟିତ୍ୱ ରହିଛି । ସାରଳା ଦାସ ଏହା ଘୋଷଣା କଲେ, କାଳି ବିମୋଚନ ଓ ନାରାୟଣୀ ଉପାଖ୍ୟାନରେ ।

ସାରଳା ଦାସ ପୁରୁଷ ଓ ନାରୀର ସଂପର୍କକୁ ବିଭିନ୍ନ ପର୍ଯ୍ୟାୟରେ ରଖି ବିଗ୍ରହ କରିବାର ଏକ ସ୍ୱତନ୍ତ୍ର ପରଂପରା ସୃଷ୍ଟି କଲେ । ଶୃଙ୍ଗାର ରସକୁ ସାଂସ୍କୃତିକ ଦୃଷ୍ଟିକୋଣରୁ ବିଭିନ୍ନ ପରିସ୍ଥିତି ମଧ୍ୟରେ ସେ ଯେପରି ବିଗ୍ରହ କରିଥିଲେ, ତାହା ପରବର୍ତ୍ତୀ ଯୁଗରେ ଶୁଦ୍ଧ ଶୃଙ୍ଗାର ରସର ବିବେଚନା ମଧ୍ୟରେ ହଜିଗଲା ।

## ନୃତ୍ୟ, ସଙ୍ଗୀତ ଓ ବାଦ୍ୟ

ସାରଳା ଦାସଙ୍କ ସାଂସ୍କୃତିକ ଚେତନା ବିଗ୍ରହ କଲାବେଳେ ତାଙ୍କ ବାଦ୍ୟ ତଥା ନୃତ୍ୟ ଜ୍ଞାନ ପାଠକକୁ ଚମତ୍କୃତ କରେ । ବିଶେଷ କରି ଚଣ୍ଡୀ ପୁରାଣରେ ସେ ଦେଲେ ଦୁଇଟି ପୁରୁଷ ନୃତ୍ୟ ଓ ଗୋଟିଏ ନାରୀ ନୃତ୍ୟ । ଶମ୍ଭୁ ଓ ନିଶମ୍ଭୁଙ୍କ ନୃତ୍ୟ ବର୍ଣ୍ଣନା କଲାବେଳେ ସେ ଏକୋଇଶ ମୂର୍ଚ୍ଛନା, ପଞ୍ଚତାଳ, ଭରତ ରଙ୍ଗ, ତାଣ୍ଡବ ନୃତ୍ୟ, ଆକ୍ରମଣ, ଅଉମ୍ବ ଚଞ୍ଚପୁଟ, ଗୃଞ୍ଚପୁଟ, ତାରଣା, ରକ୍ଷଣ, ଧୋଆ, ମଠା, ପଡ଼ିତାଳ, ଅଡ଼ତାଳ, ଝୁମ୍ପା, ପ୍ରବନ୍ଧ, ଶୃଙ୍ଗାର, କାରୁଣ୍ୟ ପ୍ରଭୃତିର ଉଲ୍ଲେଖ କରି ସେ ନିଜ ସଙ୍ଗୀତ ଓ ନୃତ୍ୟ ଜ୍ଞାନର ପରିଚୟ ଦେବା ସଙ୍ଗେ ସଙ୍ଗେ ଓଡ଼ିଶାରେ

ନୃତ୍ୟ ଓ ସଙ୍ଗୀତ ଚର୍ଚ୍ଚାର ସୂଚନା ଦେଇଥିଲେ । ସେହିପରି ଦେବୀଙ୍କ ମହିଷାସୁର ନାଶ ଖଣ୍ଡି ବର୍ଣ୍ଣନା କଲାବେଳେ ସେ ଡମ୍ବୁରୁ, ଓ ଖେମଟାର ଉଲ୍ଲେଖ କଲେ । ଏ ସବୁ ନୃତ୍ୟ ବର୍ଣ୍ଣନାରେ କବିଙ୍କ ଉପରେ ନୃତ୍ୟ ପରଂପରାର ପ୍ରଭାବ ଲକ୍ଷ୍ୟ କରାଯାଇପାରେ ।

ନୃତ୍ୟ, ସଙ୍ଗୀତ, ବାଦ୍ୟ, ଖାଦ୍ୟ, ଧର୍ମ, ପୋଷାକ, ଅବସର ବିନୋଦନ ଆଖେଟ, ଚାଲିଚଳଣି, ଆଚାର-ବ୍ୟବହାର, କଥା-ବାର୍ତ୍ତା, ଆଶା-ନିରାଶା, ବିଶ୍ୱାସ-ଅବିଶ୍ୱାସ ପ୍ରଭୃତି ସମାଜ ଓ ସଭ୍ୟତାର ବିଭିନ୍ନ ଉପାଦାନ ମଧ୍ୟରେ ସଂସ୍କୃତିର ସ୍ୱରୂପ ଲୁକ୍‌କାୟିତ ଥାଏ । ସାରଳା ଦାସଙ୍କ ପ୍ରତ୍ୟେକ ବର୍ଣ୍ଣନାରୁ ଏକ ସୁରୁଚି ସମ୍ପନ୍ନ ସୁସଭ୍ୟ ସୁସଂସ୍କୃତ ଜାତିର ପରିଚୟ ମିଳେ । ସାରଳା ଦାସ ତାଙ୍କର ତଥା ଚରିତ୍ର ସବୁର ମନ, ବଚନ ଓ କର୍ତ୍ତବ୍ୟର ଯେଉଁ ସୁସଂଯତ ଚିତ୍ର ପ୍ରଦାନ କରିଛନ୍ତି, ତାହା ଅତ୍ୟନ୍ତ ମୂଲ୍ୟବାନ । ସେମାନେ ଅସୁର ଜାତିର ହୁଅନ୍ତୁ କି ସୁର ଜାତିର ହୁଅନ୍ତୁ, ପ୍ରତ୍ୟେକେ ନିଜ ନିଜ କର୍ମକ୍ଷେତ୍ରରେ ଉତ୍କୃଷ୍ଟ ନୀତିବୋଧର ପରିଚୟ ଦେଇଥିଲେ । ସେମାନଙ୍କ କଥାବାର୍ତ୍ତା ତର୍କ ସଙ୍ଗତ ଥିଲା । ପ୍ରତ୍ୟେକେ ନିଜ ନିଜ ଧର୍ମ ପଥରେ ପରିଚାଳିତ ହେଉଥିଲେ । ଅତ୍ୟଧିକ କାମଲିପ୍ସା ଏବଂ ଦେବୀଙ୍କର ଅବମାନନା ମହିଷାସୁର ବଧର ମୂଳ କାରଣ ହେଲେବି, ଏ ସବୁରେ ଭୀଭତ୍ସତା କିମ୍ବା ଉଚ୍ଛୃଙ୍ଖଳତା ଦେଖିବାକୁ ମିଳେ ନାହିଁ । ସାରଳା ଦାସ ଦୁଇ ବିରୋଧୀ ଶକ୍ତିର ସଂଘର୍ଷର ବର୍ଣ୍ଣନା ତାଙ୍କ ଗ୍ରନ୍ଥରେ ପ୍ରଦାନ କରିଥିଲେହେଁ, ମହାନ ଆଦର୍ଶ ବୋଧହୁଏ ଥିଲା, ତାଙ୍କ ରଚନା ସୃଷ୍ଟିର ଆତ୍ମା । ବରଂ ଏଥିରେ ସୃଷ୍ଟିକର୍ତ୍ତା ବ୍ରହ୍ମା ଭକ୍ତିରେ ଭୋଳ ହୋଇ ବିଶ୍ୱ ସୃଷ୍ଟି ନିୟମର ବିରୋଧ କରି ଅସୁରମାନଙ୍କୁ ଅମର ବର ପ୍ରଦାନ କରିଛନ୍ତି, ଇନ୍ଦ୍ର ଅତିଶୟ କ୍ରୋଧିତ ହୋଇ ଦୂତଙ୍କୁ ବଧ କରିଛନ୍ତି, ପୁଣି ଦେବୀମାନେ ସେମାନଙ୍କର ମୋହିନୀ ରୂପରେ ଅସୁରମାନଙ୍କୁ ଆକର୍ଷଣ କରି ପ୍ରୀତିଦାନ ପରିବର୍ତ୍ତେ ବିଶ୍ୱାସଘାତ କରି ସେମାନଙ୍କୁ ବଧ କରିଛନ୍ତି । କିନ୍ତୁ, ଅସୁରମାନେ ପ୍ରତ୍ୟେକ କ୍ଷେତ୍ରରେ ସେମାନଙ୍କ ଉନ୍ନତ କର୍ତ୍ତବ୍ୟବୋଧ ଦ୍ୱାରା ପରିଚାଳିତ ଇନ୍ଦ୍ରପଦ ଅଧିକାର, ସ୍ୱର୍ଗ ରାଜ୍ୟ ଆକ୍ରମଣ ବା ସ୍ୱର୍ଗ ବେଶ୍ୟାଙ୍କର ଉପଭୋଗକୁ ଆପାତତଃ ସେମାନଙ୍କ ଚରିତ୍ରର ଦୋଷ ରୂପେ ଗ୍ରହଣ କରାଯାଇପାରେ, କିନ୍ତୁ ଅସୁର ଜାତିର ଶକ୍ତି ଓ ପରାକ୍ରମର ବର୍ଣ୍ଣନା ଦୃଷ୍ଟିରୁ ଏ ସବୁ ନିନ୍ଦନୀୟ ନୁହେଁ । ଏହିପରିଭାବେ ବିଚାର କଲେ ସାରଳା ଦାସଙ୍କ ସାଂସ୍କୃତିକ, ସାମାଜିକ ଓ ରାଜନୈତିକ ଚେତନା ତାଙ୍କୁ ଯଥାର୍ଥରେ ସାରଳା ଦେବୀଙ୍କ ସୃଜଭାବେ ପ୍ରତିଷ୍ଠିତ କରି ପାରିଥିଲେ ।

# ସାମ୍ପ୍ରଦାୟିକତା ଦୃଷ୍ଟିରୁ ଚଣ୍ଡୀପୁରାଣ – ଏହା ଶାକ୍ତ ପୁରାଣ ନୁହେଁ

ସାରଳା ଦାସଙ୍କ ଚଣ୍ଡୀ ପୁରାଣକୁ ସାଧାରଣତଃ ଏକ ଶାକ୍ତ ପୁରାଣ ରୂପେ ଗ୍ରହଣ କରାଯାଇଥାଏ । କବି ଯଦି ଏହି ଗ୍ରନ୍ଥକୁ କେବଳ ଭାଗବତ କହିଥାନ୍ତେ, ତା' ହେଲେ ଏହାକୁ ଦେବୀ ଭାଗବତ କହିବାରେ ଅସୁବିଧା ନ ଥିଲା ଏବଂ ଏହା ହୋଇଥାନ୍ତା ଏକ ଶାକ୍ତ ପୁରାଣ, କିନ୍ତୁ କବି ଏହାକୁ ବାରମ୍ବାର ହରିବଂଶ ବିଷ୍ଣୁପୁରାଣ କହିବା ସଙ୍ଗେ ସଙ୍ଗେ ଦେବୀଙ୍କୁ ମାଳତୀ ପରି ବିଷ୍ଣୁଙ୍କର ଏକ ଅବତାର ରୂପେ ଗ୍ରହଣ କରିଥିବାରୁ, ଏହି ଗ୍ରନ୍ଥ ଯେ ଶାକ୍ତ ପୁରାଣ ନୁହେଁ, ଏହାହିଁ ପ୍ରମାଣିତ ହୁଏ । ବିଶେଷ କରି କବି ଦେବୀ ଭକ୍ତ ହେଲେହେଁ, ଏବଂ ଦେବୀଙ୍କର ଶ୍ରେଷ୍ଠତା ପ୍ରଚାର କରିବା ପାଇଁ ଗ୍ରନ୍ଥର ବିଭିନ୍ନ ସ୍ଥଳରେ ଦେବୀଙ୍କର ସ୍ତୁତି ଓ ବନ୍ଦନା ସଂଯୋଜନା କରିଥିଲେହେଁ, ଅନ୍ୟ ଦେବତା ବିଶେଷ କରି ବିଷ୍ଣୁଙ୍କର ନିନ୍ଦା କୌଣସି ସ୍ଥାନରେ କରି ନାହାନ୍ତି । ଲକ୍ଷ୍ୟ କରିବାର କଥା, ଗ୍ରନ୍ଥ ମଧ୍ୟରେ ବ୍ରହ୍ମା, ଇନ୍ଦ୍ର ଓ ଶିବ ପ୍ରଭୃତି ହିନ୍ଦୁ ଧର୍ମର ବିଶିଷ୍ଟ ଦେବତା ଦେବୀଙ୍କର ସ୍ତୁତି କରିଥିଲେହେଁ, ଏବଂ ବିଷ୍ଣୁ ସେଠାରେ ଉପସ୍ଥିତ ଥିଲେହେଁ, ସେ ନିଜେ ଦେବୀଙ୍କୁ ସ୍ତୁତି ନ କରି, ଏଥିପାଇଁ ବ୍ରହ୍ମାଙ୍କୁ ଅନୁରୋଧ କରିଛନ୍ତି । ଏହିସବୁ ଦୃଷ୍ଟିରୁ ବିଚାର କଲେ, ଜଣାଯାଏ, କବି ସାରଳା ଦାସ ଅତି ସଚେତନ ଭାବେ ଦୁର୍ଗାଙ୍କୁ ବିଷ୍ଣୁଙ୍କର ଏକ ଅବତାର ରୂପେ ଚିତ୍ରଣ କରିବାକୁ ଚାହିଁଥିଲେ । ତେଣୁ ଗ୍ରନ୍ଥର ନାମ 'ଚଣ୍ଡୀ ପୁରାଣ' ହେଲେହେଁ, ଏହା ବିଷ୍ଣୁଙ୍କ ଅବତାର ଚଣ୍ଡୀଙ୍କର ପୁରାଣ । ଏହା ସତ୍ତ୍ୱେ ଏଥିରେ ଦେବୀଙ୍କ ଶ୍ରେଷ୍ଠତା ପ୍ରତିପାଦନ କରିବାରେ ପୁଣି ଦେବୀ ଭକ୍ତମାନଙ୍କର ମଙ୍ଗଳ କାମନା କରିବାରେ କବି କୌଣସି ସ୍ଥାନରେ କୁଣ୍ଠା ପ୍ରକାଶ କରି ନାହାନ୍ତି । ବିଷ୍ଣୁଙ୍କ ନାରୀ ରୂପର ସୂଚନା ଦେଇ କହିଛନ୍ତି,

"ବ୍ରହ୍ମାଏ ବୋଇଲେ ବିଷ୍ଣୁର ଅନେକ ଅଛଇ ମାୟା
ସ୍ତିରୀ ପୁରୁଷରେ ବିକାଶେ ତାର କାୟା । ମ. ଖ—୨୦୪

ଚଣ୍ଡୀଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବା ପାଇଁ କବି ସତତ ଚେଷ୍ଟିତ ଥିଲେହେଁ, ଏଥିରେ 'ଶାକ୍ତ ମତ'ର ବାମମାର୍ଗୀ ଶାଖା ଏବଂ ତାନ୍ତ୍ରିକମାନଙ୍କର ପ୍ରଭାବ ପରିଲକ୍ଷିତ ହୁଏ ନାହିଁ । 'ଶାକ୍ତ ମତ'ର ବାମମାର୍ଗୀ ତଥା ତାନ୍ତ୍ରିକମାନଙ୍କର ମୁଖ୍ୟ ପ୍ରବୃତ୍ତିକୁ ପାଞ୍ଚ ଭାଗରେ ବିଭକ୍ତ କରାଯାଇଥାଏ ।

୧ । ଦେବଙ୍କ ପ୍ରତି ଇଷ୍ଟ-ଭାବନା ।
୨ । ମୈଥୁନ ।

୩ । ଶସ୍ତ୍ର-ପୂଜା ।

୪ । ମଦ୍ଦିରା ତଥା ଅନ୍ୟ ମାଦକ ପଦାର୍ଥର ସେବନ ।

୫ । ମାଂସ ଭକ୍ଷଣ ।

ତାନ୍ତ୍ରିକମାନେ ସାଧନାର ଉତ୍କୃଷ୍ଟ ମାର୍ଗରୂପେ ଏ ସବୁକୁ ଗ୍ରହଣ କରୁଥିବାବେଳେ, ସାରଳା ଦାସ ଏ ସବୁ ମଧ୍ୟରୁ ଶସ୍ତ୍ର-ପୂଜାକୁ ପ୍ରାୟ ପରିତ୍ୟାଗ କରିଛନ୍ତି । କେବଳ ଜୟଚଣ୍ଡୀଙ୍କର ବନ୍ଦନା କଲାବେଳେ ଖଡ଼୍‌ଗ-ବର୍ଗର ଲୋକଙ୍କୁ ଉଲ୍ଲେଖ କରି କହିଛନ୍ତି—

'ଆହୋ ଖଡ଼୍‌ଗ ବର୍ଗ ଲୋକେ ଜଏଚଣ୍ଡୀ ସୁମର ହୃଦେ
ରଣେ ଜଏ ହୋଇ ଜଏଚଣ୍ଡୀର ପ୍ରସାଦେ'

ପ. ସଂ—୩.୧୫୭

ଚଣ୍ଡୀ ପୁରାଣରେ ମୈଥୁନ କୌଣସି ସ୍ଥାନରେ ସାଧନାର ମାର୍ଗଭାବେ ବର୍ଣ୍ଣିତ ନୁହେଁ । ପୁଣି କବି ମୈଥୁନ ପାଇଁ ପରିବେଶ ସୃଷ୍ଟି କରିଥିଲେହେଁ, ସମ୍ଭୋଗ ବର୍ଣ୍ଣନାକୁ ଗ୍ରନ୍ଥ ମଧ୍ୟରୁ ସମ୍ପୂର୍ଣ୍ଣ ପରିହାର କରିଥିଲେ ଏବଂ କାମ ବାସନା ଯେ ଅନଷ୍ଟକାରକ ଏହାହିଁ ଥିଲା ତାଙ୍କର ଦୃଢ଼ମତ । ସେଥିପାଇଁ ତାଙ୍କ ଗ୍ରନ୍ଥରେ ଅତ୍ୟଧିକ କାମ ବାସନାକୁ ବିନାଶର ମୂଳ ହେତୁ ରୂପେ ଘୋଷଣା କରାଯାଇଛି ।

ତିରିଲୋକ୍ୟରେ ଯେଉଁ ବୀରଙ୍କୁ ନାହିଁ ମୃତ୍ୟୁ
କାମ ଲୁବୁଧେ ବୀରେ ବୁଡ଼ାଇଲେ ହେତୁ ।

ଗ. ନୃ. ସଂ—୨୦୮

ଗ୍ରନ୍ଥ ମଧ୍ୟରେ ବିଭିନ୍ନ ଅସୁର ଓ ଦେବୀ ଦୁର୍ଗା ମଦ୍ଦିରାପାନ କରୁଥିବା ଦେଖିବାକୁ ମିଳେ । ଏହା କିନ୍ତୁ ସାଧନାର ମାର୍ଗ ନୁହେଁ । ପୁଣି କବିଙ୍କ ମତରେ ଅତ୍ୟଧିକ ମଦିରା ପାନ କଲେ ମନୁଷ୍ୟର ବୁଦ୍ଧି ଲୋପ ହୁଏ, ଏବଂ ମନୁଷ୍ୟ କୌଣସି କାର୍ଯ୍ୟ କରିବାକୁ ଅକ୍ଷମ ହୋଇଯାଏ ।

ଚଣ୍ଡୀ ପୁରାଣରେ ମାଂସ ଭକ୍ଷଣର କେତେକ ଉଲ୍ଲେଖ ମିଳେ । ଦେବୀମାନେ ରକ୍ତପାନ କରୁଥିଲେ ଏବଂ ମାଂସ ଭକ୍ଷଣ କରୁଥିଲେ । କବି ମଧ୍ୟ ପ୍ରସଙ୍ଗ କ୍ରମେ ସମାଜରେ ମାଂସ ଭୋଜନର କେତେକ ଉଲ୍ଲେଖ କରିଛନ୍ତି । ମାଂସକୁ ଖଣ୍ଡି ଖଣ୍ଡି କରି କାଟିବା, ମାଂସ ଭାଜି ଖାଇବା, ପୁଣି ମାଂସରେ ଲୁଣ

ପକାଇ ଏହାକୁ ନରମ କରିବା ପ୍ରଭୃତିକୁ ଗ୍ରହଣ କରାଯାଇପାରେ । ଏସବୁ ଉଲ୍ଲେଖ ସତ୍ତ୍ୱେ କବି ଏହାକୁ କୌଣସି ସ୍ଥାନରେ ସାଧନାର ମାର୍ଗରୂପେ ଗ୍ରହଣ କରି ନଥିଲେ ।

ସାମ୍ପ୍ରଦାୟିକତାର ସଙ୍କୀର୍ଣ୍ଣତା ମହାନ କବି ସାରଳା ଦାସଙ୍କୁ ଶୃଙ୍ଖଳିତ କରି ପାରି ନଥିଲା । ସେ 'ସାରଳା ଦେବୀଙ୍କ ସୁତ' ଥିଲେ । ସେଥିପାଇଁ ମାତୃ ହୃଦୟର ଉଦାରତା ତଥା ମହନୀୟତା ହିଁ ଥିଲା, ତାଙ୍କ ଜୀବନର ଆଦର୍ଶ । ସବୁ ପୁରାଣପରି ସେ ତାଙ୍କର ଇଷ୍ଟ ସାରଳା ଦେବୀଙ୍କୁ ବିଭିନ୍ନ ରୂପରେ ବର୍ଣ୍ଣନା କରିଥିଲେହେଁ, ଅନ୍ୟ ଦେବତାଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ସେ ସମନ୍ୱୟ-ଭାବନାକୁ ଜାତି ମଧ୍ୟରେ ପ୍ରଚାର କରିଥିଲେ । ଏହାହିଁ ଥିଲା ତାଙ୍କର ଦେଶ ତଥା ଜାତି ପାଇଁ ମହାନ ଅର୍ଘ୍ୟ ।



# ଶ୍ରୀ ଚଣ୍ଡୀ ଯୁଦ୍ଧ ମହା ପୁରାଣ ଲେଖନଃ

ଶ୍ରୀ ଗଣେଶାୟ ନମଃ
ଶ୍ରୀ ଚଣ୍ଡୀ ଦେବ୍ୟୈ ନମୋ ନମଃ
ଓଁ ଭଗବତେ ବାସୁଦେବାୟ ନମଃ ।

## ଗଣେଶ ବନ୍ଦନା

ବନ୍ଦଇ ବିଧିବାବନ ମଙ୍ଗଳ ବିଘ୍ନରାଜ
ଦର୍ଶନେ ସୁଫଳ ପ୍ରସନ୍ନେ ସିଦ୍ଧ କାର୍ଯ୍ୟ ।। ୧ ।।
ଗିରିଜାର ନନ୍ଦନ ଭଗତ ମଛଳା
ତାଣ୍ଡବ ଆରୋପଣେ ଯେ ନୃତ୍ୟ ଭଙ୍ଗେ ଖେଳା ।
କାର୍ତ୍ତିକ ବିବାଦେ ଭଗ୍ନ ଯାର ଦନ୍ତ
ଖେଚରି ମଉରଙ୍ଗେ ଯେ ଅନେକ ନିପାତ ।
ଅଷ୍ଟାଦଶ ପୁରାଣ ଲେଖକ ଆଦିଭୂମି
ଜପ ମନ୍ତ୍ର ଜ୍ଞାତା ଯେ ବରଦ ନାମ ସ୍ୱାମୀ ।
କନ୍ଦୁକେ ବଞ୍ଚାଇଲା କାଳ କାମ ନିଦ୍ରା ,
ଅସାଧନେ ଯେହୁ ସାଧିଲା ମହାମୁଦ୍ରା ।
ମେରୁ ତରୁଙ୍କ କଞ୍ଚୁତ ବେନି ତୋଳା
ଭବେଣ ରସ ନାଏକ ସଦା ରସେଣ ଖେଳା ।
ଯାବତ ଚନ୍ଦ୍ର ଦିବାକର ଆଦି ମୂଳ
ଦୁରନ୍ତକ ଧଂସନ ଦେବ ଭଗତ ମଙ୍ଗଳ ।
ଶୁକ୍ଳାମ୍ବର ଶରୀର ନୀଳଇନ୍ଦଦଳ ଶାଖା
ଯାବତ ଚନ୍ଦ୍ର ଯାନ୍ତ ତୁହି ସେ ଆଉ ଏକା ।
ତୁ ଦେବ ଜଗତ ଯେ ଧାରଣ ଦେବତା
ବ୍ୟାସର ଲେଖନ୍ତେ ଦେବ ତୁହି ସେ ଆଦି କର୍ତ୍ତା ।
ଗିରିଜାର ନନ୍ଦନ ବାଳ କୁତ୍ତୁହୋଳେ
ବାରିନିଧି ଗଣ୍ଡୁଷ ଯେ କଲୁ ଖେଳ-ରସ-ମେଳେ । ୧୦ ।
ସମୁଦ୍ର ଗୋପ୍ୟ ଗଲା ଯାହାର ଥୋର ହସ୍ତେ ।
ନ ରହିଲା ଚନ୍ଦ୍ର ବର୍ଣ୍ଣ ତୋହୋର ଦେଖନ୍ତେ

ଜୟ ଜୟ ରାଜୀବ ଲୋଚନ ଜୀବଧନ
ମୁହିଁ ତାହା ଲେଖିଲି ସ୍ୱାମୀର ବଖାଣ ।
ଗିରିଜାର ପ୍ରସନ୍ନେ ଯେ ଗିରିଜାନନ୍ଦନ
ସଦା ସମ୍ପଦ ନାଥ ପାଇଲି ଦର୍ଶନ ।
ସ୍ୱାମୀ ଅଜପା ମନ୍ତ୍ର ଯାହାର ଯୋଗଲୟେ
ତାହାର ପ୍ରସନ୍ନେ ହୋଇଲି ନିର୍ଭୟେ ।
ଶ୍ରୀ ବିଘ୍ନରାଜ ଚରଣ ହୃଦେ ଭାବି
ସଜନ ଜନ ସୋଦର ସାରଳା ଦାସ ସେବି ।

## ସାରଳାଦେବୀ ବନ୍ଦନା

ଆହୋ ସ୍ୟଳ ସ୍ଥାପନକୁ କୃପାଜଳ ନାମେ ବ୍ରହ୍ମା
ସୃଷ୍ଟି କରତା ଯେବଣ ମହାତମା ।
ତାହା କୂଳେ ଉତପତ୍ତି ଯେବଣ ମହାଦେବୀ
ମନୁକାଳ ବଞ୍ଚାଇଲା ଯେବଣ ବୈଷ୍ଣବୀ ।
ନାମ ସଙ୍କେତ ନର୍ମଦା ସରସ୍ୱତୀ
ଶାହାସ୍ରେଣ ପରପୂର୍ଣ୍ଣ ଶ୍ରୀସ୍ୱାରସେଣ ନିପୁତ ।
କଶ୍ୟପ ଦ୍ରୋହେ ପିତାର ଅଭିଶାପେଣ
କଶ୍ୟପେ ହଙ୍ଗୁଳାର ରୂପ ବହିଲକ ଗୋପେଣ ।
ଜମ୍ବୁଦ୍ୱୀପ ଭୂ ଅଖଣ୍ଡ ଓଡ଼ରାଷ୍ଟ୍ର ଈଶାନେ
ଗୋପେଣ ଭଗେନ ଚନ୍ଦ୍ରଭାଗା ତୀର୍ଥସ୍ଥାନେ । ୨୦ ।
ପ୍ରଶୁରାମ ପଞ୍ଚଣା କନକା ନାମେ ନଦୀ
କଳିଯୁଗ ଚାରିଲକ୍ଷ ବତିଶ ସହସ୍ର ବରଷକୁ ଦେବୀରୂପେଣ ସ୍ୱଭାଗ୍ୟକଣ ।
ଶୟଳ ଜନ ତାରଣ ଶ୍ରୀ ସାରଳା ଚଣ୍ଡୀନାମ
ସଜନଜନ ସୋଦର ସେ ଯୋଗେଣ ଆଦ୍ୟବ୍ରହ୍ମ ।
ଅଭୟେ ମାତାଙ୍ଗୀ ସେ ଶ୍ରୀ ସାରଳା ଚଣ୍ଡୀଦେବୀ
ଶୂଦ୍ରମୁନି ସାରଳା ଦାସ ଜନ୍ମେ ଜନ୍ମେ ଭାବି ।
ହେ ବୁଧଜନେ ନ ଘେନିବା ମୋହୋର ଦୋଷ
କିଂଚିତ କର୍ମେ ମୋହୋର ଜନ୍ମେ ଜନ୍ମେ ଆଶ ।
ଜନ୍ମେଣ ମୂରୁଖ ଅଛଇ ଅସାଧି
ଅପଣ୍ଡିତ ଗୋବିନ୍ଦ ଯେ କିସ ମୋର ବୁଦ୍ଧି ।

ଅଭଯ୍ୟେ କାନ୍ତାନ ଯେ ଜଂଙ୍ଖେର ପୁରବାସୀ
ଯେ ମୋତେ ପ୍ରସନ୍ନେ କହଇ ଦଶ୍ୱାସି ।
ଯେ ଦେବୀର ଆଜ୍ଞା ପ୍ରମାଣେ କର
ଶାହାସ୍ତ୍ର କହତ ସିକଇ ମୁଂ ଦେବୀର ନାମଧର ।
ହେ ବୁଧଜନେ ଯେ ପ୍ରଯନେ ମୋତେ ଯାହା କହଇ
ଅରୁଣ ପ୍ରକାଶେ ମୁଂ ତାହା ଲହଇ ।
ଯେହେ୍ନ ମୋତେ ଆଜ୍ଞା ଦେଲେ ଭବାନୀ
ତାହାର ଆଜ୍ଞାରେ ମୁଁ ଅଟଇ ଶୂଦ୍ର ମୁନ ।

## ମହିଷାସୁରର ତପସ୍ୟା

କୌରବ ମଣ୍ଡଳେ ପଗ୍ଭରଲେ ପରୀକ୍ଷରାଯ୍ୟେ
ଅଜ୍ଞାନୀ ବାଳୁତ ଭବେ ତକ୍ଷେକ ସର୍ପଘାଏ । ୩୦ ।
ନାସିକା ବାମପୁତ୍ରା ତକ୍ଷେକର ଘାତ
ଅନ୍ତର୍କାଳେ ଥାଇଁ ରାଜା ହୋଏ ବିକଳତ ।
ବିଷଘାତେ ଶରୀର ମହାଜାଳା
ନାରାୟଣ ଚନ୍ତନ୍ତ ସେ ଅଭିମନ୍ୟୁ ବଳା ।
ନାରାୟଣ ସୁମର ଯେ କହିଲ ବିଷ୍ଣୁ ବାତ
ଶୁକ ମୁନ ଭେଟିଲେ ପରୀକ୍ଷ ଅଗ୍ରତ ।
ବେଦ ଶାସ୍ତ୍ରେ ନର୍ଜିତ ଯେବଣ ମହାତମା
ଧର୍ମ ଉତପତ୍ତି କାଳେ ଭେଟିଲା ଶୁକ ବ୍ରହ୍ମା ।
ଅନ୍ତର୍କଳେ ଥାଇ ପ୍ରଣପତ୍ୟ କରଇ ରାଜା
ବସ୍ତ୍ର କୁଣ୍ଡଳ ରତ୍ନମାନ ଦେଇଣ କରଇ ପୂଜା ।
ଅନେକ ବିନୋସ୍ତି ଯେ ପରୀକ୍ଷ କରଇ ପୁଚ୍ଛା
ଜପ ତପ ବାସୀ ପୂରାଅ ମନବାଞ୍ଛା ।
ଭେ ମୁନ ଅପୁତ୍ରିକ ହୋଇଲ ନବଢିଲ ବଂଶ
ଦାଢେ ମୃତ୍ୟୁ ଦେଖ ତକ୍ଷେକର ଦଂଶ ।
ଶୁକ ମୁନ ବୋଇଲେ ହୋଇବ ତୋତେ କାରଣ
ଏକ ଲଏ କରରୁ ବିଷ୍ଣୁ ପୁରାଣ ଶୁଣ ।
ପୁରାଣୁ ଜାତ ତୋ କରିବୁ ସନ୍ତଷ୍ଟ
ବିଷ୍ଣୁ ଲୋକେ ବସିବୁ ଲଭିବୁ ସଦ୍‌ଗତ ।
ସକଳ କରଣ ହୋ ଶୁଣ ପାର୍ଥିବର ନାଥ
ଶୁକ ମୁନକ ପୁଚ୍ଛାକଲ ଧର୍ମ ଶାସ୍ତ୍ର ଗତ । ୪୦ ।

ମୁନି ହେ ଅନନ୍ତକୋଟି ଅବତାର ହୋଇଲେ ନିଜେ ନାରାୟଣ
ଅନେକ ଦାନବ ସେ ଧ୍ୱଂସନ କରଣ ।
ବଡ଼ ଅପୂର୍ବ କଥାଏ ମୁଁ ମନେ ସୁମରିଲି
ଅଦ୍ଭୁତ ଅବତାର ମୁଁ ଯେ ଦୁର୍ଗାରୂପ ବୋଇଲି ।
ମହିଷାସୁର ଦାନବ ଯେ ବଧ କଲାରଣେ
କହ ମୁନି ହେ ଶୁଣିବା ତୁମ୍ଭର ପୁରାଣେ ।
ଚଣ୍ଡୀର କଥା ଯେ ଶୁଣିବ ମୋର ଇଚ୍ଛା
ଯଦପି କରଣ ମୋର ପୂରାଅ ମନବାଞ୍ଛା ।
ଶୁଣିମା ସାନନ୍ଦ ବଦନ୍ତ ମହାତମା
ଶୁଣଇ ପରୀକ୍ଷ ଯେ କହଇ ଶୁକ ବ୍ରହ୍ମା ।
ଶୁଣ ହୋ ରାଜନ କାଶ୍ୟପଗୋତ୍ରେ ଯେ ସିଂହିକାଗର୍ଭଗତେ
ରାହୁ ବୋଲି କରି ଜନମିଲି ଏକ ପୁତ୍ରେ ।
ରାହୁର ପୁତ୍ର ଜମ୍ଭୁ ଦୈତ୍ୟ ବୋଲି
ଜମ୍ଭୁ ଦୈତ୍ୟର ପୁତ୍ର ଜପାସୁର ବୋଲି ।
ଜପାସୁର ନନ୍ଦନ ଖଜରାବୋଲି ବୀର
ତାହାର ନନ୍ଦନ ଅସୁର ଅର୍ଚ୍ଚିରା ।
ଅର୍ଚ୍ଚିର ନନ୍ଦନ ଯେ ଅମସ୍ୟେ ବୋଲି ବୀର
ଅମସ୍ୟର ନନ୍ଦନ ଯେ ଜନମିଲି ଲୋହସୁର ।
ଲୋହସୁରର ହୋଇଲେ ଯେ ଅନେକ ବୋଲି ପୁତ୍ରେ
ତାହାର ନନ୍ଦନ ଯେ ହୋଇଲେ ତାଡ଼କା ଅସୁରେ । ୫୦ ।
ତାଡ଼କାର ନନ୍ଦନ ଯେ ହୋଇଲେ ମଏ ଦାନବ
ତାହାର ନନ୍ଦନ ଯେ ଅସୁର ବଜ୍ରନାଭ ।
ଏହାର ନନ୍ଦନ ଯେ ଅସୁର ମାରୁଚ
ଅହୋ ମାରୁଚର ନନ୍ଦନ କାଲିଂଚ ।
ଶିବ ପରତୋଷେ ନାମ ସତ୍ୟଯୁଗ କାଳେ
ନାରାୟଣ ଯୋଗଲଯ୍ୟେ ସେବା ବାକ୍ୟ ଦେବୀର କୋଳେ ।
ତାଡ଼େକା ବୋଲିଣ ହାବେ ସେବଣ କଇଣୋପ
ନାନା ତୀର୍ଥ ସର୍ଚ୍ଚିଲ ସେ ନାଶିଲି ସବୁ ତପ ।
କାମ ଯେ ଦହନ କଲା ମହାଦେବ
ଉତ୍ପନ୍ନ ହୋଇଲା କୁମାର ସମ୍ଭବ ।

କୁମାର ନାଶକଲା ଯେ ତାଡ଼କା ଦର୍ପିଷ୍ଟ
ତହୁଁ ଜାତ ହୋଇଲା ସଣ୍ଡଦାସ ବଳିଷ୍ଟ ।
ସେ ବିରୋଧିଲା ଯେ ଅଜସ୍ରେ ସ୍ୱର୍ଗପୁର
ଅମର ତେଜି ପଳାଇଲେ ସୁନାସୀର ।

ଏହା ଶୁଣି ଆଶ୍ରିଜ ହୋଇଲେ ପରୀକ୍ଷରାଜା
ଶୁକ ମୁନି ଚରଣେ କଲା ଅର୍ଘ୍ୟ ପୂଜା ।
ଅହୋ ପରୀକ୍ଷ ଷାଠିଏ ଦୁହିତା ହୋଇଲେ ଦକ୍ଷ ପ୍ରଜାପତିର
ପୁତ୍ର ଉପୁଜିଲା ଗୋଠିଏ ତୋହିତା ତାଙ୍କର ।
ଅସୁର ଅନ୍ତେ ଜାତ ହୋଇ ସେ ପିତା
ପୁନେକ ଉତପତ୍ତି ହୋଇଲେକ ଏକା । ୬୦ ।

ବିବାଦକାଳେ ନାଶ ଗଲେକ ରାହୁ
ବେନି ଖଣ୍ଡ ହୋଇ ଗଲେକ ସହସ୍ର ବାହୁ ।
ବଡ଼ ଦୁରାପଦ ତ କହିଲ ମୁନିରାୟେ
ଲେଖନ୍ତେ ଅସୁର ବଂଶ ବଢ଼ାଇ ଗହନ ହୋଏ ।
ବଦନ୍ତି ବ୍ରହ୍ମଋଷି ବ୍ୟାସ ସୁତ ମହାଋଷି ବ୍ରହ୍ମା
ଶୁଣହୋ ସାବଧାନେ ପରୀକ୍ଷ ମହାତ୍ମା ।

ଶିବ ପ୍ରତୋଷ କାଳେ ସତ୍ୟଯୁଗେ
ପ୍ରଳୟନ୍ତେ ଜଳମଧ୍ୟେ ହୋଇଲେ ତିନି ସ୍ୱର୍ଗେ ।
ନିରଞ୍ଜନ ନାଥ ଯେ ଶୟନେ ଯୋଗବଳେ
ଅନାଦି ମହେଶ୍ୱରୀ ବାକ୍ୟଦେବୀର କୋଳେ ।
ନାସିକାରେ ରସ ପୂରାଇଲେ ଦେବନାରାୟଣ
ବେନି ବୀର ଉତପତ୍ତି ହୋଇଲେ ତତକ୍ଷଣ ।

ଆକାଶେ କ୍ଷେପନ୍ତି ସେ ବଢ଼ନ୍ତି କୌଣୋପ
ନାମ ସଂକେତ ଅଟଇ ଦୁଇଙ୍କର ମଧୁକୈଟଭ ।
ନାରାୟଣ ଶିରସ୍ଥାନ ପାଖେଣ ବାକ୍ୟଦେବୀ
ଅଙ୍କୁର କୋଳେ ସେ ଅଛୁ ପରମ ବୈଷ୍ଣବୀ ।
ଅନନ୍ତ କୋଟି ବ୍ରହ୍ମାଣ୍ଡ ଜଳମଧ୍ୟେ ଅଗାଧ
ସେ ବେନି ଦୈତ୍ୟଙ୍କର ଭଣ୍ଡି ନଟନ୍ତିଲ ପାଦ ।
ଅତ୍ୟନ୍ତ ସୁନ୍ଦର ଦେଖିଣ ଧବଳାଙ୍ଗୀ
ସେ ବେନି ବୀରେ ଯାଇ ଶୃଙ୍ଗାର ରସ ମାଗି । ୭୦ ।

ସରସ୍ୱତୀ ବୋଇଲେ ଉଠ ଦେବରାଏ
ମୋତେ ଅଭିଳାଷ ମାଗନ୍ତି ଏ ଦୁହେଁ ।
ଶୁଣିଣ ଶେଯ୍ୟା ଛାଡ଼ିଲେ ଯୋଗ ବଳେ
କାଳ ଅନଳ ଜାଣି ସେ ଭ୍ରମଇ ବେନି ଡୋଳେ ।
କରେଣ ଚକ୍ର ଘେନି ଯେ ବିକ୍ରମ ଅନାଦି
ଭଯ୍ୟେକର ମଧୁକୈଟଭେ ବର ପ୍ରସାଦି ।
ସ୍ୱାମୀ ନଜାଣି ଆମ୍ଭେ ଯେ ମାତାକୁ କଲୁ ଦ୍ରୋହ
ତୁମ୍ଭଂକ ଉଚିତ ଶାସ୍ତି ଦେବ ଆମ୍ଭକୁ ବହ ।
ଭଗତି ମନାଇ ଯେ ମାଗିଲେ ବେନି ବୀର
ଯହିଁ ପାଣି ନାହିଁ ତହିଁ ଆମ୍ଭନ୍ତ ମାର ।
ଶୁଣି ନାରାୟଣ ଧଇଲେ ଭୂଜେ ତନୁ
ଦୁଇ ଦାନବ ପାଡିଲେ ବେନି ଜାନୁ ।
ଗଦା ମାରଣ ଯେ ମାଂସ କଲେ ଚୂର୍ଣ୍ଣ
ଜଳ ଉଛେଣି ପୃଥ୍ୱୀ କଲେ ସର୍ଜ୍ଜନ ।
ମେଦାସୁର ମାରି ଯେ ସ୍ରିଜିଲେ ମେଦନୀ
ଆଦି ପୃଥିବୀଏ ମଧୁକୈଟଭ ବେନି ।
ଶ୍ରୀ ଶୁକ ବୋଇଲେ ହେ! ଶୁଣ ପରୀକ୍ଷଇଂ
ଅସୁର ମାଂସ ସେ ମେଦନୀ ହୋଇ ଅଛଇ ।
ପୃଥିବୀ ମଣ୍ଡି ସେ ଅଛଇ କୌଣୋ'ପ
ଏ ମେଦନୀରେ ପଡ଼ିଲେ ତାହାଙ୍କର ତେଜ ଦର୍ପ । ୮୦ ।
ବ୍ରହ୍ମ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଚାରି ଜାତି
ଏସନେ ସେ ପୃଥ୍ୱୀ ଆବୋରି ଅଛନ୍ତି ।
ମହୀଦାସ ରାଜାର ଅଛଇ ମହୀସ୍ଥଳୀ
ତେଣୁକରି ନାମ ବହିଲା ମହୀଆଳି ।
ପରୀକ୍ଷ ନୃପତି ଶୁଣିଲା ସନ୍ଦେହ
ବୋଇଲା ମୁନି ହେ ମୋତେ ସଂଚରିଣ କହ ।
ଶୁଣ ହୋ କଉରବ ବଂଶର ଆଦିପତି
ତୁ ଯାହା ପୁଚ୍ଛାକଲୁ ଏସନ ଅଛଇ ପୃଥ୍ୱୀ ।
ମହୀ ଦାସର ନନ୍ଦନ ସଉଦାସ ରାକ୍ଷସ
ଜଳତରଙ୍ଗ ବୋଲି ଯେ ହୋଇଲା ତାର ଶିଷ୍ୟ ।

ଜଳ ତରଙ୍ଗ ନନ୍ଦନ ଅସୁର ବୀର ମେଧା
ଏସେ ଆକାଶକୁ କଲା ବଡ଼ ଶରଧା ।
ମେଧାର ନନ୍ଦନ ଯେ ଅସୁର କୃତକେଶୀ
ସଂସାର ଦହିଲା ସେ ନାଶିଲା ସକଳ ଋଷି ।
କୃତକେଶୀର ସୁତ ଯେ ନିକଟାସୁର ନାମ
ଏହାର ଭୟେ ସେ ଦେବ ପଳାଇଲେ ଅତିଶ୍ରମ ।
ନିକଟାସୁରର ଯେ ପୁତ୍ରେକ ହୋଇଲା
ଭାସ୍କର ସେବ ସେ ଭାସ୍କର ନାମ ପାଇଲା ।
ଭାସ୍କର ପୁତ୍ର ଯେ ପିଙ୍ଗଳେଶ୍ୱର ଦାନେବ
ବଜ୍ରସୁର ବୋଲିକରି ତାହାର ପୁତ୍ରେ ହୋଇବ । ୯୦ ।
ବଜ୍ରସିଂହର ପୁତ୍ର କପିଳ ସିଂହ ନାମ ଦନୁଜ
କପିଳ ସିଂହର ପୁତ୍ର ମଂଷାସୁର ରାଜ ।
କପିଳ ସିଂଘ ଦାନବ ଯେ ଈଶ୍ୱର କଲା ପୂଜା
ମୀର ଆହାର ସେ ଖଟଇ ଦେବ ରାଜା ।
ଚତୁର୍ବିଂଶ ବରଷ ଘୋର ତପ କଲା
ଅତି ଘୋର ତପେ ସେ ଈଶ୍ୱର ବଜେ କଲା ।
ବର ମାଗ ବୋଲି ସେ ବୋଇଲା ଈଶ୍ୱର ଦେବତା
କପିଳ ସିଂଘ ବୋଇଲା ମୁଂ ହୋଇବି ତ୍ରିଶିରା ଜିତା ।
ସ୍ତମ୍ଭନ ବିଦ୍ୟା ଯେ କହିଲେ ଦେବରାଜ
ଶୃଙ୍ଗାର ରତିରସେ କେହି ସମାନ ନୋହିବ ।
ଏସନେକ ବୋଲି ବର ଦେଲେକ ଈଶାନ
ଅନେକ ବଳସିଲା ସେ ଦାନେବ ଯାତୁଧାନ ।
ଆହେ। ପରୀକ୍ଷ ରାଜା କପିଳ ସିଂହର ଧର୍ମରୁତୁ ବୋଲି ଭାରଜା
ଶୃଙ୍ଗାରର ଭୟେ ସେ ସ୍ୱାମୀକି କଲା ତେଜ୍ୟା । ୯୭ ।
ମହିଷୀ ରୂପ ଧରି ପଳାଇ ଯୁବତୀ
ସିଂହଳ ଦେଶେ ଯାଇଂସେ ଗୋପ୍ୟକଲା ସ୍ଥିତି । ୯୮ ।
ଲୋଡ଼ିଣ ଅନେକ ଦ୍ୱୀପ ଖୋଜଇ କପିଳ ସିଂହ
ଭାର୍ଯ୍ୟାକୁ ନପାଇ ସେ ବହୁତ ଉଦ୍‌ବେଗ । ୯୯ ।
ଯମର ବାହାନ କୃତାନ୍ତେକ ନାମେ ମହିଷା ।
ସିଂଘଳଦ୍ୱୀପେ ଚଳଇ ଯେ ତହିଂ ତାର ବସା । ୧୦୦ ।

ଶୁଣ ହୋ ପରୀକ୍ଷ ସିଂଘ ମାସ ଅମାବଇ ଦିନ ।
ରବିବାର ମଘା ନକ୍ଷେତ୍ର ସେ ସେଦିନ
ଯମର ବାହନ ସେ ସିଂଘଲ ଦେଶେ ଭ୍ରମଇ
ମଇଂଷି ଦେଖିଣ ସେ ଗାଢ଼େ ଉଲ୍ଲସଇ ।
ସେ କପିଳ ସିଂଘର ଖିରଜା ମଇଁଷି ରୂପ ଧରିଥିଲା
ଯମର ବାହନ ମଇଁଷିକି ଦେଖିଲା
ପଳାଇ ମଇଁଷି ଯେ ସିଂଘଲ ଦେଶ ଭ୍ରମି
ଗୋଡ଼ାଇ ବାହନ ସେ ପବନହୁଁ ଉତ୍କର୍ମୀ
ନବ ଲକ୍ଷ ଯୋଜନ ସେ ପଳାଇଲା ଭୟେ
ଛିଦ୍ରେ ନଗୁଡ଼ଇ ସେ ଗୋଡ଼ାଇ ଚାଲୟେ
ସିଂଘଲ ଦ୍ୱୀପେ ଏକ ବନସ୍ତେକ ଅଛି
ତହିଁର ଭିତରେ ନଦୀ ବହଇ କାମାକ୍ଷୀ
ସେ କାମାକ୍ଷୀ ନଦୀ ତଟେ ସୁବର୍ଣ୍ଣ ଗିରି ପର୍ବତ
ଶିଶୁନାମେ ବଟ ତହିଂର କୂଳେ ପ୍ରଶସ୍ତ
ସେ ପର୍ବତର ଉପରେ ଶିଶୁବଟ ଚଳେ
ମଇଂଷିକି ମାଡ଼ିବସିଲା ତହିଂବଳେ
ସ୍ୱେଶେଣ ଶୃଙ୍ଗାର କଲା ଯମର ବାହନ
ଅକ୍ଷୟେ ବୀର୍ଯ୍ୟକ ସେ ଗୁଡ଼ିଲା ତୋଷ ମନ
ଅତିଅନ୍ତ ଶୃଙ୍ଗାରେ ଗୁଡ଼ିଲା ମହାବୀର୍ଯ୍ୟ
ସଇନ୍ଦୁ ଉତପତ୍ତି ଯେ ହୋଇଲା ତନୁଜ । ୧୦୦
ମହାବଳବନ୍ତା ଯେ ମାତାର ମହାତେଜ
ମଇଁଷିର ଗୋଟି ଶରୀର ସାନୁକ
କଣ୍ଠାସ୍ତୁ ନିର୍ବାଣ ସେ ବାଳଅର୍କ ଜାଣିତେଜ
ନିର୍ଧୂମ ଅଗ୍ନି ଜାଣି ତେଜ ଯେ ବିରାଜ
କପିଳ ସିଂଘ ବନେ ସେ ଭ୍ରମଇଁ ଚଉକଢ
ଅନେକ ଶ୍ରମେ ସେ ଲୋଡ଼ଇ ଚଉକଢ
ଲୋଡ଼ନ୍ତେ ଭେଟିଲା ସେ କପିଳ ମହର୍ଷି
ମଉନ ଯୋଗ ହୋଇଣ ସେ ପ୍ରୀତ ହୋଇଣ୍ଟଳ ବସି
କପିଳସିଂଘ ବୋଇଲା ମୋର ଧର୍ମରେଖା ଭାଜିଜା
ପ୍ରୌଢ଼ାବସ୍ଥସେ କଲା ମୋତେ ତେଜ୍ୟା

ତାହାଙ୍କୁ ନ ପାଇ ସେ ଆକାଶକୁ ଧାଡ଼ି
ତାହାର ରଗେ ଅନେକ ହରିଲ ଦେବସ୍ତ୍ରିଣୀ ।
କପିଳ ଋଷି ବୋଇଲେ ଆପଣା ଭାରଜା ପ୍ରିୟବନ୍ତ
ତାହାର ନ ଥିଲେ ସେ କାହାକୁ ହିଁ ନାହିଁ ଗତ ।
ଋଷି ବୋଇଲେ ମୁଁ ସିଂଘଳ ଦେଶେ ଥିଲି
ମହିଁଷି ମହାସାର ଶୃଙ୍ଗାର ଦେଖିଲି ।
ସେ ମହିଂଷି ବୋଇଲା ମୁଁ ନୋହଇ ଏହେନ୍ନେକ ଜୀବ
କପିଳ ସିଂଘର ଭାରଜା ମୁଁ ଧର୍ମରେଖା ସମ୍ଭବ ।
ତୁ ଦେବ ବାହାନ ମୁଁ ଅଟଇ ଅସୁରୀ
ମୋତେ ଛୁଅଂନ୍ତେ ଅନେକ ଦୋଷ କାରୀ । ୧୨୦ ।
ଯମରାଜ ବାହନ ଯେ ନଶୁଣଇ ତାହା
ବଳେ ଶୃଙ୍ଗାର କଲା ସେ ମନର ଉତ୍ସାହା ।

କହଣ କପିଳ ଋଷି ଯେ ଗଲେ ଅନ୍ତର୍ଦ୍ଧାନେ
କପିଳ ସିଂଘ ଯାଇ ସିଂଘଳ ଦ୍ୱୀପ ପାଏ ।
ସୁବର୍ଣ୍ଣକୁଟ ପର୍ବତେ ଭେଟିଲା ଭାରଜା
କାଣ୍ଡାସୁରର ସମାନେ ସଙ୍ଗେ ଅଛୁ ତନୁଜା ।
କପିଳ ସିଂଘ ଦନୁଜ ରୁଷ୍ଟ ହୋଏ ଦେଖି
ପରଦାରା ଦୋଷମାନ ପୁତ୍ରକୁ ଦେଖି ଉପେକ୍ଷି ।
ସ୍ୱାମୀଙ୍କ ଦେଖି ସେ ଅନେକ ସଙ୍କୋଚିତ
ନିଜ ରୂପ ଧଇଲା ସେ ଗ୍ରୁଡ଼ିଣ ବିକୃତ ।
ଧର୍ମରେଖା ବୋଇଲା ସ୍ୱାମୀ ତୋହର ତେଜ ନୋହଇ ସହ୍ୟ
ତେବେ ନମନ୍ତେ କରି ଅଇଲଇଂ ମୁହିଁ ।
ଯମର ବାହନ କୃତାନ୍ତକ ମହିଷୀ
ସେ ମୋତେ ବଳକ୍କାରେ କଲାକ ଯେ ନାଶି ।
ମୁହିଁ ପରଦାରଣୀ ହୋଇଲି ତୁ ବାହୁଡ଼ିଣ ଯା ଯା
ମୋହୋର ଦେଖନ୍ତେ ଅସୁର କୂଳର ହୋଇଲା ଲକ୍ଷ୍ୟା ।
କପିଳ ସିଂଘ ବୋଇଲା ମୁଂ ନ ଯିବି ନିଜ ଦେଶ
ଏ ପୁତ୍ର ଘେନି ଆମ୍ଭେ କରିବା ଗୃହ-ବାସ ।

ଶୁଣ ହେ ପରୀକ୍ଷ ବୋଲନ୍ତି ଶୁକ ବ୍ରହ୍ମା
ସିଂଘଳ ଦେଶରେ ରହିଲା ସେ ମହାତମା । ୧୩୦ ।

କାମାକ୍ଷୀ ନଦୀ କୂଳେ ରହିଲା ନଗରକରି
କଟେକ ରଚିଲା ସେ କେନାବତୀ ନଗ୍ରୀ ।
ପୁତ୍ରକୁ କୋଳେ ଧରି କପିଳ ସିଂଘ
ପୁତ୍ରର ନାମ ଦେଲେକ ମହିଷା ସିଂଘ ।
କପିଳ ସିଂଘ ଧର୍ମରେଖା ମହିଷାକୁ ଦେଇ
ଏବଧି ରାଜ୍ୟ ସେ କରନ୍ତି ଜନଡନ ।
ମହିଷାସୁର ହୋଇଲା ଶହସ୍ରଧାରୀ
ବ୍ରହ୍ମାକୁ ତପସ୍ୟା କଲା ନୀର ଆହାର କରି ।
ନବ ସହସ୍ର ବରଷ ନିରାଶ ମହାତପ
ଅନେକ ସ୍ତୁତି ସେ କରଇ କଉଣ୍ଡପ ।
ମହା ଅନଳ ସ୍ଥାପି ସେ ମାଂସ କାଟି ପକାଇ
ଅଗ୍ନିର ଭିତରେ ସେ ରୁଧିର ମାଂସ ଦେଇ ।
ପୁଣ କଅଁଳଇ ସେ ପିତାର ନିସ୍ୱଣେ
ପୁଣ ଆହୁତିରେ କାଟିଦିଅଇ ମାଂସେ ।
ଏତେକ ପ୍ରମାଣେ ସେ ତପ କରଇ ଦାନେବ
ନବ ସହସ୍ର ବରଷ ଶ୍ୱାସ ଦବ ।
ଏତେକ କଷ୍ଟୋର ସେ ଦାନେବ ଦେଖିଲ ବର୍ଣ୍ଣିଛନ୍ତି
ପ୍ରାଣ ବହିଲା ସେ ଶରୀର ଯାତୁଧାନ ।
ଏକବିଂଶ ସହସ୍ର ବରଷେ ଯାଏ ଧ୍ୱଂସି
ଆହୁତିଏ କରି ସେ ଅଗ୍ନିରେ ଯାଇ ପଶି ।୧୪୦।
ଅନଳ ଭିତରେ ନେଇ ନିବେଶିଲା କାୟା
ଦହନ ନୋହିଲା ସେ ପିତାମହର ମାୟା ।
ଦହଇ ବହନ ଯେ ନିଜ କାୟା ଲାଗି
ଦୁରାପଦ କଠୋର ଯେ ଜୀବନ ପରତ୍ୟାଗି ।
ଏସନ ନିର୍ବାଣ ଯତ୍ନଂ ଦେଖିଲା ପିତାମହ
ଅଶୀ ସହସ୍ର ବରଷେ ଜାଣିଲେ ସନ୍ଦେହ ।
ମହାଘୋର କଷ୍ଟୋର ତପ ଦେଖି ବ୍ରହ୍ମାଅର୍କେ
ସମସ୍ତେ ଜଣାଇଲେ ସେ ବ୍ରହ୍ମାର ସମୀପେ ।
ଇନ୍ଦ୍ର ଚନ୍ଦ୍ର ଯମ ପବନ ବୃହସ୍ପତି
ଇନ୍ଦ୍ର ସୂର୍ଯ୍ୟ ବରୁଣ କୁବେର ପ୍ରକୃତି ।

ଗ୍ରହଗଣ ଆଦିକରି ସମସ୍ତ ଦେବଲୋକେ
ସମ୍ମୁଖପନ୍ତ ସମସ୍ତେ ହେଁ ମହାଶୋକେ ।
ଯଶୋବନ୍ତୀ ଭୁବନେ ବିଜୟେ ବେଦବର
ଆସ୍ଥାନର ତଳେ ସମସ୍ତେ ଦେବାସୁର ।
ଶତ ସହସ୍ର ଦଣ୍ଡବତ ପ୍ରଣମିତ ଧାଇଁନ୍ତି
ଦେଖିଣ ପ୍ରତିବାକ୍ୟ ଦିଅନ୍ତ ପଦ୍ମଯୋନି ।
ଇନ୍ଦ୍ରବାକ୍ୟ ପିତା ତୋର ବାକ୍ୟ ଭୁଟି
ଅବସ୍ଥ ଭାବେଣ ଯେ କହନ୍ତ ବିରଞ୍ଚି ।
କିମ୍ପାଇଁ କାରଣ କହସି ଦେବଲୋକେ
ମୁଖେଣ ଅଙ୍ଗୁଳି ଭରି ସେ କହନ୍ତ ମହାଶୋକେ ।୧୫୦।

ବୃହସ୍ପତି ବୋଇଲେ ତୁ ଦେବ ଜଗତର ବନ୍ଧୁ
କାରଣ ନାରାୟଣ ତୁ କୃପାବାରସିନ୍ଧୁ ।
ତୁ ଦେବ ଶଯ୍ୟଳ ଜନ ନାଥ ଚନ୍ଦ୍ରା
ତୁ ଦେବ ନବସୃଷ୍ଟି ବିହନ୍ତା ବିଧାତା ।
ତୁ ଦେବ ସଚଳେ ଛପନ କୋଟି ଜୀବଜନ୍ତୁ
ତବ ଚନ୍ଦ୍ରାଏ ଶଯ୍ୟଳ ଦୃଢ ହେତୁ ।
ତୁ ଦେବ ଅନାଦି ସିଦ୍ଧ ଅବକାର ଚନ୍ଦ୍ରା
ପ୍ରଳୟ ଉଦ୍ଧାରଣ ନାଥ ବିହନ୍ତା ବିଧାତା ।
ତୋହୋର ବିହଲେ ସକଳ ଜୀବ ଚଳି
ତୋହୋର ନିଦ୍ରାଗଲେ ସମସ୍ତେ ହେଁ ଢଳି ।
ସ୍ୱାମୀ ପ୍ରଳୟ ଗତେ ଯାଇ ଏକ ଦିବ
ଏ ତୋହର ମହିମା ଲେଖନ ନସିବ ।
ଶ୍ରୀବ୍ରହ୍ମ ଦେବତା ଚରଣେ ଶରଣେ
ବଦନ୍ତ ସାରୋଳ ଦାସ ମୁକତ ବାଟ ଯେଣେ ।

—:o:—

**ଶୁଣ ହୋ** ପରୀକ୍ଷ ଛାଏ ବୋଲନ୍ତ ଶୁକମୁନି
ଦେବତାଙ୍କ ବିନୟେ ଦେଖି ବୋଲନ୍ତ ପଦ୍ମଯୋନି ।
ହେ ଦେବତାମାନେ ସ୍ତୁତି କି କାରଣ
ବିଇକୁଳ ହୋଇ କହୁଅଛ କେବଣ ବ୍ୟାଣ ।

ବୃହସ୍ପତି ବୋଇଲେ ଶୁ ହେ ଦେବେ ଚର ଅଦ୍ଭୁତ
ରମ୍ଭର ବଂଶେ ମହିଷାସୁର ଦୈତ୍ୟ ଉତ୍ପତ ।୧୭୦।
ବଡାଇ ନାରାଶ ତପ କରଇ ସିଂହଳ ଦ୍ୱୀପେ
କାହାର ସମାନ୍ୟ ରୂପ ଯେଉଁ ସେ ଭଗତ ଅନରୂପେ ।
ଦଇବେ ଦୂରାତ୍ମେକ ସେ ଅଟଇ ରାକ୍ଷସ
ତୋତେ ସେବଣ ସେ ଅମର ଫଳ ଆଶ ।
ଇନ୍ଦ୍ର ବୋଇଲ ମୋର ହେବନି ଅମର
ମୋହୋର ପଦ ନେବ ବୋଇଲ କୁବେର ।
ଯମ ବୋଇଲେ ଯେ ନେବ ମୋର ପଦ
ବୃହସ୍ପତି ବୋଇଲେ ସେ ଅନେକ କରିବ ପ୍ରମାଦ ।

ଦେବଙ୍କର ମୁଖୁଂ ଏସନ ବାଣୀ ଶୁଣି
ପିତା ବୋଇଲେ ମୁଂ ଯିବି ଏହିକ୍ଷଣି ।
ବଡାଇ କଷ୍ଟୋର ସେ କରଅଛୁ ତପ
ଅବଶ୍ୟ ଦେବଇ ମୁଂ ତାହାଂକ ଅନରୂପ ।
ଅଥବା ଯେ ଅବା ପାର ବୁଦ୍ଧି କର
ଯେମନ୍ତେ ସମ୍ପଦହେ ନ ହରଇ ତୁମ୍ଭର ।
ଇଦଂ ବାକ୍ୟ କହିଲେ ସେ ଦେବବର ବିରଞ୍ଚି
ଆମ୍ଭେ ବୁଝି ସିନା ହୋ କସ ଅର୍ଥେ କରୁଅଛୁ ।
ବାଞ୍ଛିତ କର୍ମ ବୁଝିବା କସ ବୋଲଇ
କଥା ସମୁଝି ଜାଣିମା ନା କସ କହଇ ।
ଚଳ ହେ ବୃନ୍ଦାଅର୍କେ ନକର କଛୁ ଚନ୍ତା
ମୁହିଂ ସେ ସମସ୍ତଙ୍କୁ ହିଂ ବ୍ରହ୍ମ ବିଧାତା ! ୧୭୦।
ଅନେକ ସମାର୍ଜନା କରି ଦେବତାଙ୍କୁ ପଠିଆଇଂ
ସେ ଯାହାର ଭୁବନେ ବଜେକଲେ ଯାଇଂ ।
ଶୁଣ ହୋ ପକ୍ଷୀ ବୋଲନ୍ତି ଶୁକମୁନି
ଘନ ଘନ ଆସନ କମ୍ପଇ ପଦ୍ମଯୋନି ।
ବଜସ୍ତେ ବେଦବର ମରାଳ ବାହନେ
ତୁଲେ ଗୋଡାବନ୍ତି ବ୍ରହ୍ମ ଋଷିମାନେ ।
ବଶିଷ୍ଠ ବିଶ୍ୱାମିତ୍ର ବାମଦେବ ଅଗସ୍ତି
ପୌଲସ୍ତି ଶତମନୁ ବାଲମିକ ବୃହସ୍ପତି ।

ନାରଦ ବଶିଷ୍ଠେକ ମାରକଣ୍ଡ ସୁଦେବ
ଭରଦ୍ୱାଦଶ ସୁମନ୍ତେକ ବାମଦେବ ।
ଋଷିସିଂଘ କୌଶିକ ଭୃଗୁ ମୁନି ତୁଲେ
ହାହା ହୁହୁ ତନକୋଟି ଦକ୍ଷଗଣ ମେଳେ ।
ଏହାଙ୍କ ମୂଳେ ବହୁତ ବାଲଖିଲା
ଚଳନ୍ତ ବ୍ରହ୍ମଦେବତା ଭଗତ ଜନଭେଳା ।
ସପ୍ତ ବ୍ରହ୍ମାଣ୍ଡ ଭିତରୁ ବାହାର ବେଦବର
ଆସି ପ୍ରବେଶ ହୋଇଲେ ସିଂଘଳ ଦ୍ୱୀପର ।
କାମାକ୍ଷୀ ନଦୀ ତଟେ ସୁବର୍ଣ୍ଣଟିଶ ପର୍ବତ
ଶିଶୁପା ବୃକ୍ଷ ତଳେ ତପ ଆଶ୍ରମ ନିର୍ଜିତ ।
ସେହୁ ସ୍ଥାନ ମହେଷାର ତପ ଆଶ୍ରମ
ଦେଖିଣ ଆଶ୍ଚର୍ଯ୍ୟେ ସ ହୋଇଲେ ଦେବବ୍ରହ୍ମା । ୧୮୦ ।
ସାଧୁରେ ଦାନେବ ବୋଲିଣ ପରଶଂସି
ମହେଷାର ସନ୍ନଧେ ବଜେ କଲେ ଆସି ।
ଦେଖିଣ ପ୍ରଶଂସା କରନ୍ତି ଦେବାଦେବ
ଗଡେଣ ନଥିଲର ଆଗଡେଣ ନୋହିବ ।
ପର୍ବତର ଉପରେ ରହିଲେ ବ୍ରହ୍ମଗୃହୀ
ମରାଳ ବାହାନୁ ଦେବବେଷଣ ଉତୁରି ।
କମଣ୍ଡଳୁ ପାଣି ନେଇ ନବାଇଲେ ବହନ
ଦେଖିଲେ ଲୋହିତ ବର୍ଣ୍ଣ ମଏଂଷାର କ୍ରୋଧ ଜାଣି ।
ନଖମୁଖ ନାସିକା ଗୃଶ ଚରଣ ନାହିଁ
ମଣିସ୍ତମ୍ଭ ପ୍ରାୟେ ଦଶଇ ତାର ଦେହି ।
ଗୃହିଂଲେ ପିତାମହ ଅବଲୋକନ ଦୃଷ୍ଟି
ଦକ୍ଷିଣ କରେ ଦେବ ଅମୃତ କଲେ ବୃଷ୍ଟି ।
ଅମୃତ ପାଇ କଉଁଳିଲା ଚରଣ ଭୂଜ
ଅମୃତ ଲେପନ୍ତେ ତେଜ ବିକାଶିଲ ଦ୍ୟୁତଦନୁଜ ।
ଲୋହିତ ବର୍ଣ୍ଣ ଶରୀର ମଂହେଷାର ମୁଣ୍ଡ ଗୋଟି
ପିତାର ଦେଖନ୍ତେ ହୃଦମଣ୍ଡଳେ ଥାଇ ଘୋଟି ।
ପିତା ବୋଇଲେ ବର ମାଗ କୌଣୋପ
ଶୁଣି କୋପ କଲା ମଂଷା ଅତହିଂ ଦୁରାତପ ।

ଦୁଃଖେ ଅରଜିଲଏ ମୋହର ଯେବଣ ତପ
ତାହା କେବଣ ମହାତମା ଭାଙ୍ଗିଲା ଏତେ ଗୃପ । ୧୯୦ ।

କେବଣ ମହାତମା ତୋର କାହିଁ ଗୃହବାସ
ଏଡ଼େବଡ଼ କଷ୍ଟୋର ତପ କଲୁ ନାଶ ।
ନିଷ୍ଟୟେ ଆଜ ତୋର ଘେନଇଂ ମୁଁହି ପ୍ରାଣ
ଏଡ଼େକ ମତ୍ତ ଗର୍ବରେ କେବଣ ବ୍ରାହ୍ମଣ ।
ଧାତା ବୋଇଲେ ରେ ତୁ ଯାହାକୁ ତପ ସଞ୍ଚି
ମୁଁହି ସେ ପିତାମହ ଅଭୟେ ବରଞ୍ଚି ।
ମହିଂଷାସୁର ବୋଇଲା ଦେବ ତୁହି ଯେବେ ପିତା
ନିଜ ରୂପ ତୋର ଦେଖଇ ଦେବଧାତା ।
ଶୂନ୍ୟ ଶବଦ ଶୁଭଇ ଉଠାଉକନା ମୋତେ
ବ୍ରହ୍ମ ଚହ୍ନ ନଦେଖିଲେ ପ୍ରତେଯିବ କେମନ୍ତେ ।
ମହିଷାସୁର ବଚନେ ପିତାମହ ପ୍ରକାଶି
ଅଭୟେ ଶରୀର ନାଥ ସ୍ୱରୂପ ଦେଖାସି ।
କଷ୍ଟୋର ବଚନେ ସେ ନିଜ ରୂପ ବିଧାତା
ସ୍ୱରୂପ ପ୍ରକାଶିଲେ ସେ ଜଗତ କରତା ।
ବାମେଣ ସୁବନ୍ତ ଯେ ଡାହାଣେ ବିଧାତା
ଆଗେଣ ବ୍ରହ୍ମର ବଦନ ପଛେ ବିଂରଞ୍ଚି କରତା ।
ଶାଇର ଜ୍ୟୋତିରୁ ଧନୁର ଶିଶୁମନା
ନିରାକୁଳ ଶରୀର ଏକାଦ୍ୱାଦଶ ସାଧନା ।
ଚତୁର ବଦନେ ଯେ ଶୋଭିତ ଅଷ୍ଟ ଭୁଜ
ଦଣ୍ଡକମଣ୍ଡଳୁ ଜପାମାଳ ସଜ । ୨୦୦ ।

ବ୍ରହ୍ମା ଶକତି ଅଗ୍ନାଅଗ୍ନି ପ୍ରକୋଢଶର
ଅଭୟେ କବଚସେନାହ ବଜ୍ରମୁଦଗର ।
କରକେ ଉଜ କରେଣ ବ୍ରହ୍ମବେଣୀ
ଚତୁର୍ସମଧେକ ଅଭୟେ ବେଦବାଣୀ ।

ପରମ ନିରାକୁଳ ପବନ ବେଦପୋଥି
ଲୋହିତ ବର୍ଣ୍ଣ ଶରୀର ବନେ ବେଦପଥ ।

ଦ୍ୱାଦଶ ଶ୍ରୀବସ୍ତ୍ର ଯେ ନିକସ୍ଥ ବସନ
ନିର୍ମିତ କବେଶ ଗୋପୀ ଚନ୍ଦନ ଚିହ୍ନ ।

ଗୋପ୍ୟାନ ଜପା ଅଜପା ମହାମନ୍ତ୍ରେଣ ଯୁକ୍ତା
ମହାପ୍ରୋକ୍ଷିଣୀ ବିଜସ୍ତେ ନିରାକୁଳ ଦେବତା ।
ଗାଏତ୍ରୀ କବଚ ପଞ୍ଜର ନାମବନ୍ତ ।
ଅନନ୍ତ ଅବ୍ୟୟ ଅବିକାର ଯେ ସତତ ।
ଆହେ। ପଣ୍ଡିତ ଅନନ୍ତ କୋଟିବ୍ରହ୍ମାଣ୍ଡକୁ ଯେବଣ ବହନ୍ତା
ମୁଂହି ତାହା ବର୍ଣ୍ଣିବାକୁ କିସ ଯେ ଲେଖନ୍ତା ।
ଅସୁର ଦେଖନ୍ତେ ଯେ ନାରାୟଣ ବିରଞ୍ଚି
ଏକ ଶରୀର ଶୂନ୍ୟ ଭୁବନଯାକ ସଞ୍ଚି ।
ଦେଖିଣ ପ୍ରଲମ୍ବ ଦାନବ ମହାବଳ
କଲ୍ୟାଣ ବାଞ୍ଛାଦେବ କରନ୍ତ ବ୍ରହ୍ମକୁଣ୍ଡଳୀ ।
କରତଳ କଲ୍ୟାଣ କରନ୍ତ ବ୍ରହ୍ମବାଣୀ
ମାଗରେ ବର ବୋଲି ପିତାମହ ସମ୍ଭାଷ । ୨୧୦ ।

ମହିଷା ବୋଇଲା ଦେବ ଦେବୁ ଯେବେ ବର
ଯୁଗାନ୍ତେକ ପୁରୁଷଟି ସାକ୍ଷ୍ୟ ମୋହୋର ।
ଯମ ପବନ ଅଗ୍ନି ଜଳ ଶୂନ୍ୟ
ଏମାନେ ସାକ୍ଷୀଟି ହୁଅ ଯେ ବଚନ ।
ବର ମାଗ ବର ମାଗ ବୋଲି ପିତାମହ ବୋଲି
ସମାସ୍ୟା ମୋହୋର ଯେ ତୋତେ ହାଦେ କଲି ।
ମହିଷା ବୋଇଲା ଦେବ ଦୃଢ଼ ଯେବେ ତୋର ବର
ଘୃଣ ଯୁଗେଂ ମୁ ଯେ ହୋଇବ ଅମର ।
ଅନେକ ମତେ ମୁ ତୋହୋର ଚରଣେ ସେବି
ପ୍ରଳୟକାଳ ଯାଏ ମୁ ହୋଇବ ନିର୍ଜ୍ଜୀବୀ ।

ଯମର କାଳଦଣ୍ଡେ ମୁ ନୋହିବ କ୍ଷଏ
ନାନା ରୋଗମାନ ନପୀଡ଼ିବେ ମୋର କାଏ ।
ଶରୀର ବଜ୍ର ଯେ ହୋଇଥିବ ମୋହୋର
ଅଙ୍ଗେଣ ଘାତ ଯେ ନୋହିବ ନାନା ଶର ।
ଦେବ ଶସ୍ତ୍ରମାନ ସହିବ ମୋର ଅଙ୍ଗ ।
ପର୍ବତ ପଡ଼ି ଅଙ୍ଗେ ହୋଇବାକ ଭଙ୍ଗ ।
ଅଗ୍ନିରେ ପୋଡ଼ିଲେ ମୁହିଂ ନ ପୋଡ଼ିବି
ଜଳେଣ ପଡ଼ିଲେ ମୁହିଂ ନ ବୁଡ଼ିବି ।

ଋଷିଙ୍କର ଶାପ ମୋତେ ନ ପଡ଼ିବ ବାଧା
ତପୀଙ୍କର ସମାନ୍ୟେ ହୋଇବି ମୁହିଂ ସିଦ୍ଧ୍ୟା ।୨୨୦।
ଦେବଲୋକ ନାଗଲୋକ ନରଲୋକ ସହିତେ
ଯକ୍ଷ କିନର ଦାନବ ନ ଅଣ୍ଟିବେ ମୋତେ ।
ଇନ୍ଦ୍ର ରୁଦ୍ର ବରୁଣ ଯମ ସୂର୍ଯ୍ୟ
ତ୍ରୈଲୋକ୍ୟ ବକାଶିବ ଏ ମୋହୋର ତେଜ ।
ଉଲୁକ ବିଦ୍ୟାରେ ମୁଂ ଅଦୃଶ୍ୟ ହୋଇବି
ଯେଉଂରୂପ ବାଞ୍ଛା ମୁଂ ସେ ରୂପ ଧରିବି ।
ଦେବତାଏ ନ ରହିବେ ଏ ମୋହୋର ଉତରେ
ପବନ ଅଗ୍ନିଂ ନ ପଶିବ ମୋହୋର ପୁରେ ।
ଶ୍ୟନ୍ରେ ନ ପଡ଼ିବ ମୋର କାଳ କାମନିଦ୍ରା
ଅସାଧନେ ସାଧିବି ମୁଂ ଚଉଷଠି ମୁଦ୍ରା ।
କାଳ ଗରଳ ମୋତେ ନ ଲାଗିବ ବିଷ
ଦିବ୍ୟ ଅବଲୋକନେ ହୋଇବ ମୋତେ ଦୃଶ ।
ତ୍ରୈଲୋକ୍ୟର ମଧ୍ୟେଂ ମୁ ଏକା ହୋଇବି ରାଜା
ଋଷି ବିପ୍ର ତପୋଧନ କରିବେ ମୋତେ ପୂଜା ।
ସ୍ୱାମୀ ବ୍ରହ୍ମା ବିଷ୍ଣୁ ମହେଶ୍ୱର ସହିତେ
ସମରେ ସମାନ୍ୟ ନୋହିବେ ଜାଣ ମୋତେ ।
ଯାବତ ଚନ୍ଦ୍ର ଦିବାକର ଆଦି କରି
ଜୀବିତ ସମରେ ଜିଣିବି ସର୍ବ୍ବଅରି ।
ସ୍ୱାମୀ ଶବଦରେ ଶୁଣିଲି କୃଷ୍ଣଭଏ ବୋଲି
ତାହାର ଭଏ ମୁଂ ତପ ଆଚରିଲି ।୨୩୦।
ନିଶ୍ଚଏ ପ୍ରସନ ଯେବେ ହୋଇଲୁ ତୁ ମୋତେ
ମୁହିଂ ବଧ ନୋହିବି ନାରାୟଣର ହସ୍ତେ ।
ବିଷ୍ଣୁର ଚକ୍ରେ ମୁଂ ନୋହିବଇ କ୍ଷଏ
କୃଷ୍ଣଙ୍କୁ ଜିଣିଲେ ମୋର ସିଦ୍ଧହୋଉ କାଏ ।
ଆବର ବର ଯେ ମାଗଇ ତୋତେ ସାଧ୍ୟ
ପୁରୁଷର ହସ୍ତେ ମୁଂ ଯେ ନୋହିବଇ ବଧ୍ୟ ।
ପିତା ବୋଇଲା ଯାହା ମାଗିଲୁ ମୋତେ ବର
ସମସ୍ତ ସିଧ୍ୟ ହୋଉ ଯେ ତୋହୋର ।

ବ୍ରହ୍ମା ବୋଇଲେ ମୁଂ ଯେତେ କାଳ ବ୍ରତଥିବ ଭଲେ
ତେତେ କାଳ ପର୍ଯ୍ୟନ୍ତେ ତୋହୋର ବଳ ଥାଉ ତୁଲେ ।
ମଏଂଷାଂର ବର ମାଗନ୍ତେ ଆଦତ୍ତ ଅସ୍ତ ଗଲା
ଯଗ୍ରୋବନ୍ତୀ ପୁରେ ଯାଇଂ ବ୍ରହ୍ମା ବଜେ କଲା ।
ବର ପାଇ ମଏଷାଂସୁର ହୋଇଲାକ ରାଏ
ସମ୍ଭବ କର ସେ କଟକେ ଭୁଥାଏ ।
କେନାବଳୀ କର ରଞ୍ଚିଲାକ ଭୁବନ
ବାରସ୍ୱର୍ଗ ଭୁବନ ତନ୍ହାଂକ ନୋହଇ ସମାନ ।
ଅଲୋକିତ ବର ଶୁଣିକର ସକଳ ଅସୁର ରାଜା
ଅନେକ ଅସୁର ଆସି କରନ୍ତି ପାଦ ପୂଜା ।

## ମହିଷାସୁର ଦିଗ୍ବିଜୟ

**ମଏ ଦାନବର** ପୁତ୍ର କାନ୍ତମାଳା
ସେ ଆସି ଦର୍ଶନ କଲା ମହାବଳା । ୨୪୦ ।
ବଜ୍ରାଙ୍ଗ ଦଇତର ସୁତ ଗ୍ରମର ବେଲ୍ଲାଲ
ସେ ଆସି ଦର୍ଶନ କଲାକ ମହୀପାଳ ।
କାନ୍ତମାଳା ଦାନେବ ଗ୍ରମର ବେମାଳ ବେନି
ଏହାଙ୍କର ତୁଲେ ପ୍ରବେଶ ସଇନି ।
ବଲଙ୍କ ଦେଶର ସେ ଠାକୁର ଅଟଇ
ମଏଂଷାର ପୁରେ ଆସି ଶରଣ ପଶଇ ।
ମାଧୁର୍ଯ୍ୟ ଦେଶର ଅସୁର ହ୍ୱରଣାକ୍ଷ
ସେ ଅଇଲା ବଳ ଘେନିଣ ନବଲକ୍ଷ ।
ମୁଖାଏକ ଦେଶର ରାଜା ଧୂମ୍ରଲୋଚନ ।
ସେ ଆସି ଦର୍ଶନ କଲା ସାତ କ୍ଷୋଉଣି ଘେନି ସନ୍ୟ ।
ଅଜାନ ଦେଶର ରାଜା ଚନ୍ଦ୍ର ଯେ ନଉମି
ବେନି ସାଗର ଯୋଧା ଘେନି ଦର୍ଶନ କଲାକ ଉଭମି ।
ଏତେକ ସନ୍ୟ ଘେନି ମାହେଶ୍ୱରୀ ରାଜ୍ୟେ
ସିଂଘଳଦୀପ ମଧ୍ୟେଂ କରଇ ଦଗବିଜେ ।
ସିଂଘଳ ଦ୍ୱୀପରେ ଯେତେ ରାଜାଗଣମାନେ
ସବୁନ୍ତ ଜିଣିଲା ସେ ଅସୁର ଯାତୁଧାନେ ।

ମହା ସମ୍ପଦ ରାଜ୍ୟ ଯେ କେନାବଳୀ ନଗରୀ
ବଡ଼ାଇ ସନ୍ତରେ ତାହାଂ ମହିଷା ରାଜ୍ୟ କରି ।
ଚାରିଲକ୍ଷ ଯୋଜନ ଯେ ସିଂହଳ ଦ୍ୱୀପ ସ୍ଥଳୀ
ତେବନ ଲକ୍ଷ ରାକ୍ଷସ ବସଇ ଚାରି ସହସ୍ର ଅଙ୍ଗୁଳି । ୧୫୦ ।

ଅନେକ ଅଛନ୍ତି ରାଜା ମହା ବଳବନ୍ତ
ମହିଂଷାର ତୁଲେ କେହି କେହି ନୋହିବ ଶାସ୍ତ୍ର ଧରନ୍ତା ।
ଆହେ କୁରାଞ୍ଚେକ ବୋଲି ଏକ ରାଜ୍ୟ ଅଛି
ତାହାଂର ନୃପତି ଯେ ଅଟଇ ତାରାକ୍ଷୀ ।
ବଢଶ ସାଗର ଯେ ଅଟଇ ସଇନ
ବଡ଼ ବଳବନ୍ତ ସମାନ୍ୟ ନାହିଁ ମୋଦନ ।
କୁରାଞ୍ଚେକ ନଗ୍ରିକ ବଟେ କଲା ମହିଷା
ସୈନ୍ୟକ ନାସିଲେ କେହି ନକଲେ ଭରସା ।
ସ୍ୱାଧବୀ ନାମେଣ ନଦୀ ଉତ୍ତର କୂଳେ
ନବ ଯୋଜନ ମାଡ଼ି ଯେ ରହିଲାକ ବଳେ ।
ବାଦ୍ୟ ନାଦ ଶବଦେ ଗଗନ ଉଛୁଳଇ
ମୁଖରବ ଶବଦେ କୁରୁମ ଟଳଇ ।
ରାଜାର ଅଗ୍ରତେ ଜଣାନ୍ତି ମୁନେହିଂ
ତୋହୋର ପୁରକୁ ଦେବ ମହିଷାସୁର ବାହି ।
ବ୍ରହ୍ମାର ବରେ ଦାନେବ ମହାବଳୀ
ସକଳ ନୃପତିଙ୍କ ଦେବ ଜିଣିଲି ମହାବଳୀ ।
ସିଂହଳ ଦ୍ୱୀପରେ ଯେତେକ ମହୀପତି
ମହିଂଷାକୁ ସମସ୍ତେ ଖଟିଲେ ବଶ୍ୟାବୃତ୍ତି ।
ଶୁଣିଣ କୋପ ଯେ କଲା ଯେ ତାରାକ୍ଷୀ
କେବଣ ଦର୍ପରେ ମହିଂଷାସୁର ଆସୁଅଛି । ୧୬୦ ।

କହୁଂ କହୁଂ ନରେନ୍ଦ୍ର କୋପେଣ ପ୍ରଚଣ୍ଡ
ବୋଇଲାରେ ସେହିକ୍ଷଣି ସାଜ ମୋର ଦଣ୍ଡ ।
ନୃପତି ବଚନେ ସମସ୍ତେ ଦଣ୍ଡ ସାଜି
ଅମାପତି ସୈନ୍ୟ ସମୁଦ୍ର ପ୍ରାଏ ଗଜ ।

ବିଜଏ ଦାନବ ଯେ ଶାର୍ଦ୍ଦୁଳର ପିଠି
ଚୁଳେଣ ସମର ଯେ ସେନା ପାଞ୍ଚକୋଟି ।

ପାଞ୍ଚ କୋଟି ଯୋଦ୍ଧା ଯେ ଶାର୍ଦ୍ଦୁଳ ବାହାନ
ସମସ୍ତେହେଁ ଦିଶନ୍ତି କୁବେର ସମାନ ।
ତର୍ଜନ୍ତି ଗର୍ଜନ୍ତି ଚଳାବନ୍ତି ଥାଠ
ଉଭଏ ବଳ ସଇନ ହୋଇଲେ ଯାକ ଭେଟ ।
ଦେଖଇ ତାରାକ୍ଷୀ ମହିଷାସୁର ବଳ
ସମୁଦ୍ର ପ୍ରାଏକ ସେ ଦିଶନ୍ତି ଉଚ୍ଛାଳ ।
ପଞ୍ଚ ମର୍ଦ୍ଦୁତ ଯୋଦ୍ଧା ତୁଲେଣ ଯେ ସେନା
ଏକ ମୁଖ ହୋଇ ଯେ ଉଠିଲେ ସଇନ ।
ମହାବଳବନ୍ତ ଯନ୍ତୁଂ ପ୍ରଭଗ୍ୟାଂ ଗଳଗାଜି ।
ତାରାକ୍ଷୀର ବଳ ପଳାଇଲେ ଭାଜି ।
କାନ୍ତମାଳା ଦାନେବ ବଳକୁ ବଜ୍ରଦଣ୍ଡେ ହାଣି
କଦଳୀବନ ଯେସନେ ମତ୍ତନାଗ ଜିଣି ।
ଅନେକ ସନ୍ୟ ଯେ ପଶିଲେ ମହାଯୋଦ୍ଧ
ବେଢିଲ ଦୁରନ୍ତେକ ବଳ ପବନ ନିରୋଧ । ୧୭୦ ।
ତାରାକ୍ଷୀ ଦେଖନ୍ତେ ପଡ଼ିଲେ ବହୁତ ଥାଠ
ଲକ୍ଷେକ ଯୋଦ୍ଧା ସେନ ତୁଲେ ରହିଲ ମୁରାଠ ।
ପାଞ୍ଚ ସାଗର ସନ୍ୟ ଯେ ତାରାକ୍ଷୀର ଥିଲ
ଅସୁର ବଳ ସଇନ ଯେ ସମସ୍ତ ଭାଙ୍ଗିଲ ।
ଶାର୍ଦ୍ଦୁଳମାନ ଯେ ସେ ସେନଲେ ଛଡ଼ାଇ
ମହିଷାର ଯୋଦ୍ଧାଏ ଚଢିଲେ ବେଗେ ଧାଇଂ ।
ସନ୍ୟ ପଡ଼ନ୍ତେଣ ଦେଖିଲ ତାରାକ୍ଷୀ ।
ଜୀବନ ଉପେକ୍ଷି ପଶିଲ ରଣେ ଧାସି ।
ଲକ୍ଷେକ ଯୋଦ୍ଧା ସେନ ଏକ ମୁଖ ହୋଇ
ମହିଷାର ଥାଠେ ପଶିଲେ ବେଗେ ଧାଇଂ ।
ଆରେ ଆରେ ରହ ରହ ବୋଲି ସେ ଉଠିଲ କାନ୍ତମାଳା
ବଜ୍ର ମୁଦ୍ଗର ସେନଣ ମତ୍ତଭୋଳା ।
ତାରାକ୍ଷୀ ଯୋଦ୍ଧାର ଉପରେଣ ପିଟି
ଏକା ପ୍ରହାରକେ ସେ ବାଏ ପଡ଼ନ୍ତି କୋଟି ।
ଲକ୍ଷେକ ଯୋଦ୍ଧାଙ୍କୁ ଗ୍ରାସ ଯୋଦ୍ଧାଏ ଜିଣି
ନିଦ୍ରାଗତ ଶୟନ ଜାଣି ଶୁତିଲେ ଧରଣୀ ।

ଅସାଷ୍ଟମ ହୋଇଂ ସେ ପଡ଼ିଲେ ତାମ୍ରାକ୍ଷୀବଳ
କୋଣ୍ଡେକ ଘେନଣ ସେ ଉଠିଲେ ମହୀପାଳ ।
ରାଜାକଇ ଦେଖିଣ ସେ ଉଠିଲେ କାନ୍ତମାଳା
ବଜ୍ରେଣ ପ୍ରହାର କଲା ସେ ଅସୁର ଅନର୍ଗଳା । ୬୮୦ ।
ତାମ୍ରାକ୍ଷୀ ନୃପତ ଯେ ମୁଦ୍ଗରେକ ଘେନ ପିଟି
ତାମ୍ରାକ୍ଷୀର ପ୍ରହାରେ କାନ୍ତମାଳା ପଡ଼ଇ ଲେଟି ।
ରଣ ଭଙ୍ଗ ହୋଇଲା ଯହୁଂ ପଡ଼ିଲା କାନ୍ତମାଳା
ରଥ ଆରୋହ ଧାଇଂଲା ଗ୍ରମର ବେମାଳା ।
ବଜେ କର୍ଣ୍ଣ କୁଠାର ଘେନଣ ଆୟୁଧ
ଏକ ଶରେଣ ତାରାକ୍ଷୀ ଅନେକ କଲା ଯୁଧ୍ୟ ।
ଅନେକ ନାରାଯ ଯେ ଗ୍ରମର ବେମାଳ ପିଟଇ
ତାରାକ୍ଷୀର ଉପରେ ପଡ଼ି ସେ ଗୁଣ୍ଡା ଉଠଇ ।
ବଜେ କର୍ଣ୍ଣ କୋଠାର ଯେ ବଉଁର ଦେଲା
ମହିଷାର ହସ୍ତରୁ ଗ୍ରମର ବେମାଳ ଆଣିଲା ।
ତାରାକ୍ଷୀର ସମାନ୍ୟେ ପୃଥିବୀରେ ନାହିଂ ଯୋଧ
ସେ ବ୍ରହ୍ମଶର ନିବାରବାକୁ ନାହିଂ ବୁଧ ।
ସେ ବ୍ରହ୍ମଶର ଘେନ ଗ୍ରମର ବେମାଳ ହାଣି
ଏକ ପ୍ରହାରକେ ଛିଡ଼ିଲା ତାର କପାଳ ।
ମୁଣ୍ଡା ବୃକ୍ଷ ପ୍ରାଏ ତାମ୍ରାକ୍ଷୀ ପଡ଼ଇ ତଳ
ପୁଣ ପ୍ରହାରଲେ ଦଇତ କରେ ତୋଳ ।
ବଜେ କର୍ଣ୍ଣ କୁଠାର ପଡ଼ି ହୋଏ ବେନ ଖଣ୍ଡ
ସମୁଦ୍ର ଭିତରେ ଯାଇ ପଡ଼ିଲା ତାର ମୁଣ୍ଡ । ୬୯୦ ।
ଅନେକ ଧନରତ୍ନ ଥିଲା କୁରାଞ୍ଚଳ ନଗ୍ରି
ମହିଷାସୁର ସଇନ ତାହା ସୁଦ୍ଧେଣ ଜୁର କରି ।
ଅନେକ ଦେଶର ଯେ ରାଜାମାନେ ଥିଲେ
ତାରାକ୍ଷୀର ଅବସ୍ଥା ଦେଖି ସମସ୍ତେ ଭଏ କଲେ ।
ଅନେକ ଧନ ରତ୍ନ ଘେନଣ ସଇନ
ସିଂଘଳ ଦେଶର ରାଏ ଆଣି କରନ୍ତି ଦଇନ ।
ଅନେକ ସନ୍ୟବଳ କଳଣା ନଯାଇ
ସେହୁ ବଳ ଘେନ ମହିଷା ଦର୍ପିଷ୍ଟ ବ୍ରହ୍ମାଣ୍ଡ ପୁରକୁ ବାହୁ ।

ସିଂଘଳ ଦ୍ୱୀପରେ ଯେ ଗୃଧ୍ରଲକ୍ଷ ରାଏ
ସମସ୍ତେହେଁ ଖଟିଲେ ସେ ମହିଂଷାସୁର ପାଏ ।
ଦେଖିତ ଅସଙ୍ଖ ସେ ମହିଷାସୁରର ମହିମା
ଯାହାକୁ ସଷ୍ଟିତ କଲେ ବେଦପତି ବ୍ରହ୍ମା ।
ଏକାଦଶ ଯୋଜନ ତାର କଟକ ସ୍ଥଳୀ
ପଞ୍ଚାଶ ସାଗର ସନ୍ୟ ଏକୁ ଏକ ବଳୀ ।
ବଜ୍ର ସମାନ୍ୟେ ସେ ତାହାର ନିଜ କାଏ
ବ୍ରହ୍ମାର ବରେଣ ଯମ ଦଣ୍ଡେ ଅଭଏ ।
ତାହାର ରାଜ୍ୟରେ ନପଶଇ କାଳଦଣ୍ଡ
ମହା ମହା ଯୋଧ୍ୟାଏ ଏକୁ ଏକ ପ୍ରଚଣ୍ଡ ।
ଆଦିତ୍ୟ ତହିଂ ସେ ନଲାଗଇ ଡରେ
ପବନ ନପଶଇ ସେ ଜେନାବଳୀ ନଗ୍ରରେ । ୩୦୦ ।

ଯମଦଣ୍ଡ ଯହିଂ ନ ପଶିଲା କାଳି
ଅନର୍ଗଳ ଦାନବେ ଏକ ଏକ ଅର୍ଗଳ ।

## ମେରୁଶୂଳ ସହିତ ଯୁଦ୍ଧ ଓ ପରାଜୟ

**ଆଶିନ୍ୟ** ଶୁକ୍ଳ ଅଷ୍ଟମୀର ଦିନ
ଅର୍କବାର ମୂଳାନକ୍ଷତ୍ର ବିଦ୍ୟମାନ ।
ଗ୍ରହନାମେ କରଣ ଅତି ଗଣ୍ଡ ନାମେ ଯୋଗ
ସେଦିନ ମହିଷାସୁର ଦିଗ୍‌ବିଜେ ମେରୁ ସ୍ୱର୍ଗ ।
ମେରୁର ତଳେ ବଜ୍ର ବୋଲିଣ ରାଜ୍ୟ
ତହିଂର ନୃପତି ମେରୁଶୂଳ ମହାରାଜ ।
ସେ ରାଜାର ତୁଲେ ସେ ଅନେକ କଲ ଦ୍ୱନ୍ଦ
ଶତେକ ଦିନ ପରିଯନ୍ତେ ଉଭୟ ବଳ ବିବାଦ ।
ଅନେକ ସନ୍ୟ ଥାଠ ପଡିଲେ ଉଭୟ ବଳ
ରୋଧିର ନଦୀ ଯେ ବହିଲାକ ଉଛୋଳ ।
ପୃଥ୍ୱୀ ତଳ ତଳ ହୋଇଲା ଦୁହିଂଙ୍କର ବିବାଦେ
ଗିରିବରମାନେ ସ୍ୱେରୁ ଗୁଡ଼ିଲେ ମହାନାଦେ ।
କାନ୍ତିମାଳା ସ୍ୱମରବେମାଳ ମହିଂଷାସୁର ସେନାମତି
ଦେବଙ୍କୁ ଦୁଲଭ ଯେ ଏହାଙ୍କର କୀରତି ।

ମେରୁଶୂଳର ସନ୍ୟ ମନ୍ଥିଲେ ବେନ୍ନ ବୀରେ
ଅନେକ ସନ୍ୟେ ଯେ ପଡ଼ିଲେ ସମରେ ।
ଦେଖିଣ ଆଶ୍ରିଯ ଯେ ହୋଇଲେ ଦେବପୁରେ
ଧନୀ ଧନୀ ମହିମାରେ ଅଟଇ ପାମରେ । ୩୧୦ ।
ଧାମଇ ମେରୁଶୂଳ କରେଣ ଘେନ ଗଦା
ମହେଷାସୁର ସନ୍ୟ ମାରିଣ କଲ୍ଲ ଘଦା ।
ବଳ ଭାଗନ୍ତେ ସେ ଭାଙ୍ଗିଲା କାନ୍ତମାଳା
ସନ୍ୟକୁ ସମାର୍ଜଇ କାହିକ ଗୁମ୍ଫେ ପଳା ।
ରହିଣ ସମର ଦେଖସି ଆମ୍ଭର
ସଇନ ସମାର୍ଜି ସେ ଛଟିଲେ ବେନ ବୀର ।
ତୁଲେଣ ସନ୍ୟ ଯେ ବଡ଼ଶ ଲକ୍ଷ୍ୟ ବଳ
ସମରେ ରହିଅଛୁ ସେ ଦାନେବ ମେରୁଶୂଳ ।
ଆହୋ ପରକ୍ଷ ହେମବନ୍ତ ସେବ ସେ ପାଇଅଛୁ ବର
ଶ୍ୟଙ୍କର ବକ୍ର ସେ ଅଟଇ ଅମର ।
ଲୋଚନ ରୁଧିପା ବୋଲିଣ ବୀର ବେନ ।
ସିଂଘଳଦୀପ ରାଜାର ତୁଲେ ସାତ ମର୍ଭୁତ ସଇନ ।
ରୁଧିପା ଲୋଚନ ବେନ ସେନାପତ
ମେରୁଶୂଳ ଆଠ ସେ ଗ୍ରହିଲେ ସେ ଘାନ୍ତ ।
କୋପେଣ ମେରୁଶୂଳ ସେନାନ୍ତ ଘେନ ଉଠି
ଲୋଚନ ଉପରେ ବଜ୍ର କୋଠାର ଘେନ ପିଟି ।
ଘାଏଣ ଲୋଚନ ଯେ ପଡ଼ିଲାକ ଢଳି
ପୁଣ ପ୍ରହାର ସେ କଲା ଶୂଳ ତୋଳି ।
ମେରୁଶୂଳ ପ୍ରହାରନ୍ତେ ଲୋଚନସୁର ଗୁଣ୍ଡା
ରଣେ ବହିଡ଼ଇ ସେ ଛଟଣୀ ବାଟଖଣ୍ଡା । ୩୨୦ ।
ଲୋଚନସୁର ଗ୍ରହିଡ ହଟଇ ମେରୁଶୂଳ
ରୁଧିପା ରାଜାକୁ ନେଇ ପିଟିଲା ଲୋହ କୋଦାଳ ।
କୋଦାଳ ଘାତେ ଯେ ପଡ଼ଇ ରୁଧିପା
ବେନ ଶାଖା ପଡ଼ନ୍ତେ କାନ୍ତମାଳା ଏକା ।
ତାହା ଦେଖି ଧାଇଲେ ଯେ ଘୁମର ବେମାଳ
ରୁଧିରେ କର୍ଦ୍ଦନ କରି ସେ ହଟଇ ମେରୁଶୂଳ ।

ଲକ୍ଷେ ପୁର କଣ୍ଡ ବେଢିଲେ ବେମାଳକୁ
ଅନେକ ସହସ୍ର ପ୍ରହାର କଲେ ଗ୍ଭମର ବେମାଳକୁ ।
ସନ୍ୟ ଭଗ୍ନ ଦେଖି ସେ ଉଠଇ ମହିଂଷା
ହାକ ଦଅଇ କମ୍ପୁଚେ ଏକେଡ଼କ ଭରସା ।
ମହିଷାର ଉଠନ୍ତେ ମେରୁଶୃଲ ଦୁଇ ଖଗ
ଗ୍ଭମର ବେମାଳ ଦୁଇ ମିଳିଲେ ଆସି ଆଗ ।
ଗହନ ସମରେ ସେ ଆଦଭ୍ୟ ଅସ୍ତ୍ରଗଲ
ଦଣ୍ଡ ଘେନି ମହିଷା ସିଂଘଲ ଘାପେ ବଜେକଲ ।
ମେରୁଶୃଲ ରହିଂ ସେ ବଜ୍ରଗିରି ଦେଶେ
ରାଜ୍ୟରେ ଥଣଇ ମଏଷାସୁର ବୀର ସେ ।
ଆରେକ ବୀର ଯେ ସେ ଖାଲଇ ବୀରପଣ
ପିତାର ବର ମୋତେ ହୋଇଲ ଅମାନ ।

## ଧୂମଲୋଚନକୁ ସାରଥିପଣେ ଶାଢ଼ୀଦାନ

**ଆହେ। ପରିକ୍ଷ** ରାଜ କୃଷ୍ଣ ଚଉଠିର ଦନ ।
ପଣ୍ଡିତ ବାର ନକ୍ଷତ୍ର ହସ୍ତକ ଅନ୍ୟ
ନବ ନାମେ କରଣ ଆୟୁଷ ନାମେ ଯୋଗ ।
ଯେଦନ ମହିଷାସୁର ବଜେକଲ ସ୍ୱର୍ଗ
ଯାନ୍ତେଣ ଭେଟିଲ କରଞ୍ଜ ନାମେ ଦେଶ ।
ଦେଖଇ ମହିଷା ଯେ ସେ ସନ୍ଥିକ ଦେଶ ।
ସୁବର୍ଣ୍ଣ କଳସ ପାତାଙ୍ଗେ ଉଡ଼ନ୍ତ
ସମସ୍ତ ସୁବର୍ଣ୍ଣମଏ ମଣ୍ଡପ ଜଗତ ।
ସମଦଣ୍ଡ ସଇନ ଦୁନ୍ଦୁଭି ଶବଦ ବାଜେ
ସନ୍ୟ ଘେନଣ ମହିଷା ଚଳଇ ଦଗବିଜେ ।
ଉଦେସ ମନ୍ତ୍ରୀ କହିଲ ନୃପତି ଧୂମଖେତ
ତୋହର ରାଜ୍ୟରେ ବଜେକଲ କପିଳ ସିଂଘର ସୁତ !
ଧୂମଖେତୁ ପଗ୍ଭରଇ କସ ଅର୍ଥେ ଆସଇ
ପ୍ରୀତି କା ବଗ୍ରହଣ ମୋହୋର ରାଜ୍ୟେ ପଶଇ ।
ରାଜାର ଆଗେ କହିଲ ମନ୍ତ୍ରୀ ଉଦେସ
ତୋହୋର ସୋଦର ଅଟଇ ଉପର ବଂଶ ।

ଅସୁର ବଂଶ ଯେ କଲ୍ପାସୁର ରଜା
ବଶିଷ୍ଠଙ୍କର ଶାପେ ଯେ ହୋଇଲା ଦନୁଜା ।
କଲ୍ପାସୁର ରାଜା ଯେ ହୋଇଲା ରାକ୍ଷସ
ତାହାର ନନ୍ଦନ ଯେ ହୋଇଲା ମନୁଦକ୍ଷ ।
ମନୁର ପୁତ୍ର ଯେ ହୋଇଲା ରକ୍ଷ ଭକ୍ଷ
ହେତ ପ୍ରହେତ ବୋଲି କର ଏହାଙ୍କର ବେନ ବସ୍ତୁ । ୩୪୦ ।

ଏହାଙ୍କର ପୁତ୍ର ଯେ ହୋଇଲା କାଳାନଳ
ମାଳି ସୁମାଳି ମାଲ୍ୟବନ୍ତ ଧନବାଳ ।
ମାଲ୍ୟବନ୍ତର ପୁତ୍ର ମଦନ ମହାଦେବ
ତାହାର ନନ୍ଦନ ମାତାଙ୍ଗ ସଦାଶିବ ।
ମାଲ୍ୟବନ୍ତ ଥିଲା ଯେ ଲଙ୍କାପୁର ଗଡ଼େ
କରନ୍ତି ରାଜପ ରହିଲା ସେ ମାଧବର ଡରେ ।
ମାତାଙ୍ଗର ପୁତ୍ର ଯେ ବିଲୋଚନ
ବିରୋଚନର ପୁତ୍ର ଯେ ହୋଅଇ ହିରଣ୍ୟ ।
ହିରନ୍ୟର ପୁତ୍ର ଯେ ବଇଲୋଚନ
ବଇଲୋଚନର ପୁତ୍ର ବଳୀ ଉତପନ ।
ବଳୀର ପୁତ୍ର ମଦ ଲୋଚନ
ମଦଲୋଚନ ପୁତ୍ର ଯେ କାଳ ବିମୋଚନ ।
କାଳ ବିମୋଚନର ପୁତ୍ର ଧୂମଖେତ
ଧୂମକେତୁର ନନ୍ଦନ ଧୂମଲୋଚନ ଜାତ ।
ମନ୍ତ୍ରୀ କହିଲା ଏସନେକ ବୃତ୍ତାନ୍ତ
ତାହାର ତୋହୋର ଏକ ବଂଶେ ଜାତ ।
ମନ୍ତ୍ରୀର ବଚନେ ସାନନ୍ଦ ଧୂମଖେତା
ଧୂମଲୋଚନର ନାମେ ହକାରିଲା ତାହାର ସୁତା ।
ପାଶଦଣ୍ଡମାନନ୍ତ ଘେନଣ ବାବୁ ଯା ଯା
ମହିଷାସୁର ଦାନବଙ୍କୁ କର ଯାଇ ପୂଜା । ୩୫୦ ।

ପିତାର ବଚନେ ଯେ ଧୂମଲୋଚନ
ଅନେକ ରତ୍ନ ଘେନ ଦଣ୍ଡ ଯେ ବିମାନ ।
ବିଜଏ ମହିଷାସୁର ମେ କରନ୍ତି ରାପର କୂଳେ
ଧୂମଲୋଚନ ପ୍ରବେଶ ହୋଇଲା ପ୍ରାତକାଳେ ।

ଅନେକ ଦରଶନ ଯୋଗାଡ଼ ଯେ ଦେଖି
ମହିଷାସୁର ରାଜା କୋପ ଯେ ଉପେଖି ।
ରାଜାକୁ ବୁଝାଇ ମନ୍ତ୍ରୀ କାନ୍ତମାଳା
ଏ ସେ ଧୂମଲୋଚନ ଧୂମଖେଉର ବଳା ।
ତୋତେ ସେ ପ୍ରୀତି ଉପୁଜାଇବା ଅର୍ଥେ
ଦେଖା ଦରଶନ ଉପହାର ଘେନ ଭେଟଇ ତୋତେ ।
ସେ ଧନ ଦେଇ ତୋତେ ନୃପତି ବିନଏ
କରନ୍ତି ଯାପ ତୋତେ ସାଧ୍ୟ ହୋଇଲା ରାଏ ।
ଶୁଣିଣ ସଦଏ କଲା ମହିଷାସୁର କଉଣୋପ
ଦେଖିଣ ପ୍ରହସିତ ହୋଇଲାକ ନୃପ ।
ସ୍ମୁମୁରେ ଧୂମଲୋଚନ ପରଣାମି
ଦର୍ଶନେ ସିଦ୍ଧନାଥ ଉଦ୍ଧର ଦେବ ସ୍ୱାମୀ ।
ବିନୟ ଦେଖି ଯେ ସାନନ୍ଦ ହୋଏ ରାଏ
ଆସ ଆସ ତୁ ମୋର ପ୍ରାଣସଖାଏ ।
ଅନେକ ବିନୋଇ ଧୂମଲୋଚନ କରଇ ସେବା
ଆମ୍ଭର ଆସ୍ଥାନେ ଦେବ ବିଜଏ କରିବା । ୩୬୦ ।

ସମଦଣ୍ଡ ଘେନ ଯେ ମହିଷାସୁର ବୀର
ଆସନେ ବିଜେ କଲା ପ୍ରତାପ ଅସୁର ।
କାଳବିମୋଚନ ପୁତ୍ର ଧୂମଖେତ ରାଜନ
ମହିଷାସୁର ଅନେକ ପୂଜା ବିଧି ବିଧାନ ।
ରାଜ୍ୟରେ ଉଚ୍ଛବ କରାଇଲେ ରାଏ
ବଢ଼ାଇ ସମ୍ଭରେ ସେ କରଇ ବିଜଏ ।
କରନ୍ତି ଯାପେ ମହିଂଷାସୁର ପଞ୍ଚ ଦିବସ ରହି
ବଢ଼ାଇ ସମ୍ଭରେ ସେ କରଇ ମୁଣୋହିଂ ।
ବେନି ପଦ୍ମ ସେନାପତି ଦେଲାକ ସ୍ଥଇନ
ମହିଷାସୁର ଯେ ଧୂମଲୋଚନ ଘେନ ।
ଶ୍ରୀଭୁଜେ ମହାରାଜା ଆପଣେ ଦେଲା ଶାଢ଼ୀ
ଆଜନ୍ମିଂ ମୋହୋର ଅର୍ଥେ ଅଧିକାରୀ ।
ଅନେକ ସମ୍ଭବେ ଯେ ନିଶାଣ ବାଜେ
ବାହୁଡ଼ି ମହିଷାସୁର ସିଂହଳ ଯାପେ ବିଜେ ।

## ଚଣ୍ଡମୁଣ୍ଡସହ ମହିଷାସୁରର ଯୁଦ୍ଧ ଓ ପରାଜୟ

**ପୁଣି ସମୟକେ** ଘଲ୍ଲସ କଲା ଥାଠ ।
ଦଗେ ବଜେ କରଇ ଘେନାଣ ସମବ୍ୟଷ୍ଟ ।
କାର୍ତ୍ତିକ ଶୁକ୍ଳ ପଞ୍ଚମୀ ଚନ୍ଦ୍ରବାର
ରୋହିଣୀ ନକ୍ଷତ୍ର ଅଟଇ ସେ ଦିନର ।
ବାଣିଜ ନାମେ କରଣ ପ୍ରୀତି ନାମେ ଯୋଗ
ଦଣ୍ଡ ସାଜଇ ମହିଷା ସାନନ୍ଦ ଉଦବେଗ । ୩୭୦ ।
ବୀରତୂର ଘଣ୍ଟ ଡମକ ନିଶାଣ
ଚରଣ ରେଣୁ ଘାତେ ଅଦୃଶ୍ୟ ବିରଞ୍ଚି ନାରାୟଣ ।
ଆଶୀ ଖର୍ବ ଯୋଦ୍ଧା ସାତପଦ୍ମ ବଳ
ଯୋଧ୍ୟା ମାନଙ୍କର ବାହାନ ଶାର୍ଦ୍ଦୂଳ ।
ସମସ୍ତ ଯୋଧ୍ୟାଏ ଚଢ଼ିଣ ବାହାନ
କୋନ୍ତଖଡ଼ଗ ନାରାଯ ଛେଲ ଚକ୍ର ଶରମାନ ।
ଶକତି ପରଶ ଗଦା ତୀକ୍ଷ୍ମୁନା
ଏକକୁ ଆରେକ ନଯାନ୍ତ ଗଣନା ।
ବହୁତ ବଳ ଚଞ୍ଚଳ ଚଳନ୍ତେଣ ଥାଠ
ଆକାଶ କମ୍ପଇ ସେ କମ୍ପଇ ବଇକୁଣ୍ଠ ।
ଏସନେକ ସମ୍ପଦେ ଥାଠ ଯେ ଚଳିଣି
ସମୁଦ୍ର ଗର୍ଜନ ପ୍ରାଏକ ଶୁଭଇ ତୂଣ୍ଡର ବାଣୀ ।
ଦେବଙ୍କୁ ଦୁଲଭ ଯେ ମହିଷାସୁରର ମହିମା
ଯାହା ସେ ସଞ୍ଚିତ କଲାକ ବେଦପଢି ବ୍ରହ୍ମା ।
ବିରୋଚନ ବର ପ୍ରସାଦରୁ ବିଧାତା
ତେଣୁ ସେ ମହିଷାସୁର ଜଗତେ ଜଗଜିତା ।
ଭର୍ଜନ୍ତ ଗର୍ଜନ୍ତ ବାଜନ୍ତ ନିଶାଣ
କାର୍ତ୍ତିକ ପୌର୍ଣ୍ଣମୀଦିନ ମେଷାଂ କୁଶଳା ଦ୍ୱୀପକୁ କରଇପୟାଣ ।
ସିଙ୍ଗଳ ଦ୍ୱୀପରୁ ବାହାର ହୋଇଂ କରଞ୍ଚ ଦ୍ୱୀପେ ମିଳଇ
ନୀଳ ସମୋଦ୍ର ପ୍ରାନ୍ତେ ଦିଶନ୍ତ ରାକ୍ଷସଇ । ୩୮୦ ।
ଧାତାର ବଚନେ ସେ ହୁଅନ୍ତ ଶୂନ୍ୟଗାମୀ
ସମୋଦ୍ର ସହିତେ ଜିଣିଲେ କୁଶଦ୍ୱୀପ ସ୍ଥଳି ।
କୁଶ ଦ୍ୱୀପରେ ରାଜା ପ୍ରଚଣ୍ଡାସୁର ରାଏ
ଭସ୍ମ ଲେପନ ମଥାରେ ଜଟାଧରଏ ।

ଜଟା ବସନ ପଶୁହରଣ ଅଙ୍ଗେଣ ପବିତା
ଖଟ୍ୱାଙ୍ଗ ଡମ୍ବରୁ ତ୍ରିଶୂଳ କରେଣ ଶୋଭିତା ।
ଚଉଦ କୋଟି ସଇନ ତାହାର ସମସ୍ତେ ତପୋଧନ
ମୃତୁ ନ ଗଛନ୍ତି ସେ ନ ଦଶନ୍ତି ଫଜାବନୀ ।
ଗୃଳଶ ଲକ୍ଷ ଯୋଜନ ସେ ଦ୍ୱାପର ଆପ୍ୟେତନ
ଅଷ୍ଟାଦଶ ଜାତି ମୂଳେ ବସନ୍ତି ଅନେକ ଜନ ।
ଦଣ୍ଡ ସାଧି ଦେଇଂ ସେ ଖଟନ୍ତି ରାଜାକୁ
ସମସ୍ତେତହେଂ ଖଟନ୍ତି ସେ ପ୍ରଚଣ୍ଡାସୁରକୁ ।
ଶିବର ପ୍ରସାଦେ ସେ ଅଟଇ ମାହାରାଜା
ଈଶ୍ୱର ଦେବତାଙ୍କୁ ସେ ନିତ୍ୟେ କରଇ ପୂଜା ।
ଅନେକ ବୀରତୂର ଅନେକ ନିଶାଣ ବାଜେ
ବିଜସ୍ତେ ମଂସ୍ୟେଷାସୁର ପ୍ରଚଣ୍ଡ ସୁରରାଜ୍ୟେ ।
ରାଜାର ଅଗ୍ରତେ ସେ କହନ୍ତି ଚ୍ରରଗଣ
ସ୍ୱାମୀ ତୋହୋର ରାଜ୍ୟକୁ ମଂସ୍ୟେଷାସୁର କରଇ ପସ୍ଥାଣ ।
ବଡ଼ାଇ ପ୍ରତାପୀ ସେ ମଂଷାସୁର ରାଜା
ବ୍ରହ୍ମାର ବରେ ସେ ନ ଲେଖଇ କାହା ଦୂଯା । ୩୯୦ ।

ଅବ୍ୟକ୍ତ ନାରାୟେଣ ସେ କଇଛୁ ଜଗଯେଠି
ଏଇଲେକେ ବିଦିତ ତୋହୋର ନାମଗୋଟି ।
ସତ୍ୟଯୁଗ ଅନ୍ତେ ତୁ କଲୁ କର୍ମବଳେ
ତୋତେ ପରଥାଠ ହୋଇଲା ଏତେକାଳେ ।
ସମର କରିବା କି କରିବା ଦେବ ସନ୍ଧି
ତୁ ସର୍ବଙ୍କ ଧାର୍ମିକ ଜାଣୁ ସର୍ବ ବୁଧି ।

ଶିବର ପୁଜି ଦେବ ବହୁତ କାଳର ରାଏ
ସେ ବ୍ରହ୍ମାର ପୂଜି ସିନା ନିକଟେ ବରପାଏ ।
ମନ୍ତ୍ରୀର ନାମ ସେ ଶିବପାଳ ଅଟଇ
ସତ୍ୟ ଯୁଗେ ଯେ ପ୍ରଚଣ୍ଡସୁର ଖଟଇ ।
ମହିଂଷାସୁର ରହିଅଛୁ ନର୍ମଦା ନଦୀକୂଳେ
କରୁଣାକର ପର୍ବତ ଶିବବଟର ତଳେ ।
ରାଜାକଇ ବୁଝାବଇ ସେ ଶିବପାଳ ମନ୍ତ୍ରୀ
ମୁ ଶିବକ ସେ ମହିଷାସୁରକୁ ଜିବନ୍ତି ।

କସ ଅର୍ଥେ ଆଗମେ ସେ ଆମ୍ଭର ପୁରକୁ
ସଂକ୍ଷେପ କରିଦେବ ପୂଜିବା ତାହାକୁ ।
ପ୍ରୀତ ହୋଇଲେ ସେ ସନ୍ଧି ନ କରିବା
ଅଥବା କାର୍ଯ ହି ନଲଲେ ଯୁଦ୍ଧ କ କରିବା ।
ଆଗ୍ୟାଂ ଦେଲା ସେ ପ୍ରଚଣ୍ଡସୁର ରାଏ
ଅନେକ ଉପହାର ଯୋଗାଡ଼ ଘେନ ଆଏ । ୪୦୦ ।

ଶିବପାଳ ମନ୍ତ୍ରୀ ଚଳିଲା ଛଡ଼ ପାଏ
ଯାଇଂଣ ତୁରତେ ମହିଷାର ଥାଠରେ ସମ୍ଭାଏ ।
ଆଗିଆଣି ଥାଠରେ ଲୋଚନ ବେମାଲ ବେନ୍ନ
ତେତଶ ମର୍ଭ୍ଭ ତୁଲେ ଅଛଇ ସଇନ୍ନ ।
ଅନେକ ରତ୍ନ ଯେ ଆରମ୍ଭିତ କାଏ
ସମସ୍ତ ଯୋଧାଏ ଦଶନ୍ତ ଯମ ଦେବତାର ପ୍ରାଏ ।
ଉପହାର ଆଗମ ଦେଖି ଚ୍ଛମର ବେମାଲ ହି
ଶିବପାଳ ମନ୍ତ୍ରୀ ଯାଇଂ ଗ୍ରମୁରେ ମିଳଇ ।
ଚ୍ଛମର ବେମାଳ ପ୍ରୀତଯୋଗ ବେନି
ରାଜାର ଆଗେ ଯାଇଂ କହିଲେ ସଇନି ।
ସ୍ୱାମୀ ପ୍ରଚଣ୍ଡସୁରର ମୁ ପ୍ରୀତଭାବ ଅଛଇ
ମନ୍ତ୍ରୀର ବଚସ୍ସ ଦେଖି ମହିଷାସୁର ରୋମାଞ୍ଚଇ ।
ଚ୍ଛମର ବେମାଳ ଯେ କହିଲେ ମହିଷାକୁ
ସ୍ୱାମୀ ଶିବପାଳ ମନ୍ତ୍ରୀ ଦର୍ଶନ କରିବ ତୁମ୍ଭକୁ ।
ଅପାର କାଳର ସେ ମହା ବୈଷ୍ଣବୀ
ସତ୍ୟବନ୍ତ ପଣେ ସେ ରାଜା ମହେଶ୍ୱର ସେବୀ ।
ଗ୍ରମୁରେ ଜଣାଇ ଦର୍ଶନ କଲା ମନ୍ତ୍ରୀ
ଉପହାରମାନ ଥୋଇଲେ ଯୁଗତ ।

ମନ୍ତ୍ରୀ ବୋଇଲା ଦେବ ଶୁଣ ଦେବ ବଚନ ମୋହୋର
ପ୍ରଚଣ୍ଡସୁର ରାଜା ଯେ ପୀରତ ତୋହୋର । ୪୧୦ ।
ସେ ଶିବର ପୂଜ ତୁ ଅଟୁ ବ୍ରହ୍ମାର ନନ୍ଦନ
ତାହାରେ ତୋହୋରେ ସେ ଅନେକ ପ୍ରୀତମାନ ।
ମହିଷାସୁର ବୋଇଲା ଶୁଣ ମନ୍ତ୍ରୀବର
ରାଜାର ଆଗେ ଯାଇ ଜଣାଅ ତୋହୋର ।

ମୋହୋର ସେନାପତି ବୀର କାନ୍ତମାଳ
ସିଂହଳ ଦ୍ୱୀପରେ ସେ ଅଛଇ ମହୀପାଳ ।
ମୋତେ ଖଟିଲା ସେ ଧନ ଭଣ୍ଡାର ଯେନ
କରଞ୍ଜ ଦ୍ୱୀପର ରାଜା ଖଟିଲା ଆଠ ସନ୍ୟ ଯେନ ।
କୁଶଳ ଦ୍ୱୀପରେ ସେ ପ୍ରଚଣ୍ଡସୁର ରାଜା
ଚଣ୍ଡ ମୁଣ୍ଡ ବୋଲି ତାହାର ଆତ୍ମଜା ।
ତାହାର ମୋହୋର ଯେବେ ହୋଇଲା ଏକପ୍ରୀତି
ମୁକୁଳି ଦେଉ ସେ ଚଣ୍ଡ ମୁଣ୍ଡ ଦୁହନ୍ତ ।
ତାହାର ମୋହୋର ଥାଉ ପ୍ରୀତି ସଦା
ଯେମନ୍ତେ ଯୁଗତେ ସେ ହୋଅଇ ଅଭେଦା ।
ଅଥବା ନ ଦେବ ସେ ଚଣ୍ଡ ମୁଣ୍ଡନ୍ତ
ମୋହୋର ତୁଲେ ସେ ସମର କରିବ ନିର୍ଭାନ୍ତ ।
ମାରିବଇଁ ସମରେ କାଟିବଇଁ ମାସଂ
ଖାଇବ ସବୁକୁହିଂ ଉଜାଡ଼ିବ ଦେଶ ।
ଏସନ ପ୍ରତିଗ୍ୟାଂ କରି ସେ ଅଧର ଦନ୍ତ ଘୃପି
ଆକାଶ ମଣ୍ଡଳେ ତେଜ ତାହାର ବ୍ୟାପି । ୪୨୦ ।

ବେନ ନୟନୁ ଜାତ କି ଅନଳ ବହନ
ବ୍ରହ୍ମାଣ୍ଡ ଘୋଟିଲା ସେ ମହିଷାସୁରର କୋଧ ଯେନ ।
ବାହୁଡ଼ଇ ମନ୍ତ୍ରୀ ସେ ମହିଂଷାସୁରର ଆଗ୍ୟାଂ ପାଇଂ
ପ୍ରଚଣ୍ଡସୁର ଆଗେଂ କହିଲାକ ଯାଇଂ ।
ନିମିଷେକ ଜିଣିତ ପାରଇ ସମସ୍ତ ଦ୍ୱୀପ
ନିଷ୍ଟଏ ପ୍ରସନ ତାକୁ ହୋଇଲେ ବଧାତ ।
ମନ୍ତ୍ରୀ ବୋଇଲେ ବ୍ରହ୍ମାଣ୍ଡ ନ ସହଇ ମହିଷାସୁରର କୋଧ
ଅକାତ ଜନ ମନୁଷ୍ୟ ମହିଷି ସଂକାତ ସ୍ୱରୂପ ।
ବୋଇଲା ତାହାର ମୋହୋର ଯେବେ ହୋଇବାକ ପ୍ରୀତି
ମୋତେ ଦେଉ ତାହାର ଚଣ୍ଡ ମୁଣ୍ଡ ଦୁହନ୍ତ ।
ମୋହୋର ସେନାପତି ହୋଇଂଥିବେ ବେନ
ତାହାନ୍ତୁ ଘେନିଣ ମୁ ସାଧିବ ମେଦନ ।
ପ୍ରଚଂଡ଼ ସୁର ବୋଇଲା ଯେ ତାହାର ମୋହୋର ପୀରତି
ପୁଅନ୍ତ ଦେଇ ମୋହୋର କସ ଜୀବତି ।

ସନ୍ୟ ଦେବ ଅନେକ ଧନରତ୍ନ ଦେବ
ଯେତେବେଳେ ଯହିଂକ ଦେଖିବ ତହିଂକ ଦଣ୍ଡ ସାଜ ଚଳାବ ।
କହୁଂ କହୁଂ ରାଜାଏ ହୃଦଏ ବିକଳ
ନେତ୍ର ଲୋଚନୁ ରାଜାର ବହଇ ଅଶ୍ରୁଜଳ ।
ନସନ୍ତ ହୋଇଂ ଯେବେ ଦେବ ମୋହୋର ଆଜ୍ଞା
ମନ୍ତ୍ରୀକି ବୋଇଲା ମୋର ଦଣ୍ଡ ସାଜ ବେଗେ ଯାଅଯା ।

ରାଜାର ଆଗ୍ୟାଂ ପାଇ ଶୁଭିଲା ତୂର୍ଯ୍ୟ ଧ୍ୱନି
ସାଜିଲା ରୁଦ୍ରବଳ ଯେ ପ୍ରଚଣ୍ଡ ବହ୍ନି ।
ସନ୍ୟଙ୍କର ସବୁଙ୍କର ତ୍ରିଶୂଳ ଶକତି
ବାମକରେ ଡମରୁ ବାଜଇ ଧବଳ ମୂର୍ତ୍ତି ।
ଧବଳ ଶ୍ୱେତର ଏକ ଚରଣ ଚତୁର୍ଭୁଜା
ପୃଥ୍ୱୀରେ ବ୍ୟାପିଲେ ସମସ୍ତ ଯୋଧ୍ୟା ତେଜା ।
ଚଉଦ କୋଟି ଡମ୍ବରୁ ବାଜଇ ହମ୍ପାଳି
ଆକାଶ ମଧ୍ୟେ ଯେ ତିନପୁର ପାତାଳ ଉଚ୍ଛୁଳ ।
ବଇଲେ ବାଇଲେ ଚଢିଅଛନ୍ତି ସର୍ବାରେ
ବିଭୂତି ବିଲେପନ ହୋଇଂ ଅଛନ୍ତି ଶରୀରେ ।
ପ୍ରଚଣ୍ଡ ବଳୀୟାର ସେ ମହା ମହା ସେନା
ସମର ସନ୍ଥବେ ସେ ନଯାନ୍ତି ଗଣନା ।
ମହିଷାର ସଇନ ଦୁସ୍ତାସ୍ତୁ ସାଗର ଜାଣି
ଗଗନ ଉଚ୍ଛୁଳିଲା ସେ ମୁଖରବ ବାଣୀ ।
ଏ ବିଧି ଦେନ ବଳ ହୋଇଲା ଏକ ଭେଟ
ଲାଗିଲା ରଣରଙ୍ଗ ସିନ୍ଧୁ ନଦୀର ତଟ ।
ଆହୋ ପକ୍ଷୀଷ ବ୍ୟାଘ୍ରେକ ଚଢିଣ ବୀର ଚଣ୍ଡ ମୁଣ୍ଡ
କରେଣ କୋଟିଏକବଳ ଘେନଣ ମହାଦଂଡ଼ ।
ପ୍ରତଗ୍ୟାଂ କରି ଯାଇଂ ହୋଇଲା ପିତାର ଅଗ୍ରତେ
ତୋହୋର କସ ବନା ଆମ୍ଭେ ଦେଖନ୍ତେ ।

ପ୍ରଚଂଡ଼ସୁର ପୁଜନ୍ତି ବସାଇଂ ପୁଚ୍ଛଇ
ମହିଷାସୁର ଦାନବ ତୁମ୍ଭକୁ ମାଗୁଅଛଇ ।
ତୁମ୍ଭେ ପଞ୍ଚହୋଇ ଅସୁରେ ଦେନବାଳ
ପୁଜନ୍ତି ଘେନ ଆସଇ ନୃପତି ଚଳିଲା ଅନର୍ଗଳ ।

ବାଜିଲା ସଜାଡ଼ ଦୁନ୍ଦୁଭି ତୂର ଢୋଲ
ଚଞ୍ଚଳ ବଳ ଯେ ବିକାଶନ୍ତି ଗହଳ ।
ଏବେନ ଭେଟ ସଇନ ଏକ ମୁଖେ
ବିହଡ଼ନ୍ତି ଦାନବ ବଳ ପରମ ସାନନ୍ଦ ସୁଖେ ।
କାନ୍ତିମାଳା ଜଣାଇଲା ଶୁଣ ହୋ ଗରୁହଂସୀ
ପୁଣି ମାଗନ୍ତେ ଦେବ ସମରେ ନରାଶି ।
ମହିଷାସୁର ବୋଇଲା ବେମାଳ କାନ୍ତିମାଳ
ପ୍ରଚଂଡ଼ାସୁର ରାଜାକୁ ଯାଇଂରେ ଓଗାଳ ।
ପିତାର ମନ୍ତ୍ରବଳେ ମୁ ଯିବି ଅନ୍ତରୀକ୍ଷେ
ଚଣ୍ଡ ମୁଣ୍ଡ ଦୁହିଂକ ମୁ ଭେଟିବାକ ପ୍ରତକ୍ଷେ ।
ଚଣ୍ଡ ମୁଂଡ଼ ନଧଇଲେ ମୋହୋର କସ ଯିବ
ବ୍ରହ୍ମାର ବରେ ମୋହୋର ନିଷ୍ଫଳ ହୋଇବ ।
ପାଞ୍ଚ ମେବକ୍ଷ ସେନା ତୁଲେଣ ଅଛୁ
ଶୂନ୍ୟେଣ ମହିଷାସୁର ହୋଏଂ ଅନ୍ତରୀକ୍ଷି ।
କଟକର ପାରୁଶେ ଅଛନ୍ତି ଚଣ୍ଡ ମୁଣ୍ଡ ବେନି
ପକ୍ଷୀ ପ୍ରାୟେକ ମହିଷାସୁର ଘୋଟେ ବଳ ଘେନି । ୪୫୦ ।

ଗଙ୍ଗାକୂଳେ କ୍ରୀଡ଼ା ସେ କରନ୍ତି ଚଣ୍ଡମୁଣ୍ଡେ
ଅସୁର ବଳ ଦେଖି କରେଣ ଘେନଲେ ଲୌହ ଦଣ୍ଡେ ।
ଗଦା ବୁଲାଇଣ ନଦୀ ଭିତରେଣ ଉଠି
କେଶବାସ ଅସମ୍ଭାଳ ଦଇତେ କରନ୍ତି ଦୃଢ ମୁଷ୍ଟି ।
ମର୍ଭୁତେ ଯୋଦ୍ଧାକୁ ଚଂଡ଼ ମୁଂଡ଼ ବେନି
କରନ୍ତି ରଣରଙ୍ଗ ସେ ଗଦାମାନ ଘେନି ।
ଆରେ ଆରେ ରହ ରହ ବୋଲି ବୋଲଇ ମହିଷା
ବାଳୁତ କାଳେ ତୁମ୍ଭରରେ ଏତେଡ଼କ ଭରସା ।
ସେନାନ୍ତ ରାଇଯେ ମହିଷାସୁର ପୁଛଇ
ଏହାଦେଖି ଶରୀର ମୋହୋର ରୋମାଞ୍ଚଇ ।
ପ୍ରାଣେ ନମାରରେ ଧର ଏହା ବେଢି
ମୋହର ରାଜ୍ୟକୁରେ ନେମା ଦଣ୍ଡ ଚଢ଼ି ।
ରାଜାର ବଚନେ ଯେ ବେଢିଲେ ସର୍ବସେନା
ମହା ପ୍ରତାପୀ ସେ ନଯାନ୍ତି ଗଣନା ।

ବଜ୍ର ଦଣ୍ଡ ପ୍ରାୟେକ ଯେ ଚଂଡ଼ ମୁଂଡଙ୍କର ବେନି ମୁଷ୍ଟି
ଅନର୍ଗଳାକର ପରିଘ ପିଟନ୍ତି ।
ଗଦା ପିଟନ୍ତେଣ ସଇନ ହୁଏ ଗୁଣ୍ଡ ।
ରଣେ ରସେ ବଢ଼ଇ ସେ କୁଣପାପର ଷଣ୍ଢ ।
ଅଧର ପୃଷ୍ଟ କରନ୍ତେଣ ବୀରଖର୍ବ ଚଲାଇ
ଅସୁର ବଳ ସଇନ ଗ୍ରାମୁରେ କେହୁ ନମିଲାଇ ।
ବୁଲାଇଣ ଗଦା ସେ ପ୍ରହାର କରନ୍ତି
ଏକ ପ୍ରହାରକେ ଅସୁର ବଳ ଯେ ଅନେକ ପଡ଼ନ୍ତି ।
କରନ୍ତି ସମର ଯେ ମରଣରେ ଉତ୍ପ୍ରାଧି
ଘଡ଼ିକର ମଧ୍ୟେ ପଡ଼ିଲେ ବେନି ସହସ୍ର ଯୋଦ୍ଧି ।
ମହିଷାର ସଇନି ହୋଇଲେ ଗ୍ରାଗଲ ଯୁଥ ପ୍ରାୟେ
ବଜ୍ର କାନ୍ତି ସେ ଅସୁର ବେନି ତନୟେ ।
ରୁଧିର ଦର୍ଶନେ ଦ୍ୱିଗୁଣ ଗୁଣ ବଢାଇ
ସୈନ୍ୟବଳ ମାରି ସେ ଚଣ୍ଡ ମୁଣ୍ଡ ଗର୍ଜ୍ଜଇ ।
କଷ୍ଟୋର ଯୁଦ୍ଧ ଦେଖି ମହିଷାସୁର ଉଠି
କୋପେଣ ଯୋଧ୍ୟା ସେ କଲେ ଶର ବୃଷ୍ଟି ।
ଶସ୍ତ୍ର ପଡ଼ନ୍ତେ ସେ ନକରନ୍ତି ଭୟେ
ଈଶ୍ୱର ସେବଣ ସେ ଅମର ବର ପାଏ ।
ବଜ୍ରେ ନବାଣ ସେ ଚଂଡ଼ ମୁଂଡ଼ଙ୍କର ବେନି ଅଙ୍ଗ
ସମସ୍ତ ଶସ୍ତ୍ରମାନ ପଡ଼ି ହୁଅନ୍ତି ଭଙ୍ଗ ।
ପୁଣ ଉଠନ୍ତେ କୁମର ମହାବଳି
ମହିଷାର ସଇନ ସବୁ ପିଟି କଲେ ଧୂଳି ।
ଅପାର ସନ୍ୟ ସମ୍ଭଂ ହୋଇଲେ ବଧି
ପ୍ରହରକ ମଧ୍ୟେ ସେ ପାରିଲେ ଲକ୍ଷେ ଯୋର୍ଦ୍ଧି ।
ରଣେ ଅନିବାରଣ ସେ ଚଂଡ଼ ମୁଂଡ଼ ବେନି ।
ପୁଣ ପ୍ରହାର କଲେ ଅନେକ ସଇନି
ମରଭୂତେ ଯୋଦ୍ଧା ଯେ ମହିଷାସୁରର ଥିଲା ।
ଚଂଡ ମୁଂଡଙ୍କର ପ୍ରହାରେ ସମସ୍ତ ପଡ଼ିଲା
ପବନହୁଂ ବେଗ କରି ପହୁଡ଼ିଇ ଗଦା ।
ସମରେ ସଇନ ଯେ ସବୁ କଲା ପଦା
ରକତେ କର୍ଦ୍ଦନ ଯେ ସେ ବେନି ହୋଇଲା ।

ସହସ୍ରେ ଉଣ ଶତ ଯୋଧ୍ୟା ମାଝ ରହିଲ
ଦେଖିଣ ମହିଷାସୁରର ଯେ ନ ଫୁରଇ କଣ୍ଠ ।
ଭଗ୍ନ ବଳ ଘେନ ଯେ ମହିଷାସୁର ରହିଅଛୁ
ଚଣ୍ଡ ମୁଣ୍ଡ ଦୁହେଂଯେ ଗୋଡ଼ାଇ ଅଛନ୍ତ ପଛେ ।
ମହିଂଷାସୁର ରାଜା ଗଲାକ ଅନ୍ତଃପୁରେ
ମହିଷାସୁର ଗୃମର ବେମାଳ ସଇନ
ଭଗ୍ନବଳ ଘେନି ମହିଷାସୁରକୁ ଭେଟନ୍ତି ।
କାନ୍ତମାଳା ଆଗରେ କହିଲ ସମର କଥା
ଶୁଣି କାନ୍ତମାଳା ଯେ ପାଇଁଲ ବଡ଼ବ୍ୟଥା ।
ମହିଷାସୁର ବୋଇଲ ଯେ ସମର ଗୁଣ ବୁଦ୍ଧି
ଏହାର ଆନ୍ତର ହୋ କରନା ପ୍ରୀତି ସନ୍ଧି ।
ଲକ୍ଷସହସ୍ର ହୋଇ ଗ୍ରାମକୁ ତା ଯିବା
ବନସ୍ତ ହୋଇଣ ପୁରସର କହିବା ।
ସଂଧି ଗୁଣ ଉପୁଜାଇ ବସିବା ସନ୍ନିଧାନେ
ଅବା ସନ୍ଧି ନୋହିଲେ ସମର ହୋଉ ଅନ୍ୟେ ଅନ୍ୟେ ।
ଏତେ ବୋଲିଣ ସେ ଗ୍ରାଣ୍ଡିଲେ ଶହସ୍ର ମାନ
ପାଦଗତି ହୋଇ ସେ କରନ୍ତି ଗମନ । ୪୮୦ ।
ରାଜାର ଅଗ୍ରତେ ସେ ମନ୍ତ୍ରୀ କହିଲ ଶିବପାଦ
ସମର ସଂବାଦ ଶୁଣି ଦଣ୍ଡଭେଦ ମନ୍ତ୍ର ଭେଦ ।
ସମର ଗ୍ରାଣ୍ଡିଲେ ମହିଷାସୁର ଆସଇ
ସନ୍ଧି ହୋଇଲାଁ ଦେବ ଗ୍ରାଣ୍ଡି ଅମରପୁରଇ ।
ଅଥବା ରାଜା ଯେବେ କରିବ ନାହିଂ ସନ୍ଧି
ପ୍ରୀତିଭଗ୍ନ ହୋଇଲେ ଦେବକାର୍ଯ୍ୟ ନୋହିବ ତା ସିଦ୍ଧି ।
ମନ୍ତ୍ରୀର ବଚନ ଶୁଣି ପ୍ରଚଣ୍ଡାସୁର ଉଠଇଁ
ଶିବପାଦ ମଂତ୍ରୀ ମହିଷାସୁର ଚରଣେ ପଇଲଇ ।
ମୋହର ବଚନ ତୁ କର ମହାରଥୀ
ଦେବକୁଳ ରାଜ୍ୟେ ହୋଇଲେ ସିରସ୍ତି ।
କଟେକରେ ବଜେକଲେ ଶରଧା ଧୀର ମତି
ମାତ୍ସେଙ୍କର ଲେଖାରେ ସେ ମହିଷାସୁର ନାଥ ।
ପ୍ରୀତି ମୋହୋର ହୋଇଲା ଚଂଡ଼ ମୁଂଡ଼ ନୃପତି
ଅନେକ ଯୋଗାଡ଼ ସେ ଯେ ଭୋଜନ ସଂଭାର
ପ୍ରାଣୁ ଅଧିକ କରସେ କରଇ ବେଭାର ।

ଆହୋ ଗୁରୁ ପାଂଚ ଦିବସ ଯାଏ ରହିଲ ମହିଷା
ପୁଣି ସିଂହଳ ଦ୍ୱୀପକୁ ବଳାଇଲା ମନସା ।
ମହିଷା ବୋଇଲା ମୋତେ ଦେବ ଦେବ ରାଜ .
ଥାଠ ସଇନ ଦେବୁ ମୋର ଯେତେବେଳେ କାର୍ଯ୍ୟ । ୪୯୮ ।
ରାଗ ଉପେକ୍ଷି ସେ ମହିଷାସୁର ନୃପତି
ଅନେକ ପ୍ରୀତି ଉଚୁକୁଆଇଲା ଚଣ୍ଡ ମୁଣ୍ଡ ଦୁହିନ୍ତ ।
ଭୋଜନ ସଭାର ମହିଷାସୁର ସଗର
ଅହନିଶି ବିଶ୍ୱାସ ଯେ ରାଜାର ଆନ୍ତର ।
ପାଞ୍ଚ ମର୍‌ଭୃତ ଯେ ଥିଲ ସେନାପତି
ସମସ୍ତ ମୁକୁଟ ଯୋଧ୍ୟା ଚଣ୍ଡ ମୁଣ୍ଡ ସମାନ୍ୟ କ୍ଷିତି ।
ଏତେକେ ସୈନ୍ୟଘେନି ମହିଷାସୁର ଚଳଇ
ବଢ଼ାଇ ସମ୍ପ୍ରତିରେ ଯାଇ ସିଂହଳ ଦ୍ୱୀପରେ ମିଳଇ ।
ଅନେକ ଉଚ୍ଛବ ସେ କରଣ ଯେ ରାଜା
ଆପଣା ରାଜ୍ୟେ ସେ ଚଂଡ଼ ମୁଂଡ଼ କଲ ପୂଜା ।
ସିଂହଳ ଦ୍ୱୀପ ପୃଥୀ କଣ୍ଟକ ଜେନାବନ୍ତି
ଗୁରିଲକ୍ଷ ପ୍ରଜା ଜନେ ସେ ଚଂଡ ମୁଂଡ଼ ନୃପତି ।
ଜବରେଣ ଆସଇ ସେ ମହିଷାସୁର ମହାରାଜ୍ୟେ
ଚଂଡ଼ ମୁଂଡ଼ ଦୁହେଂ କରନ୍ତ ରଗ ଭଜେ ।
ଜୟତୁ ଭଗବାନ ଭଗତ ମଣ୍ଡଳା
ରାଜୀବ ଲୋଚନ ଷୋଳ ସମ୍ପୂର୍ଣ୍ଣ କଳା ।
ସ୍ୱାମୀ ମନ ପ୍ରକୁଟ ପରମ ସାନନ୍ଦେ
ତୋହର ଭଗତ ଥିବ ମମ ହୃଦେ ।
ଅକାରଣ ଲୋକଙ୍କୁ କାରଣ କରତା
ପର ଦୁଃଖେଣ କାତର ଅହନଶି ବର ଦ୍ୟନ୍ତା । ୫୦୦ ।
କୃପାଜଳ ନନ୍ଦନି ଶ୍ରୀ ଶାରଳା ଚଣ୍ଡୀଦେବୀ
ମୁହିଂ ତାହାର ପୁତ୍ର ଶାରଳା ଦାସ କବି ।
ଏ ମହା ସାଗରକୁ କଷ୍ଟ ମୁହିଂ ଗ୍ୟାଂନ୍ତା
ସେହୁ ଦେବୀ ଯାହା କହଇ ମୁହିଂ ତାହା ଲେଖନ୍ତା ।
ପଦ୍ମଜଳ ଲୋଚନୀ ଚନ୍ଦ୍ରମା ମୁଖ ଗୋଟି
ଅର୍ଜି ଯିବାପରେ ଥାପନ ସେ ମୋର ଦେବୀପାଦଗୋଟି । ୫୦୧

—o—

# ମହିଷାସୁରର ଦକ୍ଷିଣ ଦିଗେ ଗମନ ଓ ଚନ୍ଦ୍ରାବତୀ ବିବାହ

ଏଥୁ ଅନନ୍ତରେ ଯେ ପରୀକ୍ଷ ନାମେ ରାଜା
ଶୁକମୁନି ଚରଣେ ଯେ କଲେ ଦିବ୍ୟ ପୂଜା ।
ସିଂହଳ ଦ୍ୱୀପ କରଞ୍ଜ ଦ୍ୱୀପ କୁଶ ଦ୍ୱୀପ ତିନି ଦ୍ୱୀପ ହୋଇଲା ତା ସାଧି
ପୁଣ ମହିଷାସୁର କଲା କେବଣ ବୁଦ୍ଧି ।
ଏହା ସତକ୍ଷି ମୋତେ କହିବା ତପୋନିଧି
ଅନେକ ଜନ୍ମ ଦୁଷ୍କୃତ ହୋଉ ମୋହର ସିଦ୍ଧି ।
ବଦନ୍ତି ଶୁକ ମୁନି ଶାହାସ୍ର ଆଦି ବ୍ରହ୍ମା
ଶୁଣ ହୋ ମହିଷା ଆଦି ବଂଶର ମହିମା ।
ମକର ଶୁକଲ ପକ୍ଷ ଏକାଦଶୀର ଦିନ
ବୃହସ୍ପତି ବାର ପୁଷ୍ୟା ନକ୍ଷେତ୍ର ବିଦ୍ୟମାନ ।
ସେଦିନ ହୋଇଅଛୁ ଶୁଭ ନାମେ ଯୋଗ
ସେଦିନ ମହିଷା ବିଜୟେ ପଶ୍ଚିମ ଦିଗ ।
ବୀରତୂର ବଜ୍ରଘୋଷ ନିଶାଣ ତୂର ବାଜେ
ଦଧି ମଙ୍ଗଳ ଅନୁକୂଳ ମହିଷାସୁର କରଇ ଦିଗବିଜେ । ୫୧୦ ।

ଗୋଡ଼ାଇ ସମ୍ବେଣ ଚଳନ୍ତେଣ ବଳ
ଆଗିଆଣି ଆଠରେ ଚଳନ୍ତି ଗୁମର ବେମାଳ
ଡାହାଣ ପାଖ ଆଠେ ଚଳଇ କାନ୍ତିମାଳା ।
ବାମ ପାରୁଶେ ଚଳନ୍ତି ମହା ବୀର ।
ରାଜାର ବେନି ପାଖେ ଅଛନ୍ତି ଚଂଡ଼ ମୁଂଡ଼
ଅସୁର ଚଳନ୍ତେ କମ୍ପଇ ବ୍ରହ୍ମାଣ୍ଡ ।
ଆକାଶ ମଣ୍ଡଳେ ଥାଇ ଦେଖନ୍ତି ଦେବ ଲୋକେ
ତ୍ରାସିଣ ସ୍ୱର୍ଗ ଗୁଡ଼ୁଥାନ୍ତି ଥୋକେ ।
ସିଂହଳ ଦ୍ୱୀପ ଜିଣି ଲବଣ ସମୁଦ୍ରେ ଯାଇ
ଲକ୍ଷବଶ ଯୋଜନ ଜିଣି କରଞ୍ଜ ଦ୍ୱୀପେ ଭ୍ରମଇ ।
କରଞ୍ଜ ଦ୍ୱୀପ ଅଟଇ ଗୁଳଶ ଯୋଜନ
କ୍ଷୀର ନାମେ ସମୁଦ୍ର ତିରଶ ଲକ୍ଷ ଯୋଜନ ।
ପ୍ରମାଣି କ୍ଷୀର ସମୁଦ୍ର କୁଶ ଦ୍ୱୀପରେ ପଶଇ
ପ୍ରଚଂଡ଼ାସୁର ଶିବପାଦ ଦେଖିଣ ହସଇ ।
ଚଂଡ଼ ମୁଂଡ଼ଙ୍କର ସମ୍ଭବ ଦେଖିଣ ନୃପତି
ଅନେକ ପୂଜା କଲା ଫିଟିଲା ମନଭ୍ରାନ୍ତି ।

ତହୁଂଣ ଜିଣି ମହିଷାସୁର କରଇ ପୟାଣ
ନୀଳ ସମୁଦ୍ର ଜିଣିଲା ତିନ ଲକ୍ଷ ଯୋଜନ ।
ନୀଳ ସମୁଦ୍ର ଜିଣି ଚନ୍ଦ୍ର ସମୁଦ୍ରେ ପଶଇ
ଅଖାଇଯ ଖାଇଯ ଯେ କରନ୍ତି ସର୍ବଇ ।
ଉଜାଡ଼ନ୍ତି ଦେଶ ଭାଙ୍ଗନ୍ତି ପୁର ସମ୍ପଦ
ଚନ୍ଦ୍ର ଦ୍ୱୀପ ଧ୍ୱଂସିଣ କଲେକ ପ୍ରମାଦ ।
ଚନ୍ଦ୍ର ଦେଶର ରାଜା ଚନ୍ଦ୍ର ଯେ ନନ୍ଦମି
ଭୂଷଂଡ଼ କାକର ବଂଶେ ସେ ଅଟଇ ମହାବ୍ରହ୍ମି ।
ଚନ୍ଦ୍ର ନନ୍ଦମିର ଭାରଯା ଚନ୍ଦ୍ରରେଖା ନାମ ଯୁବତୀ
ତାହା ତହୁଂ ଜପୁଜିଲା ଦୁହିତା ଏକ ନାମ ଚନ୍ଦ୍ରାବତୀ ।
ସେ ଚନ୍ଦ୍ରାବତୀ ନିମନ୍ତେ ରଜା ନପାଇଲା ବର
ମଧ୍ୟପୁରେ ନାହିଂ ତାହାକୁ ପଟାନ୍ତର ।
ଚନ୍ଦ୍ର ଦ୍ୱୀପ ଯେ ତିରଶ ଯୋଜନ ଅଟଇ
ପଞ୍ଚ ଲକ୍ଷ ରାଜା ବସଇ ଦଶ ସହସ୍ର ଅଙ୍ଗୁଳି ।
ଏତେକ ରାଜା ନିମନ୍ତି ଅଣାଇ ନୃପବର
ଦୋହିତାର ନିମନ୍ତେ ରାଜା କଲା ସ୍ୱୟମ୍ବର ।
ଚନ୍ଦ୍ରଗିରି ନାମେ ସେ ଏକଇ ପରବତ
ତହିଂର ଭିତରେ ରାଜା ଥୋଇଂଛି ସାତକୁଂଡ଼ ଅମୃତ ।
ପର୍ବତର ରକ୍ଷାକାରୀ ପାଞ୍ଚ କୋଟି ଗନ୍ଧର୍ପ
ତହୁଂଣ ସେ ଉଦଏ ହୋଏ ଚନ୍ଦ୍ରଦେବ ।
ସେ ଚନ୍ଦ୍ର ଦ୍ୱୀପର ରାଜା ଚନ୍ଦ୍ର ଅଟଇ
ସେ ଚନ୍ଦ୍ର ଦ୍ୱୀପକୁ ଚନ୍ଦ୍ର ଜାଣି ଘୋଟଇ ।
ଯହୁଂ ଦ୍ୱୀପେକ ବୋଲି ଦ୍ୱୀପେକ ଉପମା
ସେ ଦ୍ୱୀପ ସମୋଦ୍ରେ ରାଜା ଯେ ବେଦବ୍ରହ୍ମା ।
ଅନନ୍ତ ବୋଲି କର ଇଶାନ୍ୟ କୋଣେ ହାବେ
ସେ ଦ୍ୱୀପରେ ଯାଇ କୋଣୁ ଆଦିତ ହୋଏ ଉଦେ ।
କୁଶଦ୍ୱୀପ ବୋଲି କର ଯେବଣ ଦ୍ୱୀପ ଗୋଟି
ସେ ଦ୍ୱୀପରେ ରାଜା ସେ ଅଟଇ କପଟି ।
କୁରଚଂନ ବୋଲି କର ଅଟଇ ଯେବଣ ଦ୍ୱୀପ
ସେ ଦ୍ୱୀପ ସମୁଦ୍ରେ କୁବେର ଅଟଇ ନୃପ ।
ଜମ୍ବୁଦ୍ୱୀପ ବୋଲିକର ଯେବଣ ଦ୍ୱୀପ ଉପମା
ସେ ଦ୍ୱୀପ ସମୁଦ୍ରେ ଅଟଇ ହାଦେ ଯମ ।

ଚନ୍ଦ୍ରଗିରି ପର୍ବତ ତଳେ ମଏଂଷାସୁର ରହଇ
ପରୀକ୍ଷ ଆଗରେ ଶୁକମୁନି କହଇ ।
ମଏଂଷାସୁର ସହୁଂ ଚନ୍ଦ୍ର ପାଦରେ ରହଇ
ଖଟଇ ଦେଶ ଉଜାଡ଼ନ୍ତି ଦେଶେ ।
ପରୀକ୍ଷ ପୁଚ୍ଛିକଲା ଶୁକ ମହାମୁନି
ସେ ଚନ୍ଦ୍ରାବନ୍ତି ସଏମ୍ବର କେବଣ ବିଧାନି ।
ଶୁଣ ହୋ ମହାରାଜା ପୁଚ୍ଛିକଲୁ ଯାହା
ସାବଧାନେ ଶୁଣ କହଇ ମୁ ତାହା ।
ସେ ଚନ୍ଦ୍ରନଉମି ରାଜା ଦୋହଡାଏଣ କରି
ଲକ୍ଷେ ଦଶ ସହସ୍ର ରାଜା ଆଣିଲାକ ବରି ।
କାମୋଦ ନଗ୍ରପୁରେ ସେ ଆରଣ୍ୟକ ନୃପତି
ବେନି ଅକ୍ଷୁଣ ତୁରଙ୍ଗେଣ ମିଳିଲ ଚକ୍ରବର୍ତ୍ତୀ ।
ଚଂଡ଼ପୁର ଦେଶର ନୃପତି କାଳବଳୀ
ତିନି ପଦ୍ମ ଯୋଧ୍ୟା ତୁରଙ୍ଗେ ଆସି ତହୁଂ ମିଳି ।
ମାତାଙ୍ଗପୁର କାନ୍ତ ନାମେ ମହାରାଜା
ତିନି ସାଗର ସୈନ୍ୟ ତୁରଙ୍ଗେଣ କଲା ପୂଜା ।
ଆଖ୍ୟାନ ଦେଶରେ ଯେ ଚନ୍ଦ୍ରାକ୍ଷ ବୋଲି ରାଏ
ଅଷ୍ଟାଦଶ ଖର୍ବ ସୈନ୍ୟ ଘେନି ସେହୁ ଆଏ ।
ଅନଙ୍ଗ ଦେଶର ଅନମିଶ ଚକ୍ରବର୍ତ୍ତୀ
ସେ ପ୍ରବେଶ ହେଲା ଚନ୍ଦ୍ରନଉମିର କ୍ଷିତି ।
ନିରଞ୍ଜନ ଦେଶର ନିରଞ୍ଜନ ବୋଲି ବୀର
ସାତ ପଦ୍ମ ବୀର ଘେନି ଆସଇ ଅଙ୍ଗିରା ।
କଳିଙ୍ଗ ଦେଶର ନିର୍ମଳସେନ ନୃପ
ସମଦଣ୍ଡ ଘେନି ପ୍ରବେଶ ପ୍ରତାପ ।
ପଲାଶ ଦେଶର ଇନ୍ଦ୍ରପଦ୍ମ ବୋଲି ବୀର
ସେ ଆସି ପ୍ରବେଶ ଚନ୍ଦ୍ରନଉମି ପୁର ।
ଆଜମାନ ନଗ୍ରେ ଯୁଗାନ୍ତ ନୃପତି
ବଜାଇ ସମ୍ଭରେ ସେ ଅଙ୍ଗଳାକ କତି ।
ନୀଳମାଧବ ବୋଲି ଚଣ୍ଡପୁର ରାଜା
ଅଣୀ ଖର୍ବ ବଳ ଘେନି କଲା ପାଦ ପୂଜା ।
ଯୁଗାନ୍ତ ଦେଶର ରାଜା ସଉଦାସ
ତିନି ପଦ୍ମ ଯୋଧ୍ୟା ଘେନି ଯଶୋବନ୍ତୀପୁରେ ପ୍ରବେଶ ।

ଚନ୍ଦ୍ରରେଖା ବୋଲି କରି ଚନ୍ଦ୍ରନଉମିର ସ୍ୱରଜା
କ୍ଷିଡ଼ୁଲାକ୍ଷ ରକ୍ତବୀର୍ଯ୍ୟ ତାହାର ଆତ୍ମଜା ।
ସୁନ୍ଦନ୍ତ ରାଇ ଆଗ୍ୟାଂ ଦେଲା ନଉମି
ଅନେକ ଦେଶର ରାଜାମାନେ ଆସୁଛନ୍ତି ମୃତୁଭୂମି ।
ସନମାନ ଗଉଦ୍ଧୋବେ କରୁଥିବ ପୂଜା
କନେକ ଆସନେ ବିଜେ କରିଥିବେ ସର୍ବରାଜା ।
ପିତାର ବଚନ ଶୁଣି ସେହୁ ରକ୍ତବୀର୍ଯ୍ୟ
ଅନେକ ରତ୍ନ ଦେନ ସେ ହୁଅଇ ବୀର ସଜ ।
ଏମନ୍ତ ହୋଇଅଛନ୍ତି କୁଶ ଦ୍ୱୀପରେ ସର୍ବରାଜା
ଅନରୂପ ସାମାନ୍ୟେ କରୁଛନ୍ତି ପାଦପୂଜା ।
ସର୍ବମଙ୍ଗଳ ଦେଶର ରାଜା କଳମାସିଂହ ରାଏ
ରୂଲେଣ ସାତ ମର୍ତ୍ତ ସଇନ ଘେନ ଆଏ ।
ବହୁତ ଚହଲ ସେ ମୁଖରାବ ଧୁନ
ଛପନ ସାଗର ସନ୍ୟ ଘେନ ମହାବଳୀ ।
ସମଥ ଦେଶର ରାଜା ନଉଧ
ସମଦଣ୍ଡ ଘେନ ପ୍ରବେଶ ହୋଇ ରାଏ ସାଧ୍ୟ ।
ଶରଦ ଦେଶର ଅଇନ୍ଦ୍ର ନାମେ ନୃପତି
ଭୁଲେ ଅଛନ୍ତି ତାର ପାଚଂଲକ୍ଷ କ୍ଷତ୍ରି ।
ଜଳଧଂର ଦେଶର ରାଜା ଜଳତରଙ୍ଗ
ବହୁତ ବଳ ଘେନ ସେ ମିଳିଲେ ବେଗ । ୫୭୦ ।
ବହୁତ ଚହଲ ସେ ମୁଖରାବ ଧୁନ
ରାଜାମାନଙ୍କର ଅକଳିତ ସଇନ ।
ଅଉଧ ଦେଶର ରାଜା ପ୍ରବାଳ ସିଂଘ ରାଏ
ସମ୍ଭଦଣ୍ଡ ଘେନ ଯଶୋବନ୍ତୀ ପୁରେ ପାଏ ।
ସୁଦର୍ଶନ ଦେଶର ନୃପତି କୃତସେନ
ତାହାର ଭୁଲେ ସାତ ମର୍ତ୍ତ ସଇନ ।
ମାତାଙ୍ଗ ଦେଶର ରାଜା ରଥପତି
ସାତ ପଦ୍ମ ଯୋଧ୍ୟା ଘେନ ପ୍ରବେଶ ଯଶୋବନ୍ତୀ ।
ବୃହନ୍ତ ବଣ୍ଡକ ବୋଲିଣ ଏକ ଦେଶ
ବେନ ମେବକ୍ଷ ଯୋଧ୍ୟା ଘେନ ସଏମ୍ବରେ ପ୍ରବେଶ
ପରାର୍ଦ୍ଧ ଦେଶର ହରସେନ ରାଏ
ସମସଣ୍ଡ ଘେନ ଆସି ସମ୍ମୁଖରେ ସମ୍ଭାଏ ।

ବର୍ଦ୍ଧମାନ ଦେଶର ନୃପତି ଅଶ୍ୱମାଳି
ସାଗରେକ ଯୋଧ୍ୟା ଘେନ ସମ୍ମୁଖେ ମିଳି ।
ଅରୁଟ ଦେଶ ନୃପତି ଖେଗସେନ ବୀର
ସମଦଣ୍ଡ ଘେନ ପ୍ରବେଶ ହୋଏ ଚନ୍ଦ୍ରନଗ୍ରୀ ପୁର ।
ଶ୍ରୀଖଣ୍ଡି ଦେଶର ରାଜା ଶତସିଂହ
ପଦ୍ମେକ ସନ୍ୟ ଘେନି ରକ୍ତବୀର୍ଯ୍ୟେ ସଙ୍ଗ ।
ରକ୍ତବୀର୍ଯ୍ୟ ବଡ଼ୋଲାକ୍ଷ ବେନ ଭାଇ
ରାଜାମାନଙ୍କୁ ସବୁ ସମାଧାନ କରାଇ । ୫୭୦ ।
ମାଡାଙ୍ଗ ଦେଶର ନୃପ ରଣକେଶୀ
ସମଦଣ୍ଡ ଘେନି ସମରେଣ ଆସି ।
କାଶ୍ୟପ ଦେଶର ରାଜା ବସନ୍ତ ଦେବ
ପାଞ୍ଚଲକ୍ଷ ସନ୍ୟ ଘେନ ସମ୍ମୁଖରେ ମିଳିବ ।
ଆବତ ଦେଶର ପଦ୍ମସେନ ନୃପତି
ସେ ପ୍ରବେଶ ହେଲ ଆସି ସମ୍ମୁଖରେ ତଡ଼ତି ।
ମୂର୍ଦ୍ଧୁଳ ଦେଶର ରାଜା ସୂର୍ଯ୍ୟୋଦଏ
ଶିଖରେଶ୍ୱର ବୋଲି ଅଛଇ ତାହାଂର ରାଏ ।
ସପ୍ତ ମର୍ଦ୍ଧ ସନ୍ୟ ଅଛଇ ତାର ତୁଲେ
ଅସଙ୍ଖ ସନ୍ୟ ଘେନି ଯଶୋବନ୍ତୀ ପୁରେ ମିଳିଲେ ।
ମାଧୁର୍ଯ୍ୟ ଦେଶର ରାଜା ଶରପତି
ସମ ଦଣ୍ଡ ଘେନ ଆସି ବିଜଏ ନୃପତି
ମଧୁବନ ଦେଶର ରାଜା ଯେ ବିରଞ୍ଚି
ସମଦଣ୍ଡ ଘେନଣ ସେ ସଙ୍ଗରେ ଆସିଅଛୁ ।
ଷଟ ପଦ୍ମଦେଶର ରାଜା କର୍ଣ୍ଣମାଳି
ପାଞ୍ଚ ମେଦକ୍ଷ ସନ୍ୟ ଘେନ ସମ୍ମୁଖରେ ମିଳି ।
ଭଳମ ଦେଶର ମଧୁ ଇନ୍ଦ୍ର ରାଜା
ବେନ ପଦ୍ମ ସନ୍ୟ ଘେନ ଆସି କରଇ ପାଦ ପୂଜା ।
କକଳ ଦେଶର ରାଜା କକଳେଶ୍ୱର ବୋଲି
ପନ୍ଦରଲକ୍ଷ ଯୋଧ୍ୟା ଘେନଣ ବୀରମିଳି । ୫୮୦ ।
ମଙ୍ଗଳ ଦେଶର ରାଜା ମାଳ ଚକ୍ରବର୍ତ୍ତୀ
ଦଶଖର୍ବ ଯୋଧ୍ୟା ଘେନ ତୁଲେ ଆସଇ ତଡ଼ତି ।
ଚକ୍ରବ୍ରତେକ ଦେଶର ରାଜା ଯେ ସରସି
ବେନ ପଦ୍ମ ଯୋଧ୍ୟା ଘେନ ତୁଟିଲେଣ ବଳ ସାଜି

ବିରାଜ ଦେଶର ରାଜା ହିରଣକପଚ
ତାହାର ତୁଲେଣ ସେନା ଖଟଇ ନବ ଲକ୍ଷ ।
ସମିଧ ଦେଶର କଳିଙ୍ଗସେନ ରାଜା
ଯମଦଣ୍ଡ ଘେନି କରଇ ସେହୁ ପୂଜା ।
ତେହୁକ ଦେଶର ରାଜା କୃତାନ୍ତେକ ନୃପତି
ବେନି ପଦ୍ମ ଯୋଧ୍ୟା ଘେନି ସେ ମିଳିଲା ତଡତ ।
ଙ୍କେ ମାତ ଅଭଏ କାନ୍ତାମା ଶଶିମୁଖୀ
ଅନଯୀପ ଲେଖନକୁ ତୁହି ସେ ମୋତେ ସାକ୍ଷୀ ।
ଯେବଣ ଭାଗବତ ବିଷ୍ଣୁପୁରାଣ ପୋଥି
ବେଦ ଯାହା କହିଲ ସେ ଜୟୀପି ।
ଅଷ୍ଟାଦଶ ପୁରାଣ ଯାହା ହାଦେ ବାଛୁ
ମୁହିଂ ତା ମନୁଷ୍ୟ ମାନଙ୍କେ ଲେଖନ କରୁଅଛୁ ।
ତିରଶ ଲକ୍ଷ ଯୋଜନ ଯେବଣ ଚନ୍ଦ୍ର ଦ୍ୱୀପ
ମୃଧନା ଅବସେକ ବସଇ ପାଞ୍ଚଲକ୍ଷ ଦଶ ସହସ୍ର ନୃପ ।
ଏହାଙ୍କର ମୂଳେ ଯେ ଅନେକ ପାଟଦଣ୍ଡ
ବାର ଅଇବ୍ରତ ପାଞ୍ଚ ସହସ୍ର ଖଣ୍ଡ । ୬୯୦ ।
ଯେତେ ରାଜାବଳ ଲେଖନ୍ତେ ଗହନ ପଣ୍ଡବ
ମୋହୋର ମନ ବୁଧି କେତେକ ହୋଇବ ।
ପଣ୍ଡିତ ଲୋକେ ଗାଳିବେ ବୋଲିବେ ସତ କଥା
ମୂର୍ଖ ଲୋକେ ବୋଲିବେ ଏ ଅଟଇ ବହୁତ ଲତା ।
ଇଦଂ ବାଚ ସ୍ତେ ନିମନ୍ତ୍ରଣ ମୁହିଂ
ଉଚଂ ଉଚଂ ରାଜା ମାନନ୍ତ ଙ୍କୋଆଏ କହିଲଇଂ ।
ଜମ୍ବୋଦ୍ୱୀପରେ ମୁହୁ କହୁଅଛୁଂ କୁଶ ଦ୍ୱୀପର କଥା
ବ୍ୟାସଙ୍କ ବଚନେ ମୁ ହୋଇଲି ବକତା ।
ନିର୍ଯୀପ କର ଲହି ପାରିବଇଂକ ମୁହିଂ
ଅପାର ଲେଖନ ଯହୁଂ ଅଛଇଂ ମୁ କହିଂ ।
ପାଟଦଣ୍ଡ ଘେର୍ନିଣ କୋଟିଏ ପାଞ୍ଚ ଲକ୍ଷଇଂ
ଏତେକ ନୃପତି ସମ୍ଭରେଣ ମିଳି ଅଛଇଂ ।
ରକ୍ତ ବୀର୍ଯ୍ୟ ବଡୁଲାକ୍ଷ ବେନି ବୀର
ଅନରୁତେପ ପୂଜା କରନ୍ତି ମହୀପାଳ ।
ଚନ୍ଦ୍ରଭାଗା ବୋଲି କର ଏକ ନଦୀ ଗୋଟି
ଅନନ୍ତ ଚନ୍ଦ୍ୟା ପାଦୁକା ତହିଂ ଭେଟି ।

ଚନ୍ଦ୍ର ଯେ ଷଏ ଗଲା ପ୍ରଜାପତି ଶାପେ
ଦିନେ ଦିନେ ଷଏ ହୋଇଲା ସେ ସୁମନ୍ତ୍ରେକର କୋପେ ।
ତୁଳ ଶୁକଳ ଯେ ପୂର୍ଣ୍ଣିମୀର ଦିନ
ଚନ୍ଦ୍ରଶାପ ପାଇଲା ପକ୍ଷ ଚତୁର୍ଦ୍ଦଶୀ ଦିନ । ୬୦୦ ।
ଶରୀର ଶୁଦ୍ଧି ନହି ରେଖେ ରହିଲା
ଚନ୍ଦ୍ର ଦେବତାର ଦେହ ଅତି କ୍ଷୀଣ ହେଲା ।
ସେ ଚନ୍ଦ୍ର ଧାପେଂ କାନ୍ତି ନାମେ ନଦୀର
ତହିଂ ଯାଇଂ ବୁଡ଼ି ଯେ ପଡ଼ିଲା ସୋମଦର ।
ସେ ନଦୀ ଭିତରେ ଯହୁଂ ଦେଲା ଝାସ
ସେ ଛିଦ୍ର କାୟା ଗୋଟି ଯେ ନ ଗଲା ତାର ନାଶ ।
ଅମାବଇ ଅନ୍ତରେ ପ୍ରତିପଦା ଦିନେ
ଦୁତିଅ ଦିନ ଅନ୍ତରେ ନହି ରେହି ପ୍ରମାର୍ଜ୍ଜଣ ।
ଏହିମତି ପ୍ରମାଣେ ଉଦେ ହୋଏ ବେଳ ଘଡ଼ି
ସାଏ ତିନ ଘଡ଼ି ଉତ୍ତରେ ସେ ନଦୀରେ ପଡ଼ଇ ବୁଡ଼ି ।
ଦିନକୁ ଦିନ ତାହାର କାୟା ବଢି ଆସଇ
ପୌର୍ଣ୍ଣିମୀର ଦିନକୁ ଯେ ସମ୍ପୂର୍ଣ୍ଣ ଅଟଇ ।
ଚନ୍ଦ୍ରଭାଗା ପ୍ରାପତ ହୋଇ ସେହି ଦିନ
ତଦ ନିମନ୍ତେ ଚନ୍ଦ୍ରଭାଗା ବିଦ୍ୟମାନ ।
ସେ ନଦୀର କୂଳେ ସଏମ୍ବର ସ୍ଥାନ
ତହିଂ ସେ ରୁଣ୍ଡ ହୋଇଅଛନ୍ତି ରାଜାଗଣମାନ ।
ଉତ୍ତରକୁ ପାଦୁକା ସେ ବହଇ କାନ୍ତାମୀ
ତହିଂ ସେ ରହିଅଛୁ ରାଜାମାନଙ୍କ ସଇନ ।
ରାଜାମାନେ ବସିଅଛନ୍ତି ଶୁଭକର୍ମି
ପାଦଅର୍ଘ ଦେଇଂଛି ଯେନ ଅଇଲା ଚନ୍ଦ୍ରନଉମି । ୬୧୦ ।
ଚନ୍ଦ୍ରନଉମି ବୋଇଲା ସେ ବିନୟ ଭଗତି ଭାବେ
ପୂର୍ବେଣ ବ୍ରତେକ କଣଅଛୁ ଶୁଣିମା କି ଏବେ ।
ଜନ୍ମୋଦ୍ଧାପେ ମୁହିଂ ଯେ ଦିଗବିଜେ କଲି
ନଇଷଧ ରାଜାର ମୁ ଯେ ସଏମ୍ବର ଦେଖିଲି ।
ତାହାର ପୁରେଣ ଜାତ ଯେ ଅବଳା
ସେ କନ୍ୟାର ନାମ ଯେ ଅଟଇ ସୁକୋନ୍ତଳା ।
ତାହା ନିମନ୍ତେ ସଏମ୍ବର କରିଛୁ ରାଏ
ସବୁ ନୃପତି ଯେ ସଏମ୍ବରେ ଆଏ ।

ମକର ମାସ ଶୁକ୍ଳ ପକ୍ଷ ତ୍ରୟୋଦଶୀ ରବିବାର
ପୁଷ୍ୟା ନକ୍ଷତ୍ରକୁ ଭୋଗ ସେ ଦିନର ।
ବାଦ୍ୟ ନାମେ କରଣ ନଇରୃତ ନାମେ ଯୋଗ
ସେ ଦିନ ଦିଗ ବିଜେ କଲି ମୁ ମଧ୍ୟ ସ୍ୱର୍ଗ ।
ଗର୍ଜିଲ ଧନ୍ଦୋଳି ଦେଖି ବୁହାଇଲି ମୋହୋର ରଥ
ସମସ୍ତ ରାଜା ଦେଖି ହୋଇଲେ ସ୍ତମ୍ଭୀଭୂତ ।
ତାହା ଦେଖି ଆନନ୍ଦ ହୋଇଲା ସକୋଂତୋଳା
ମୋହୋର କଣ୍ଠେ ନେଇ ଦେଲା ରତ୍ନମାଳା ।
ବରଣ ହୋଇଂ ମୁ ଆଣିଲି ସକୋଂତୋଳାକୁ
ଘେନଣ ଅଇଲି ମୋହୋର ଚନ୍ଦ୍ରଦ୍ୱୀପକୁ ।
ଏଥେ ଆଣି ମୁହିଂ ତାହା ହେଲି ପ୍ରଣଇତ ।
ସକୋଂତୋଳା ତହିଂ ଉପୁଜିଲା ଏକ ଦୋହିତା । ୭୨୦ ।

ତାହାର ନାମ ମୁହିଂ ଦେଲି ଚନ୍ଦ୍ରାବତୀ
ତଇଲୋକେ ବର ନ ପାଇଲି ତେଜ କାନ୍ତି ।
ତାହାର ନିମନ୍ତେ ମୁହିଂ କଲି ସୟମ୍ବର
ପଞ୍ଚଲକ୍ଷ ଦଶ ସହସ୍ର ରାଜାକୁ ଏକା ଦୁହିତା ଗୋଟି ମୋର ।
ଅଗ୍ନି ବାଇବ ମାହେନ୍ଦ୍ର ବରୁଣ ସ୍କନ୍ଦ ଯୋଗ
ମାହେଂନ୍ଦ୍ର ଯୋଗେ ମୋହୋର ସୟମ୍ବର ମଧ୍ୟ ସ୍ୱର୍ଗ ।
ଏ ମୋହୋର ଦୋହିତା ଯେ ଅଟଇ ଚନ୍ଦ୍ରାବତୀ
ତଇଲୋକ ମୋହିନୀ ସେ ମଦନ ମୂରତି ।
ତହିଂକି ବ୍ରତେକ ଯେ କରଅଛୁ ମୁହିଂ
ରାଜା ବୋଇଲେ ହୋ କହୁ କନା ତୁହି ।
ଚନ୍ଦ୍ରଦ୍ୱୀପ ଈଶ୍ୟାଣେ ଯେ କଲି ଚନ୍ଦ୍ର ଦେବ
ଏ ଦ୍ୱୀପର ଈଶ୍ୟାଣେ ପୋତିଲି ମଣି ଖମ୍ଭ ।
ଏ ନବ ଦ୍ୱୀପ ସପତ ସାଗରକୁ ଯେ ରହିଲି ଅଷ୍ଟକୁଳ ।
ଚନ୍ଦ୍ରଦ୍ୱୀପକଇ ମଣି ସ୍ତମ୍ଭ କଲିକ ନିଚଳା ।
ଅଷ୍ଟରତ୍ନ ଜଡ଼ିତ ଶତେ ପଚିଂବଶ ଯୋଜନ ଆଏତନ
ଉପରକୁ ଉଭା ଲକ୍ଷେ ଯୋଜନ ପ୍ରମାଣ ।
ଏଥର ଉତ୍ତରେ ବସଇ ବରୁଣ
ଏଥୁ ସେ ବିକାଶଇ ସେ ସହସ୍ର କିରଣ
ଏ ମଣିସ୍ତମ୍ଭକୁ ବିନ୍ଧିବ ଆକର୍ଷି ଶର
ପଶ୍ଚିମ ଭାଗେ ପଶି ପୂର୍ବଭାଗେ ହୋଇବ ବାହାର । ୭୩୦ ।

ଯେବଣ ରାଜାର ଶର ଯେ ଫୁଟଇ ସ୍ତମ୍ଭକୁ
ମୋହୋର ଦୋହିତା ଦେବ ଚନ୍ଦ୍ରାବତୀ ତାହାକୁ
ଏ ମଣିସ୍ତମ୍ଭ ବନ୍ଧ ପାରବ ଅବା ଯେହୁ
ମୋହୋର ଦୁଲଣି ପ୍ରଦାନ ହୋଇବାକ ସେହୁ
ଏହେନେକ ସତ୍ୟବ୍ରତ ମୋହୋର ଦୃଢ଼ବ୍ରତ
ସ୍ୱୟମ୍ବର ଅମ୍ବର ଅଛୁ ଦନା ସାତ ।
ସାତ ଦିନ ପର୍ଯ୍ୟନ୍ତେ ରାଜାଙ୍କର ଆର୍ଦ୍ଦୋଳି
ମୋହୋର ଯେତେମାନ ସମ୍ପୁଥିବ ସମ୍ଭାଳି ।
ଆହୋ ପରକ୍ଷ କୋଟିଯେ ପାଞ୍ଚଲକ୍ଷ ଦଶ ସହସ୍ର ରାଜାଙ୍କୁ
ନିତ୍ୟେ ଯେ ମୂଟଣାହି ଦେଉଂ ଯେ ସମସ୍ତ ସନ୍ୟମାନଙ୍କୁ ।
ରଥ ଗଜା ଅଶ୍ୱ ବାହାନ ନକରନ୍ତି ନୃପେ
ବଳେହା ବାହାନେ ଚଳନ୍ତି ସମସ୍ତ ଅପନାପେତ୍ୟ ।
କାହାର ପଦ୍ଭେକ ବଳାସ୍ତା କାହାର ସାଗରେକ ବଳାସ୍ତା
ପବନୁ ଅତିବେଗେ ଚଳନ୍ତି ଅତିରୁସ୍ଥା ।
ବଳାସ୍ତା ବାହାନେ ଚଳନ୍ତି ସମସ୍ତ ମହୀପତେ୍ୟ
ମଣିସ୍ତମ୍ଭ ସନଧ୍ୟେଂ ବଜେ କଲେ ତୁରିତେ ।
ସହସ୍ରେ ଯୋଜନ ମାଡ଼ି ଚଳଇ ସଇନ
ସିନ୍ଧୁ ଉଚ୍ଛୁଳଇ ମୁଖ ରବ ଧୂନ ।
ଧବୁଙ୍କର ହୃଦେ ଭୂଷଣ ଚନ୍ଦ୍ର କିରଣ ମଣି
ଝମିର ଝଶଇ ସେ ଆଦିତ ତେଜ ଜାଣି । ୬୪୦ ।

ରାଜାମାନେ ଯାଇଂ ଦେଖନ୍ତି ମଣିସ୍ତମ୍ଭ
ଦେଖି ଭାଗିଲା ସେ ସବୁଙ୍କର ଦମ୍ଭ ।
ସୁଦୀର୍ଘ ରଜା ବୋଇଲା ଶୁଣହୋ ଚନ୍ଦ୍ରନଉମି
ବଡ଼ ଦୁଲଭ କଥାଏ ଦେଖାଇଲୁ ତୁମ୍ଭି ।
ଇହଲୋକ ରାଜାଏ ବାନ୍ଧ ନୁଆରେବେ କ୍ଷେମ
ଯମଦଗ୍ନି ପୁତ୍ର ବାନ୍ଧ ପାରଇ ପ୍ରଶୁରାମ ।
ସମସ୍ତ ରାଜାଏ ଆଶିଯଁ ହେଲେ ତାହା ଗୃହଂ
ଏହା ବନ୍ଧବାକୁ କ୍ଷେମ ଅଛୁ କାହୁଂ ।
ଶତେ ପଞ୍ଚବଂଶ ମଣିସ୍ତମ୍ଭ ସ୍ଥଳୀ
ଏହା ବନ୍ଧନ୍ତେ କେମନ୍ତେ ଯିବ ନକଲି ।
ଅଥବା ଏହା କେହୁ ବାନ୍ଧ ନୁଆରିଲେ
ଆନ କସ ଅଛୁ ରାଜାଏ ବୋଇଲେ ।

ରାଜାଙ୍କର ବଚନ ଶୁଣିଲା ମହାଦଇତ
ଦୋହିତାକୁ ଆଣ ତୋର ସଭାର ଅଗ୍ରତ
କେମନ୍ତ ସ୍ୱରୂପ ତୋର ଦେଖିବା କୁମାରୀ
କନ୍ୟା ଦେଖିଲେ ସେ ଲକ୍ଷ ବନ୍ଧ ପାଶ ।
ଶୁଣିଣ ଆନନ୍ଦ ହୋଇଲା ଚନ୍ଦ୍ରକେଶୀ
ରକ୍ତବୀର୍ଯ୍ୟ ବଡ଼ୁଲାକ୍ଷ ରାଇଲ ବେଳ ଶିଶି ।
ବାବୁ ଚନ୍ଦ୍ରାବତୀକ ବେଳେ କରାଇଂ ଆଣ ସଏମ୍ବର ସ୍ଥାନକୁ
ନରେପି କରଣ ଦେଖାଅ ରାଜାମାନଙ୍କୁ । ୬୫୦ ।
ପିତାର ଆଜ୍ଞାରେ ଚଳାଇ ରକ୍ତବୀର୍ଯ୍ୟ
ଅଲଙ୍କାର ଯୁଗତେ ଚନ୍ଦ୍ରାବତୀକ କଲେ ସଜ ।
ହୁଦଣ୍ଡ ପାଟଛତ୍ର ଅନେକ ଉଡ଼ନ୍ତ
ଦୁନ୍ଦଭି ଶବଦ ଯେ ଗୁମୁରେ ବଜାନ୍ତ ।
ସରଗୁଣା ବେଣୁ ବୀଣା ବଇଂଶୀ ଅଧାଟି
ଜଗୁଜନ ମୋହନ ଗୁମୁରେ ତାଣ୍ଡବ ନୃତ୍ୟ ଗୀତେ ଖଟି ।
କନେକର ଚମ୍ପେକ ଆଲଟ ବିଞ୍ଚଣୀ
ଚାଲନ୍ତ କାମେନୀ ମୋହୋନ କାମସେଣି ।
କଟରଣ ଅର୍ଘ୍ୟ ଦେନ ଦଅନ୍ତ ହୁଳହୁଳି
ଅଭଏ ବଳାସୁଣୀ ମଙ୍ଗଳ ଧୁନ କରି ।
ରାଜାମାନେ ବୋଇଲେ ଏତେ କନ୍ୟା ରତ୍ନ ମଣି
ରୂପ ନରୋପକ୍ଷେ ଏ ପାଙ୍କଣ ତୁଲ ଜାଣି ।
ଦନ ନଅଣ୍ଡି ବ ଏହା ସ୍ୱରୂପ ବର୍ଣ୍ଣିବାକୁ
ନ ଥିଲା ଉପରେ ନ ଥିଲା ତଳକୁ ।
ଏହାର ମୁଖ ଚନ୍ଦ୍ରମାକୁ ପଟାନ୍ତର ନପାରି
ଚନ୍ଦ୍ରମା ତନୁ ତ ଦେଖିଣ ଖିନ କରି ।
ରତ୍ନକୁ ପଟାନ୍ତର କରନ୍ତୁ ଅବା କାଏ
ସେହି ମଳିଣ ଦଟଇ ଏହାର ତେଜମଏ । ୬୬୦ ।
ବସ୍ତ୍ରର ଯୁଗତେ ନୋହିଲୁ ଆମ୍ଭେ କଛୁ
କ ଅବା ବଜେ କଲା ଏଥି ପରମ ଲକ୍ଷ୍ମୀ ।
ଆମ୍ଭେ ରାଜାଗଣେ ହୋଇଲୁ ତାରା ବୃନ୍ଦ
ଏ ଗୁଣବାନ କନ୍ୟା ଆମ୍ଭଙ୍କୁ ହୋଇଲାକ ଚନ୍ଦ୍ର ।
ଏହେଣ୍ଟେକ ବଡ଼ମୂଣ୍ଡ ଯେବେ ହୋଇଲା ଆମ୍ଭଙ୍କୁ
କଥା ରହିଲାକ ଘର ଯେ ଯୁଗକୁ ।

ଆହୋ ଚଚଂଲ ଦେଶର ରାଜା ଚନ୍ଦ୍ରମଉଳ
ସେ ବୋଇଲ ଗୋସାଇଁ ଶୁଣିମା ସବଂବଳୀ ।
ଯାହାର ଯେହ୍ନେ ଦକ୍ଷ ମଣିସ୍ତମ୍ଭ ବନ୍ଧବ
ସୁନ୍ଦର ହୋଉ କି ବିରୂପ ହୋଉ କନ୍ୟା ଯେନିବ ।
କନ୍ୟାର ରୂପ କଂପା ନିରେପିଣ ଦେଖ
କେ ବଳବନ୍ତା ଅଛୁ ବନ୍ଧକନା ଲକ୍ଷ ।
ଏହେଣ୍ଟେକ ବିଗ୍ଭର କରନ୍ତ ରାଜା ମହାବଳବନ୍ତା
ଧରୁ ଧନୁ ଭୁଜେ ଦ୍ରାକର୍ମେ ଶକତା ।
ଅନୁଟର ଦେଶର ରାଜା କର୍ଣ୍ଣକେଶୀ
ଧନୁ ଏକ ଧରି ସେ ସଭାରୁ ଉଠିଆସି ।
ଅଧ କର୍ଣ୍ଣିତ କରି ବନ୍ଧିଲକ ଶର
ବେଳ ତାଳ ନାରାଜେକ ପଶିଲ ମଣିସ୍ତମ୍ଭ ଭିତର ।
କନ୍ଦୁକ ଦେଶର ରାଜା କର୍ଣ୍ଣମାଳ
ସେହି ନାରାଜେକ ବନ୍ଧିଲା ମହାବଳୀ । ୭୦ ।
ଭାଲେକ ଗଣ୍ଡାରେ ପେଷିଲକ ଶରେ
ଲକ୍ଷ ସବି ନୋହିଲ ଟିପ ଲକ୍ଷର ଉପରେ
ଅହୋ ଦକ୍ଷ ରାଏ ପ୍ରତଗ୍ୟା ସମରଥା
ଏମନ ସମଏ ମଏଷାସୁର ଶୁଣିଲ ବାରତା ।
ଯେବଣ ରାଜାମାନେ ନାରାଜ ବିନ୍ଧନ୍ତ ନାରାଜ ଅଧ ଗହନେ
ଲକ୍ଷେ ନଛୁଟିଲ ଲଜ୍ୟା ପାଇଲେ ସେହୁମାନେ ।
ଏମନ ସମଏ ମଏଷାଂସୁର ଆସଇ
ଧାତାର ମନ୍ତ୍ରେ ସେ ଗୋପ୍ୟେ ଆକାଶଇ ।
କନ୍ୟା ରୂପ ଦେଖଇ ସେ ହୋଇ ଶୂନ୍ୟବାସୀ
ଧାଡକାରେ ପ୍ରବେଶ ହୋଇଲକ ଆସି ।
ସୁର ଦୁନ୍ଦଭି ଯେହ୍ନେ ବାଜିଲା ଶବଦ
ରାଜାମାନେ ଦେଖି ହୋଇଲେ ବିଷାଦ ।
କେଶ ଝିଙ୍ଗୁ ବିକଟ ଦନ୍ତ ଉର୍ଦ୍ଧବାହୁ
ଚନ୍ଦ୍ରକୁ ଦେଖି ଯେହ୍ନେ ଘୋଟି ଯାଇ ରାହୁ ।
ଅଦଭୁତେ ସ୍ଥମ୍ଭୀଭୂତ ଅସୁର ଦେଖି
ଭଏଣ ରାଜାମାନେ ପଳାଇଲେ ସଏମ୍ବର ଉପେଖି ।
ସଭର ଭିତରେ ଯାଇ ପ୍ରବେଶ ହେଲା ମଏଷାଂ
ପଳାବନ୍ତ ଦେନ୍ୟ କେହି ନ କରନ୍ତି ଭରସା ।

ମଏଷାସୁର ଦେଖି ପଳାବନ୍ତି ରାଜାଙ୍କର ଆଠ
ଆରେ ରହ ରହ ବୋଲି ଋକ୍ଷବାର୍ଯ୍ୟ କରଇ ମୁରାଟ ।
ମଏଷାସୁର ବୋଲଇ ରହ ରହ ଚନ୍ଦ୍ରନଉମି
ସଇନକ ରୁହାଇ ସମର୍ଥନା କର ତୁମି ।୬୮୦।
ମୁହିଂ ତୋର ବ୍ରତ ପୂରାଇବି ନରପତି
ମୋହୋର ଲଖ ବନ୍ଧିଲେ ନଅଇ କନା ଚନ୍ଦ୍ରାବତୀ ।
ଚନ୍ଦ୍ରନଉମି ବୋଇଲା ଆମ୍ଭେ ଅଟୁଂ ସୋମବଂଶୀ
ପିତା ତୋର ରାକ୍ଷସ ମାତା ତୋର ରାକ୍ଷସୀ ।
ତରେ ଅବା ତୋତେ ବରଦେଲେ ପିତା
ଋଣ୍ଡାଲ ହରବକ ମୋହୋ ଦୋହିତା ।
ତାହାର ବଚନେ ସେ ଦାନବ ବୀର କୋପେ
ଲୋହଦଣ୍ଡ ଧନୁ ଏକ ଧଇଲା ବୀର ଦାପେ ।
ଯେବେ ବ୍ରତ କରିଅଛୁ ବନ୍ଧଇ ଆଗ ଲଖ
ବାଞ୍ଛାସିଦ୍ଧି କରଇ ତଲେ କରି ଦେଖ ।
ଅଗାଧ ସମୁଦ୍ର ଯେ ଗର୍ଜଇ ଅସୁର
ବ୍ରହ୍ମା ରୁଦ୍ର କଶ୍ୟପ ପ୍ରଚଣ୍ଡ ବକ୍ରଶିର ।
ଏ ସୁର ନାରାଯ ବସାଇଂ ପ୍ରଚଣ୍ଡ
ବନ୍ଧଇ ଅତି କୋପେ ବସାଇଂ କୋଦଣ୍ଡ ।
ବ୍ରହ୍ମାଣ୍ଡ ଉଛୁଳିଲା ଅସୁର ଗୁଣ ଦୃଷ୍ଟି
ନର୍ଘାତ ଜାଣିକରି ଚଳିଲା ମଣିସ୍ତମ୍ଭ ଫୁଟି ।
ଶତେକ ପଚଂବିଶ ଯୋଜନ ଅଟଇ ସ୍ଥଳୀ
ମଏଷାଙ୍କର ସୁର ନାରାଯେ ମଣିସ୍ତମ୍ଭେ ଗଲେ ଗଳି ।
ନାରାଯ ପରୀକ୍ଷ ଦେଖିଲେ ସ୍ୱର୍ଗବାସୀ
ସାଧୁରେ ମଏଷାଂ ବୋଲି ଧନ୍ୟ ଧନ୍ୟ ଋଷି ।୬୯୦।
ଯହୁଂ ସେ ଧ୍ୱନିକଲେ ଆକାଶେ ଦେବ ବାଣୀ
ମଏଷାଂ ଦାନେବ ସେ କନ୍ୟାକୁ ଯାଇଂ ଆଣି ।
ଆପଣାର ବର୍ଣ୍ଣ ଚିହ୍ନ ସେ କରିଅଛୁ ଗୋପ୍ୟ
କାମରୂପୀ ଦାନେବ ଅନଙ୍ଗ ସ୍ୱରୂପ ।
ଭଏଣ କନ୍ୟାକୁ ସେ ଘେନିଣ ଚନ୍ଦ୍ରନଉମି
ମଏଷାଂସୁର ଚନ୍ଦ୍ରାବତୀକ ପରିମାଣି ।
ଅନେକ ଉଚ୍ଛବ ସେ କରିଣ ନୃପବର
ସଙ୍ଗ କଲା ଦାନେବ ସେ ଯଶୋବନ୍ତୀ ପୁର ।

ବାଦ୍ୟର ଯୋଗାଡ଼ ସେ କରନ୍ତ ସର୍ବ ମଙ୍ଗଳ
ଅସୁର ପୁରେ ଶୁଣନ୍ତେ କଲେ ଅନୁକୂଳ ।
ସିଂହମାସ ଶୁକଳ ପକ୍ଷ ପଞ୍ଚମୀର ତିଥି .
ସ୍ୱାତୀ ନକ୍ଷତ୍ର ଭୂମି ବାର ଯୁଗତି ।
ତାର ନାମେ କରଣ ପ୍ରୀତି ନାମେ ଯୋଗ
ସେ ଦିନ ଅନୁକୂଳେ ଯେ ବିଭା କରନ୍ତି ଶୁଭ ।
କନ୍ୟା ବିଭାହୋଇ ସେ ଦାନବ ବୀରମଣି
ଅନେକ ଉଚ୍ଛବ ସେ ମଙ୍ଗଳ ଧୂନିବାଣୀ ।
କନ୍ୟା ଘେନି ମହିଷାସୁର ନିଜ ରାଜ୍ୟ ସଜ
କୋଳାଗ୍ରତ କରି ଧରଇ ସେ ରକ୍ତବୀର୍ଯ୍ୟ ।
ହୃଦେ ଅଭେଦ ତୁମ୍ଭେ ଅଛ ମୋର ସାଖା
ଯଇଲେକ ଜାଣିମି ମୁ ତୁମ୍ଭର ଭରଷା । ୭୦୦ ।
ମହିଷାସୁର ବୋଇଲା ଶୁଣ ପିତା ମୋତେ ଆଗ୍ୟାଂଦେବା ମହାରାଜ
ମୋହୋର ସଙ୍ଗେ ଦେବୁ ବିଡ଼ୁଲାକ୍ଷ ରକତବୀର୍ଯ୍ୟ ।
ଶୁଣି ଆନନ୍ଦ ସେ ହୋଇଲେ ନରପତି
ରକ୍ତବୀର୍ଯ୍ୟ ବିଡ଼ୁଲାକ୍ଷ ଦେଲା ଦୁହିନ୍ତ ।
ବଳେହା କାହାନେ ସେ ଜନପଦ ଯୋଧି
ମହିଷାସୁର ଆସଇ ସେ ସର୍ବକାର୍ଯ୍ୟ ସାଧି ।
ମହା ପ୍ରତାପୀ ହୋଇଂ ସେ କନ୍ଦଂଶୋପ
ଅନେକ ସମ୍ପରେ ସେ ବିଜଏ କୋଶଳ ଦ୍ୱୀପ ।
ରତି ଘେନି ଯେସନେ କାମଦେବ କରଇ ବିଜେ
ତେସନେକ ମହିଷାସୁର ପଶଇ ନିଜ ରାଜ୍ୟେ ।
ରକ୍ତବୀର୍ଯ୍ୟ ବିଡ଼ୁଲାକ୍ଷ ଦୁହିନ୍ତ ଘେନି ରାଜା
ଆପଣା ସମାନ୍ୟେ ସେ ଦୁହିନ୍ତ କରଇ ପୂଜା ।

—o—

## ମହିଷାସୁରର ଜମ୍ବୁଦ୍ୱୀପେ ଗମନ

**ଚମର** ଦେବମାଳ କାନ୍ତିମାଳା ରକ୍ତବୀର୍ଯ୍ୟ ବିଡ଼ୁଲାକ୍ଷ
ଏହାଙ୍କର ମୂଳେ ଯେ ପନ୍ଦର ସେବକ ।
ଏତେକ ସୈନ୍ୟ ଘେନି ମହିଷାଙ୍କର ମହାରାଜ୍ୟେ
ସମଦଣ୍ଡ ଘେନି ସେ ଜମ୍ବୋଦ୍ୱୀପେ ବିଜେ ।
ଧନୁମାସ ଶୁକଳ ପକ୍ଷ ପୂର୍ଣ୍ଣିମୀର ଦିନ
ଅର୍କବାର ପୁଷ୍ୟା ନକ୍ଷତ୍ର ଉତ୍ତମ ।

ଅନେକ ବୀରଭୂର ଯେ ଢମକ ନିଶାଣ ବାଜେ
ସମଦଣ୍ଡ ଘେନି ସେ ମଏଷାଂସୁର ବଜେ । ୨୧୦ ।
ମନ୍ତ୍ରୀଙ୍କର ମୁଖରେ ରାକ୍ଷସଙ୍କ ଭଏ ଶୁଣି
ସମସ୍ତ ଦେଶମାନଙ୍କରେ ନାସିଲେ ନୃପମଣି ।
ଭାଙ୍ଗନ୍ତି ନଗ୍ର ଯେ ଉଜାଡ଼ନ୍ତି ଦେଶ
ଗୋ ବ୍ରାହ୍ମଣ ପଡ଼ିଲେ ସେ ଭକ୍ଷନ୍ତି ରାକ୍ଷସ ।
ମନ୍ଦର ସମାନେ୍ୟ ଯେ ଅସୁରଙ୍କର କାୟା
ଶାର୍ଦ୍ଦୂଳ ବାହାନେ କେ ବାଘ ବଳେହା ।
ରକ୍ତବୀର୍ଯ୍ୟ ବିଡୁଲାକ୍ଷ ଭ୍ରମର ବେମାଳ କାନ୍ତମାଳା
ବିହରନ୍ତି ଦାନେବ କାଦମ୍ବରୀ ପାନେ ଭୋଳା ।
ବଜାବନ୍ତି ବଜ୍ରଘୋଷ ମର୍ଦ୍ଦଳ କଂସାଳ ଦାଉଣ୍ଡି
କଡ଼ା ଧୁମୁରା ଶବଦେ ମତୁଆଳ ନାଟଖଂଡି ।
ଏସନେକ ଦାନେବ ବିହରନ୍ତି ସୁଖେ
ବ୍ରହ୍ମାର ବରେ ସେ ନ ଯାନ୍ତି ଯମର ମୁଖେ ।
ଶରୀର ବଜ୍ର ଯେ ନ ବହନ୍ତି ଶର
ଗିରିବର ପଡ଼ିଲେ ହୋଅନ୍ତି ଶତେଚୂର ।
ନର ବାନର ଅଶ୍ୱ ଗଜ ସହିତେ
ସମସ୍ତ ଭକ୍ଷନ୍ତି ସେ ମଦିରା ସଙ୍ଗତେ ।
ବାଆନ ସାଗର ସଇନ ପାଚଂ ସାଗର ସେନା
କାଳଯମ ଦଂଡ ସେ ନଯାନ୍ତି ଗଣନା ।
କାଶୀଦେଶ କଉଶିକ ଦେଶ କୁରୁଜ ଦେଶ କନାଉଜ
ହେତେ ବିଖ୍ୟାତ ଦେଶ ଜିଣିଲ ସର୍ବରାଜ୍ୟ । ୨୨୦ ।
ଭଏଣ ପଳାନ୍ତି ଦନ୍ତେ କୋଠ ର ଧରଣ
ଧନ ଭଂଡାର ଦେଇ କେ ପଶନ୍ତି ଶରଣ ।
ଆହୋ ପକ୍ଷୀକ୍ଷ କାଷ୍ଠ ପାଷାଣ ଯେତେକ ମୃତ୍ତିକା ଦେବତା
ସମସ୍ତ ଭାଂଗିଣ ସେ କରନ୍ତି ନାଶଗତା ।
ମଠ ମଂଡପ ଯେ ଦେଉଳ ଜଗତି
ଧର୍ମ କୀର୍ତ୍ତିମାନ କାହିଂ ନ ଥୋଅନ୍ତି ।
ଆହୋ ଜମ୍ବୋଦୀପେ ଦେବତା ବ୍ରାହ୍ମଣଙ୍କର ବାସ
ସୁଜନ ପଂଡ଼ିତମାନେ କରନ୍ତି ଅଭ୍ୟାସ ।
ଯେତେବେଳେ ଦୁରାନ୍ତକ ମାଡ଼ି ଯାଉଅଛୁ
ଜନ ମନୁଷ୍ୟ ସହିତେ ନ ରହନ୍ତି କିଛୁ ।

ଯେସନେକ ବନସ୍ତ ଖଗଂନ୍ତ ବାତ ଘାତେ
ସେହିମତ ହୁଅନ୍ତି ଦଇତର ପାଦ ଘାତେ ।
ଦେବେ ଅପସରନ୍ତି ଯେବଣ ବଳ ଦେଖି
ମାନବ ମାନଙ୍କୁ ଗ୍ରର କସ ତାହା ଲେଖି ।
ଗାନ୍ଧାର ଦେଶ ପାରଜାତେକ ଦେଶନେ ପାଳି ଦେଶ ବାରସ୍ଥଙ୍ଗ
ସକଳ ଦେଶମାନେ ହୋଇଂଛନ୍ତି ସନ୍ଦନ୍ତି ।
ନାଟ ଶ୍ଲେଟ କର୍ଣ୍ଣାଟ ଉହୁଥ ଚୁନ୍ଦେଶ
ଭଗିଣ ନଗ୍ରନ୍ତ ଭଂଡାର ଜୂରକର ।
ସାଖାବତ୍ତପୁରେ ରାଜା ପଦ୍ମଲାଭ
ବରଞ୍ଚି ବରେ ତାହାର ମହିମା ଦୁଲଭ । ୭୩୦ ।

ପ୍ରତାପ ଦାନେବ ତୁଲେ ଚତୁରାଂଗ ବଳ
ସାଖାବତ୍ତପୁରେ ସେ ଚଳନ୍ତି ସକଳ ।
ରାଜାର ଆଗରେ ଯେ କହନ୍ତି ମୁନେହିଂ
ସ୍ୱାମୀ ତୋହୋର ରାଜ୍ୟକୁ ମଂଖାଂସୁର ବାହ୍ନ ।
ସିଂଘଳ ଦ୍ୱୀପ ରାଜା କ୍ଷଣି କମ୍ବୋଦୀପେ ପଶଇ
ଅନେକ ଉଜାଡ଼ି କରି ଭ୍ରଗଂଇ ଦେଶହି ।
ତାହାଲ ତୁଡ଼ଗଂ ସମସ୍ତ ଦେଶ ବହିଂ
ସ୍ଥମୁରେ ମିଳନ୍ତା ତାର କେହି ନାହିଂ ।
ନଗ୍ରମାନ ତେଜିଣ ବନସ୍ତେ ପଶନ୍ତି ରାଏ
ସମସ୍ତ ରାଜାଙ୍କୁଂ ଲାଗିଲା ବଡ଼ ଭଏ ।
ସମର କରିବା କି ଅଥବା ଯିବା ଘୁଞ୍ଚି
ଦଣ୍ଡଭଗଂ ହୋଇଲେ ପଶିଲେ ତ ଠାବ କାହିଂ ଅଛି ।
ମନ୍ତ୍ରୀ ବଚନେ ସେ ବୋଲଇ ପଦ୍ମଲାଭ
ଦଣ୍ଡ ସଜ କରଥାଅ ଦେଖିବା ସମ୍ଭବ ।
ବାହାରପୁରେ ଯେ ଉଚଂ ଜଗତି
ଜଗତି ଉପରେ ଉଠିଲା ପଦ୍ମଲାଭ ନୃପତି ।
ଗୃମର ବେମାଳ କାନ୍ତିମାଳ ଥାଠରେ ଆଗିଅଣି
ରାକ୍ଷସ ବଳ ଦିଶଇ ଦୁତି ସମୋଦ୍ର ଜାଣି ।
ମନ୍ତ୍ରୀ ଆଗେ ପଦ୍ମଲାଭ ଦାନେବ ପ୍ରକାଶଇଂ
ପଶ୍ଚିମଦିଗ ମାନ ସମୋଦ୍ର ମାଡ଼ି ବସଇ । ୭୪୦ ।

ମନ୍ତ୍ରୀ ବୋଇଲା ସେ ସମୋଦ୍ର ନୁହଇ ରାଏ
ମଂଷାର ସଇନ ସେ ଦିଶଇ ଜଳ ପ୍ରାଏ ।

ମନ୍ତ୍ରୀ ବୋଇଲା ନେତ ଧାତାଙ୍ଗ ଉତନ୍ତ ପସ୍ଥାଣେ
ବକ ପକ୍ଷୀ ପ୍ରାଏ ସେ ଛନ୍ଦ ଗ୍ରୀମର ଗହଣେ ।
ସଇନ୍ୟ ଆସୁଅଛୁ ସେ ପାଞ୍ଚକୋଶ ମାଡ଼ି
ସିନ୍ଧୁ ଘୋଷ ପ୍ରାଏକ ସେ ଶୁଭୁଅଛୁ ମୁଖ ରଡ଼ି ।
ପଞ୍ଚବିଂଶ ଯୋଜନ ବସିଲାକ ସଇନ୍ୟ
ଘଡ଼ିକର ମଧ୍ୟେଂ ହୋଇଲେ ଯୋଜନ ଶୂନ ।
ପୁଣି ନିମିଷକେ ଜଗତାରୁ ଓହ୍ଲାବନ୍ତେ
ଗଡ଼ ବେଢ଼ିଲେ ଆସିଣ ଦୁରନ୍ତେ ।
ଗଡ଼ କପାଟ ପାଡ଼ିଣ ସେ ରହିଅଛନ୍ତି ମହାରାଜା
ଭିତରେ ଥାଇ ଡାକନ୍ତି ବାହୁଡ଼ିଣ ଯା ଯା ।
ସେ ରାଜା ଅରୁଣ ରାଜାର ବଂଶୀ
ଅନନ୍ତ ଅଭୟ ବର ପାଇଲା ବିରଞ୍ଚିଙ୍କ ତୋଷି ।
ତାହାର ନନ୍ଦନ ହୋଅଇ ଅନନ୍ତ ଦଇତ
ମାତାଙ୍ଗସୁର ବୋଲି ତାହାର ନିଜ ସୁତ ।
ମାତାଙ୍ଗର ସୁତ ଅଟଇ ଝିଗିର
ଏହାର ନନ୍ଦନ ଦୁନ୍ଦଭି ନାମେ ବୀର ।
ଦୁନ୍ଦଭି ନନ୍ଦନ ଅସୁର ଦୁମାଳା
କଙ୍କାସୁର ବୋଲି ତାହାର ପୁତ୍ର ହୋଇଲା ।
କଙ୍କାସୁର ନନ୍ଦନ ଧଙ୍କାସୁର ବୋଲି
ବକାସୁର ବୋଲି ତାହାର ପୁତ୍ରେକ କହିଲି ।
ବକାସୁରର ପୁତ୍ର ବନ୍ଧାସୁର ବୀର
ଶନ୍ଧାସୁର ବୋଲି ଯେ ଏହାର କୁମର ।
ଶନ୍ଧାସୁରର ପୁତ୍ର ଯେ ଅସୁର ସୁଲଭ
ଏହାର ନନ୍ଦନ ଯେ ଅଟଇ ପଦ୍ମଲଭ ।
ପଦ୍ମଲଭର ରାଜାର ଦୁଇ ପୁତ୍ର ବୋଲି
ବଜ୍ରଲଭ ସିଉଲଭ ପୁତ୍ରଏ କହିଲି ।
ଆମ୍ଭେ ଅଟୁଂ ଯେ କଉଣପ ବଂଶୀ
ତୁମ୍ଭର ଆମ୍ଭର ଏକ ଗୋତ୍ର ଏକ ରାଶି ।
ବିଡ଼ାଳାକ୍ଷ ବୋଇଲା ଆମ୍ଭେ ତାହା ନ ଜାଣୁ
ଶରଣ ପଶିଲେ ସେ ଶିବ ବୋଲି ଜାଣୁ ।
କୋପେଣ ଆଗ୍ୟାଂ ସେ ଦେଲା କାନ୍ତମାଳ
ଧାଆଂରେ ଗଡ଼ରେ ଲଗାଅ ଶାବେଳୀ ।

ଯନ୍ତ୍ରୁଂ ମେ ଆଗ୍ୟାଂ ଦେଲ ସେନାପତି ବଡ଼
ଲାଗିଲେ ଯେ ସଇନ ଶାଖାପୁର ଗଡ଼ ।
ପଦ୍ମୁଂଲଭ ସଇନ ଗଡର ଭିତରେ
ବୃନ୍ଦନ୍ତି ଶର ସେ ଅନର୍ଯାପ ସମରେ ।
ବଜ୍ରବାଣ ବ୍ରଘାତ ଅବାର ଅଗ୍ନିଶରେ
ଅନର୍ଯାପ ବାଣ ପଡ଼ନ୍ତି ଉପରେ । ୭୬୦ ।
ଯନ୍ତ୍ରୁଂ ସଇନ ବନ୍ଧିଲେ ଗଳଗାଜି
ମଇଂଷାର ସଇନ ପଳାଇଲେ ଭାଜି ।
ସଇନ ପଳାନ୍ତେ ଉଠିଲେ ରକ୍ତବୀର୍ଯ୍ୟ
ଦ୍ୱାରେ କପାଟ ଲାଗିଲା ମହାରାଜ ।
ବଡ଼ୁଲାକ୍ଷ କାନ୍ତମାଳା ଭ୍ରମର ଛବିମାଳ
ପାଞ୍ଚ ମର୍ଦ୍ଦିତ ସଇନ ଉଠିଲେ ଅଗ୍ରୁର୍ଗଳ ।
ବଜ୍ରେ ନିର୍ବାଣ ଏହାଙ୍କର କାଯ୍ୟେ
ଶକ୍ତି ଅଗ୍ନିବାଣେ ଅଟନ୍ତି ନିର୍ଭଏ ।
ପଦ୍ମଲଭ ସଇନ ବନ୍ଧନ୍ତେଣ ଶର
ଦେହେ ପଡ଼ି ନାରାଯ ହୋଇଛନ୍ତି ଚୂର ।
ଗର୍ଜନ୍ତି ଦାନେବ ଯେ ପ୍ରଚଣ୍ଡ ମହାବଳୀ
ଭାଙ୍ଗିଲେ ଗାଟେଣ୍ଟ ଲଗାଇଲେ କାଙ୍କାଶାବେଳି ।
ଝଣାର ଭିତରେ ଗଡ଼ ପକାଇଲେ ଭାଙ୍ଗି
ଦାନେବ ବଳ ସଇନ ପଶିଲେ ଗଳଗାଜି ।
ପଦ୍ମଲଭ ରାଜା ସନ୍ୟବଳ ଦେଖି
କୋପେଣ ବୋଇଲା ମାର ଜୀବନ ଉପେଖି । -
ଏକ ମୁଖ ହୋଇଣ ଉଠିଲେ ସନ୍ୟବଳ
ବାରଣ ନ ଗଲା ସଇନ ହୋଇଲା ମହାଗୋଳ ।
ଉଭଏ ବଳ ସଇନ ହୋଇଲା ଏକ ଭେଟ
ଗଦା ଖଡ଼ଗ ପ୍ରହାର କରନ୍ତି ଦର୍ପିଷ୍ଟ । ୭୭୦ ।
ମଂଷାର ସଇନ ପ୍ରହାର କଲେ ଶର
ଛାଡ଼ିଲା ସଇନ ପଦ୍ମଲଭ ରାଜାର ।
ଅଶୀ ସହସ୍ର ପଡ଼ିଲେ ଦୈତ୍ୟବୀର
ଯଦାନ୍ତି ଅଗଣିତା ସଇନ ଅକଳ ।
ରକତେ କର୍ଦ୍ଦମ ହୋଇଲା ବସୁନ୍ଧରୀ
ସଖି ନଗ୍ର ଭାଙ୍ଗି ହୋଇଲାକ ଚୂର ।

ପାଟେଶ୍ୱ ଝାଇ ଖଣା ଜଗତ୍ତି ଅଛାଳି
ମଷାଂର ସଇନ ଖର୍ଣ୍ଣି ସମସ୍ତ କଲେ ଧୂଳି ।
ଅସୁର ସଇନ ପଳାଇତ ନାହିଂ ବାଟ
ଜୀବନ ନ ଆଶି ହୁଅନ୍ତୁ ଦୁଇ ବଳ ଭେଟ ।
ସଇନ ସମର ସମ୍ଭବ କହିଂତ କ ପାର
ଉଭଏ ବଳ ସଇନ ଅନ୍ୟୋଅନ୍ୟ ପଡ଼ି ।
କେହ୍ଣି କାହାକୁହ୍ଣ ନୋହନ୍ତ ବୀରେ ଓଛେ
ବେନ ଥାଠରୁ ପଡ଼ନ୍ତ ଲକ୍ଷେ ଲକ୍ଷେ ।
ସଇନ ହତ ଦେଖି ଉଠଇ କାନ୍ତମାଳ
ରକ୍ତବୀର୍ଯ ବଡ଼ୁଲାକ୍ଷ ଗୃମର ମହାବଳ ।
ଏ ପାଞ୍ଚ ଯୋଧାଏ ଜିଣି ପାରନ୍ତ ସ୍ୱର୍ଗ
ମହୀ ଟଳ ଟଳ ଦୋହିଲେ ସର୍ବ ଦଗ ।
ପଦ୍ମଲଭର ସୈନ୍ୟ ସମରେଣ ଆସି
କକଡ଼ା ବୃଷ୍ଟିକାଣି ଶରନ୍ତ ବରଷି । ୭ ୮ ।

ଅଶୀ ମର୍ଣ୍ଣ୍ଡ ଯୋଧ୍ୟା ତୁଳେଣ ଯେନ
ଯାବତେ ଭେଟିଲେ ଗୃମର ବେମାଲ ବେନ ।
ଲୋହ୍ନ ଶର ଶକଠ ନ କରନ୍ତ ଭଏ
ବଜ୍ର ସମାନ୍ୟେ ଯେବଣ ବୀରଙ୍କର କାଏ ।
କାନ୍ତମାଳା ପ୍ରହାରେ ଉଡ଼ି ପଡ଼ିଲେ ଅନେକ ଯୋଧ୍ୱ
ଶାଖାପୁରେ ଆକ୍ଳୋଳ ବହିଲ ରକ୍ତ ନଦୀ ।
କାନ୍ତମାଳାର ତେଜ ମନ୍ଦର ଗିରି ପ୍ରାଏ
ପଦ୍ମଲଭ ସୈନ୍ୟ ଦେଖି କଲେ ଭଏ ।
ଅନେକ ଯୋଧ୍ୟା ପଡ଼ିଲେନ ରଣେ
ଦେଖି ପଦ୍ମଲଭ ଉଠଇ ଆପଣେ ।
ପଞ୍ଚଷଠୀ କୋଟି ବଳ ଅଛଇ ତାର ତୁଲେ
କାନ୍ତମାଳା ଅଗ୍ରତେ ଆସିଣ ମିଳିଲେ ।
ଦେଖି ପଦ୍ମଲଭ ପଚ୍ଚରନ୍ତ କାନ୍ତମାଳ
ଆହ୍ମୋ ଅନମିତ କାରଣେ କମ୍ପା ଧଂସିଲୁ ମୋର ବଳ ।
କାନ୍ତମାଳା ବୋଇଲ ନ ଜାଣକ ତୁମ୍ଭେ
ବ୍ରହ୍ମାଣ୍ଡଜଡା ମଏଷାସୁରଟି ଆମ୍ଭେ ।
ସମସ୍ତ ଦଗ ଜିଣିଲୁ ଆମ୍ଭେ ସର
ଏ ମଏଷାସୁରକୁ କେ ଅବା ନୋହିଲ ସାଧ୍ୟକାଷ୍ଣ ।

ଜମ୍ଭୋଦପେ ଜିଣିଲୁ ସମସ୍ତ ରାଜା ଗଣ
ଏକା ନାରଜଙ୍କେ ତୋହୋର କସ ବଡ଼ପଣ । ୭୯୦ ।
ଏବେ ହୋ ଆସ କରାଇବା ଦର୍ଶନ
ମହାମନ୍ଥନ ସ୍ୱାମୀ ହୋଇବେ ପ୍ରସନ୍ନ ।
ପଦ୍ମଲଭ ବୋଇଲା ଗୁଡ଼ିଲ ଅନେକ ଶାଖା
ଆବର ହନ୍ଧ ପଣ କ ଅସୁର ଇଚ୍ଛା ।
ପଗ୍ରୁ ଜଗ୍ରୁ ମହିଷା ବଳନ୍ଧ
ପାଞ୍ଚ ଲକ୍ଷ ଯୋଧ୍ୟା ଘେନ ପଦ୍ମଲଭ ଘୋଟଇ ।
ଦେଖିଣ କୋପ କଲା ସେ ରକ୍ତବୀର୍ଯ୍ୟ
ଅନେକ ଯୋଧ୍ୟା ଘେନ ସେ ଧାଇଁଇ ମହାରାଜ ।
ପଦ୍ମଲଭ ରାଜାର ଯାଇଁ ଧଇଲାକ କେଶ
ଖଡ଼ଗେ ମାର ତାହାକୁ ପ୍ରାଣେ କଲା ନାଶ ।
ପଦ୍ମଲଭ ରାଜା ହୋଇଲା ପ୍ରାଣଛେଦା
ବେଢ଼ିଣ ମାଇଲା ସେ ଅନେକ ଦନୁଜା ।
ବଜ୍ରଲଭ ସିଦ୍ଧଲଭ ଧଇଲେ ଦୁହିନ୍ତ
ଗ୍ରାମୁରେ କଲେ ନେଇଂ ମଂଖୋସୁର ନୃପତି ।
ଯୁଧ୍ୟର ବେଭାର କହିଲେ ରକ୍ତବର୍ଯ୍ୟ
ଅସୁର ଅନେକ ପଞ୍ଚିଲେ ଦନୁଜ ।
ମୁଣ୍ଡଂ ନାଶକଲ ଦେବ ପଦ୍ମଲଭ ରାଜାଙ୍କୁ
ଧର ଅଣିଲ ତାର ଦୁଇ କୁମାରଙ୍କୁ ।
ବାଲ୍ଲୁଭ ହୋଇ ଏ ଅଟନ୍ତି ମହାବଳ୍ପା
ଗୁମ୍ଫର ମହିମା ଏ ଜାଣନ୍ତି ସର୍ବଗ୍ୟା । ୮୦୦ ।
ସ୍ୱାମୀ ଆମ୍ଭର ହୋଇ ଏ ଶାଖାପୁରେ ହୋନ୍ତୁ ରାଜା
ଥାଠ ସନ୍ୟ ଘେନ ଏ କରିବ ଆମ୍ଭନ୍ତ ପୂଜା ।
ବହୁତ ଦୁରସର କହିଲେ ରକ୍ତବର୍ଯ୍ୟ ।
ଶୁଣି ଦସ୍ତା କଲ ଦୁଷ୍ଟ ଦନୁଜ ।
ଆପଣେ ଶ୍ରୀ ହସ୍ତେ ଦେଲେ ରାଏ ଗାଢ଼ୀ
ଶାଖାପୁର ନଗ୍ରେ ତାହାଙ୍କୁ ଅଧିକାରୀ ।
ଗ୍ଲଭ ଲକ୍ଷ ରଥ ପାଞ୍ଚ ଲକ୍ଷ ହଏ
ଏତେକ ସନ୍ୟ ଖଟଇ ସିଦ୍ଧଲଭ ରାଏ ।
ଜସୁ ଭୁ ଆଦ ପ୍ରମ ଯୋଗ ଗିରି
ଜଗ ତାର ଦେବୁ ଯାହାର ଅନ୍ତ ତ୍ରକାଣି ।

ଚର୍ମିତ ନୁଆଁର ବାନ୍ଧିଲ ଯାହାର ଭବ
ତହୁଁ ସେ ନାମ ବହିଲୁ ମହାଦେବ ।
ଜସ୍ତୁ ତୁ ସକଳ ଧବଳ ମହାବଳୀ
ଅକାଶ ନିରାଳମ୍ବ ନାମ ଦେବ ଶୂଳୀ ।
ସଂସାର ସୁନ୍ଦର ଯେ ଦହିଲ ମହାଦେବ
ଭ୍ରୁକୁଟି ରୂପ ଧର ଦର୍ଶନ ସଦାଶିବ ।
ସ୍ୱାମୀ ସକଳ ଜନ ହିତେ କାଳ କୂଟ ବିଷ ଖାଇ
ବଇଲ ବାହାନେ ଦେବ ଡମ୍ବରୁ ବଜାଇ ।
ନିରାକାର ମାୟାଧର ମଦନ ଦହନ ନେତ୍ର
ଅନନ୍ତ ନାଗ ଭୂଷଣ ଅଙ୍ଗେଣ ପବିତ୍ର । ୮୧୦ ।
ଯାବତ ଜୀବରେ ଦେବ ତୁହି ସେ ଅଛୁ ଏକା
ଜଗୁଜନ ସୋଦର ନାଥ ତୁହି ସେ ତ୍ରିଅମ୍ବିକା ।
ତ୍ରିବେଣୀ ତ୍ରିପୁଣ୍ଡ୍ର ବିରାଜଇ ମଉଳି
ପାଦେଣ ପାଦୁକା ଯାହାର ଶିରେଣ ଧବଳୀ ।
ଧାତୁ ବାଦ୍ୟ ପୁଚୁଙ୍ଗ ଗୋପ୍ୟାନ ସଂଘଟ
ମତ୍ତ ରସ ଅଙ୍ଗେ ତାଣ୍ଡବ ନୃତ୍ୟ ନାଟ ।
ବାରାନଧି ଠାକୁର ମହେଶ୍ୱର ଯାର ନାମ
ଜାତ ଅନ୍ତ ମଧ୍ୟକୁ ତୁହି ସେ ମୂଳମନ୍ତ୍ର ।
ନୀଳକଣ୍ଠ ଚରଣେ ମମ ହୃଦେ
ବନ୍ଦସ୍ବନ୍ତ ସାରୋଳ ଦାସ ନୀଳକଣ୍ଠ ପଦ୍ମ ପାଦେ ।
ମଏଂଷାସୁର ବଗବକେ ହୋଇଲା ସଂପୂର୍ଣ୍ଣ
ଏନ ଲଏ କର ଶୁଣ ହୋ ସର୍ବ ଜନ ।
ଶାହାସ୍ତ ସଂଗତେ ଭଗତ ହୋଏ ଯେହ୍ନେ
ଟିକେ ଅନ୍ତ କର ପାରିବ ଲେଖନେ ।
ଅପାର କାଳରୁ ମୁ ଅପଣ୍ଡିତ ଗୋସୀ
ଶାହାସ୍ତ କର କସ ମୋହୋର ଶକତ ।
ଆମ୍ଭର ବେଦରୁ ଯେ ହୋଇଂଛୁ ଉକତ
ତାହା ମୁହିଂ ଯେ ଲେଖଇ ସଟିଂଛ ।
କଟେଂକପୁର ବାସେନୀ ପ୍ରସନ୍ନ ହୁଙ୍ଗୁଲା
ସେ ମୋହୋର ଶରୀରକୁ ତୁଳସୀ ବନମାଳା । ୮୨୦ ।
ଅନଦତ କର୍ମେ ମୋହୋର ସାରୋଳା ଚଣ୍ଡୀ ଖଟି
ମୂର୍ଖ ହୋଇଂ ପାଇଲି ମୁ ଶାହାସ୍ତ ପୋଥି ଗୋଟି ।

ଅଭଏ ନବ୍ରିକୁଳ ନଗୋ ଜଖେଂରପୁର ବାସୀ
ଯୋଗ ଅଭ୍ୟାସି କଳିକାଳ ଦର୍ପ ଧ୍ୱଂସି ।
ପରମ ଗଢ ମୋତେ କହିଲଲ୍କ ବୁଧି
ତାହାର ସଙ୍ଗେ ମୁ ଜାଣିଲି ସର୍ବସିଦ୍ଧି ।
ବନ୍ଦଂସିତ ନୀଳାନ୍ଦ୍ରି ଦଳ ଲୋଚନୀ
ନୀର ଅଦ୍ବାର ଶ୍ୟାମର ପ୍ରସନ୍ନ କାନ୍ତାମୀ ।
ହେ ବୁଧ ଜନେ ଶାହାସ୍ତ ମୋତେ ସକ୍ଷ ନୋହଇ
ସେ ମୋ'ତେ ରାଣେ ଯାହା କହଇ ମୁ ତାହା ଦବଯେ ଲେଖିଇଂ
ପ୍ରସନ୍ନ ମହାମାଇ ହେ ପର ଦୁଖେଣ ଦୁଷ୍ଟି
ସଦୟେ ଭଗତ ଜନଙ୍କର କଷ୍ଟ ଯେ ଉପେକ୍ଷି ।
ପ୍ରସନ୍ନେ ବରଦାନୀ ସିଧ୍ୟ ସାରେଳେ
ଶୂଦ୍ର ମୂର୍ଖ ସାରଳା ଦାସ ତୁଳସୀ ବଲ୍ଲଭ ପାଦ ତଳେ ।

—୦—

## ଶୁମ୍ଭ ଓ ନିଶୁମ୍ଭ ସଙ୍ଗେ ଯୁଦ୍ଧ ଓ ପରାଜୟ

ଏଥୁଂ ଅନନ୍ତରେ ପରକ୍ଷ ନାମେ ରାଜା
ଶୁକ ମୁନି ପାଦତଳେ କଲେ ଦିବ୍ୟ ପୂଜା ।
ମଏଷାସୁର ଜମ୍ଦ୍ୱୀପେ ଦିଗେବଳେ
ଅନେକ ଧ୍ୱଂସନେ କଲେକ ଦନୁଜେ ।
କହସି ମହାତମା ଅମୃତମଏ ବାଣୀ
ଆନନ୍ଦ ଆତ୍ମା ସାନନ୍ଦ ହୋଇ ଶୁଣି । ୮୩୦ ।
ଶୁଣ ପରକ୍ଷ ବଦସ୍ୟନ୍ତ ବ୍ରହ୍ମଂବେତା
ତୁ ଯାହା ପୁଛାକଲୁ ବସ୍ତୁ ପୁରାଣର ବାରତା ।
କନାଟ ଗଉଡ଼ ମାଳେବ ଢରଦ୍ରଢ
ଚନ୍ଦ୍ର୍ୟ ମହାଚନ୍ଦ୍ର୍ୟ ନେପାଳ ବାରସ୍ୱଣ୍ଡ ।
କୋଧ ମଲ୍ଲର କାଉଂର ବଗାଂଳ
ଖେଟ ମରହଟ ଲୋହିତ ଚୈମ୍ପାଳ ।
ଯେତେକ ଦେଶ ମଏଂଷାସୁର ଜିଣି
ଅନେକ ଧ୍ୱଂସି ମଏଷା ବନ୍ଦୀ କରି ସମସ୍ତ ଆଣି ।
ହସ୍ତୀ ଘୋଡ଼ା ଯୁଧ୍ୟାଂ ପୁନ ପଉନୀ ଦେଇଂ
ରାଜାମାନେ ଖଟିଲେ ସମସ୍ତେ ବନୋଇଂ ।

ଆହେ। ପଶ୍ଚିମ ସାଗର ସଙ୍ଗମ ମଉଦଧି ଦକ୍ଷିଣ କୂଳେଂ
କୂଳବତୀ ବୋଲି ଏକ ନଗ୍ର ପରମଳେ ।
ଛନ୍ଦୀ ବଡ଼ ସୋହୋଇ ଅନର୍ଯୀପ ମହାଦାନ
ସେ ନଗ୍ର ରାଜା ଶମ୍ଭୁ ନିଶମ୍ଭୁ ବୋଲି ବେନ ।
ସାଗର କୂଳେ ବାରିନିଧି ବଟ ତଳେ
ବ୍ରହ୍ମାଙ୍କୁ ତପ ଦୁହେଂ କଲେ ବାଲ କାଳେ ।
ସହସ୍ର ବରଷେ ଲୋହଗଡେ ପଶି
ସହସ୍ର ବରଷେ ନୀର ଆହାର ତୁଳସୀ ।
ସହସ୍ର ବରଷେ ପବନ ଆହାର
ସହସ୍ରେ ବରଷେ ଲୋଟିଲେ ଶରୀର ।
ପାଞ୍ଚ ସହସ୍ର ବରଷେ ଶରୀର ମିଳାଇ
ଉଇ ପୋକ ଚଢିଲେ ଧୂଳି ମତ ହୋଇଂ ।
ସହସ୍ରେ ବରଷେ ହୋଇଲେ ବଣ ବୁଦା
ଫୁଟିଣ ଦିଶିଲେ କାୟା ମହାସିଦ୍ଧ୍ୟା ।
ପରମ ନିରାକୁଳ ମହାତପ ସଞ୍ଚି
ନବ ସହସ୍ର ବରଷେ ବିଜେ କଲେ ବିରଞ୍ଚି ।
ପିତା ବୋଇଲେ ସେ ଦାନେବଙ୍କର ଆଗ
ମୁହିଂ ସେ ଦେବବର ବର ମୋତେ ମାଗ ।
କମଣ୍ଡଳ ଜଳେ ଅମୃତ କଲେ ବୃଷ୍ଟି
ସାଷ୍ଟାମ ହୋଇଲେ ବେଗେ ଶମ୍ଭୁ ନିଶମ୍ଭୁ ଉଠି ।
ବର ମାଗ ବୋଲି ବୋଲନ୍ତି ବିରଞ୍ଚି
ମାଗରେ ବର ମନେ ଯାହା ତୋର ଚିନ୍ତି ।
ସାଷ୍ଟାମ ହୋଇଂ ପଚାରନ୍ତି ଶମ୍ଭୁ ନିଶମ୍ଭୁ
ସ୍ୱାମୀ ପ୍ରତେ କରିବୁ ନିଜ ରୂପ ଦେଖିବୁ ।
ଆପଣା ନିଜ ରୂପ ଦେଖାଇଲେ ପିତା
ଶ୍ରୀ ବ୍ରହ୍ମ ବିରଞ୍ଚି ଧାତା ବ୍ରହ୍ମ ଚେତା ।
ଆଇଶ କୋଡି ଧନୁରୁ ଶିଶୁମୁନି
ଋକ ଯଜୁ ସାମ ଅର୍ଥ ବେଦ ସାଧନା ।
ନିଜ ରୂପ ଦେଖି ସେ ଶମ୍ଭୁ ନିଶମ୍ଭୁ
ସତ୍ୟ କର ଦେବ ବର ଯେବେ ଦେବୁ ।
ପିତା ବୋଇଲେ ହୋ ମମ ସତ୍ୟ ସତ୍ୟ
ଯାହା ମାଗିବ ତାହା ଦେବି ନିତାନ୍ତ ।

ଶମ୍ଭୁ ନିଶମ୍ଭୁ ପ୍ରସନେ ବର ଘେନ
ରକ୍ଷ ଦେବ କମଳ ଆସନେ ଆମ୍ଭେ ହୋଇବୁଂ ଚିରଞ୍ଜୀବ ।
ପ୍ରଳୟ କାଳରେ ନ ସରଇ ଶରୀର
ଚାରି ଯୁଗେ ଆମ୍ଭେ ହୋଇବୁଂ ଅମର ।
ପିତା ବୋଇଲେ ତୁମ୍ଭର ସବୁ ହୋଉ ସିଦ୍ଧି
ଯାହା ବାଞ୍ଛିଲ ତାହା ଅବଶ୍ୟ ହୋଇବ ବୋଧି ।
ଶୁଣି ସାନନ୍ଦ ହୋଇଲେ ଶମ୍ଭୁ ନିଶମ୍ଭୁ
ଏହେନ୍ତୁ ସମ୍ପଦ ନାଥ ପ୍ରସନ ହୋଇଂ ଦେବୁ ।
ଏତେକ ବର ଯେ ଦେଲେକ ବିରଞ୍ଚି
ଶମ୍ଭୁ ନିଶମ୍ଭୁ ମନେ ସବୁ ସଞ୍ଚି ।
ଏଥୁଂ ଅନନ୍ତରେ ବହନ୍ତା ପୁରୁଷେ
ଯାଇଂ କହିଲେ ସେ ନାରାୟଣ ପାଶେ ।
ସ୍ୱାମୀ ପ୍ରତାପୀ ଦାନେବ ଶମ୍ଭୁ ନିଶମ୍ଭୁ ବୋଲି
ବ୍ରହ୍ମା ତାହାଙ୍କୁ ପ୍ରସନ ହୋଇଲେ କାଲି ।
ଅପାର ବର ମାଗିଲା ତାଙ୍କୁ ଦେଲେ କମଳ ଆସନ
କୋଟି କଳ୍ପ ବର ପାଇଲା ଯାତୁଧାନ ।
ଅମର ବର ଯେ ମାଗିଲା ବହୁଟି
ଆବର ସଂସାରେ କ ହୋଇଂବ ଦ୍ରିଷ୍ଟି । ୮୭୦ ।
ବହନ୍ତା ପୁରୁଷଙ୍କର ଇଦଂ ବାକ୍ୟ ଶୁଣି
ଚଳ୍ତା ବସିଲ ଯେ ଦେବ ଚକ୍ରପାଣି ।
ଖର୍ବ ରୂପେକ ସେ ହୋଇଲେ ନାରାୟଣ
ଅତଅନ୍ତ ଛିନ ଦୁବଲ ଅଚଳ ।
ଶମ୍ଭୁ ନିଶମ୍ଭୁ ପଶୁଅଛନ୍ତି ଯେଉଣ ବାଟେ
ପଥ ଆବୋରି କରି ଶୋଇଅଛନ୍ତି ଜଳ ଘାଟେ ।
ଅବସ୍ଥା ପୁରୁଷ ଦେଖି ପଚାରନ୍ତି ଶମ୍ଭୁ ନିଶମ୍ଭୁ
ବୋଇଲେ କାହଂର ତୁମ୍ଭେ ଅଟରି ବାବୁ ।
ନାରାୟଣ ଗୁହଂ କହଂ ନ ପାରଇ କଥା
ପୁଣି ପୁଣି ଦାନବେ ପଚାରନ୍ତି ବାରତା ।
ମୁହଂ ଅଟଇଂ ଅନନ୍ତ ଦୀପର ରାଜା
ନିରାକାର ନୃପତର ଅଟଇ ଆତ୍ମଜା ।
ସମର ଭଏ ସହୁଂ ଲାଗିଲା ଆମ୍ଭଙ୍କୁ
ମୁହଂ ତପ କଲି ବ୍ରହ୍ମା ଦେବତାଙ୍କୁ ।

ଲକ୍ଷେ ଶତଷଠୀ ବରଷ ତପ କଲି
ଅନେକ ନରାଶ ହୋଇ ଏବେ ବସିଲି ।
ମୋତେ ପ୍ରସନ ଯେ ହୋଇଲେ ବିରଞ୍ଚି
କଲ୍ପ କଲ୍ପ କର ଆଇଶ ମୋତେ ସଞ୍ଚି ।
ସତ୍ୟ କର କହିଲ ସେ ମୋହୋର ଯେତେକ ଆଇସୁ
ତୋହୋର ହୋଇବ ଯେତେକ ବୟେସ । ୮୭୦ ।
କୋଟିଏ ବ୍ରହ୍ମାଣ୍ଡେ କେହି ତୋତେ ନୋହିବେ ସରି
ସମରେ ହାରିବେ ବ୍ରହ୍ମା ରୁଦ୍ର ହରି ।
ବ୍ରହ୍ମ ଶକତ ତ୍ରିଶୂଳ ଶକଢ ଅମୋହ ଶକଢ
ନାରାଏଣ ଶର ପଶୁପନ୍ଥ ଶର କାନ୍ତ ।
ମୋର ବର ପାଇଲାର ହେଲା ପାଞ୍ଚ ବରଷ ଛଡ଼ମାସ
ଏଡ଼େ ଦୁଖେ ଅରଜିଲାର କାହିଁତେ ଗଲା ନାଶ ।
ସେ ଧାତା ବର ମୋତେ ଦେଲେ ଯେଉଂ ଦନୁ
ରୋଗ ପ୍ରବଳ ହୋଇଲା ମୋର ତନୁ ।
ଏକା ପୁତ୍ର ଗୋଟିଏ ମୋର ଥିଲା
ବ୍ରହ୍ମାର ବରେ ତାହା ଈଶ୍ୱର ନାଶ କଲା ।
ବେନ ଗୋଟି ଭାରିଯା ଅଗାଧ ଜଳେ ବୁଡ଼ି
ଏହେନ୍ନେକ ଲକ୍ଷଣେ ମୋର ସମସ୍ତ ଗଲା ଗୁଡ଼ି ।
ଆହୋ ଶମ୍ଭୁ ନଶମ୍ଭୁ ଜାତ ହୋଇଲେ ମୃତୁ ଅଛୁ
ସେହି ବ୍ରହ୍ମା ପୁଣି ଜୀବ ପରିତ୍ୟାଗି ।
ତାହାକୁହି ପ୍ରାପତ ନୋହଇ ପରମ ପଦ
ରକ୍ତ ମାଂସ ବନ୍ଧିଥିଲେ ଅବଶ୍ୟ ପଡ଼ଇ ପରମାଦ ।
ଅନେକ ଦୁଖି ହୋଇଲି ମୁ ପୁଣ ଜାଣେ
ଦୟାକର ମୋହିଲା ମୋତେ ନୋହିଲା କାରଣ ।
ଯତନେ ପଢିଲି ଅଛି ତ୍ରିପନ୍ଥାର ପନ୍ଥେ
ଦୟାକର ଅବା ପୋଷି ପାରିବକି ମୋତେ । ୮୮୦ ।
ଅଷ୍ଟାଙ୍ଗ ଶରୀର ଯାକ ମୋର ରୋଗୀ
ଏହା ଭଲ କରିବ ବୋଲି ଖୋଜୁଥାଇ ଯୋଗୀ ।
ଆହୋ ମହାତମାଏ ତାହାକୁ ଯଶୋବନ୍ତୀ ବ୍ରହ୍ମାଣ୍ଡ
ଦେବଙ୍କର ମଧ୍ୟେ ସେ ଅଟଇ ବିଭଣ୍ଡ ।
ଆହୋ ଏକ ମୁଖେ ନୁଆଁରିଲି ବ୍ରତ
ଦେଖୁ ଦେଖୁ ଗୃହ ବଦନ ଅନ୍ତର୍ଧାନ ତା ଗତ ।

ଈଶ୍ୱରହିଂ ଜାଣଇ ତାହାର ମର୍ମଖଣ୍ଡି
କ୍ରୋଡ଼େ ମାଇଲ ମୁଣ୍ଡ ଛଣ୍ଡି ଛୁଣ୍ଡ ।
ଆହୋ ସଭିଏ ବୁଝିଅଛ ଏହାର ସର୍ଜନ ଜନପଣ
ଅପୂର୍ବ୍ୟେକ ଦେବତାଟି ଏ ମଧ୍ୟ ଭୁବନେଣ ।
ବହୁତ ମନ୍ଦପଣ ଅଟଇ ପଦ୍ମଯୋନି
ବେଶ୍ୟା ରମଣେ ଜାତ କଲା ବଶିଷ୍ଠ ମହାମୁନି ।
ଅନାଚାର ଅକର୍ମୀ ସେ ଅଟଇ ବିରଞ୍ଚି
ତାହାକୁ ନିନ୍ଦିବା କଲେ ହୋ ଫଳଶ୍ରୁତ ନାହିଂ କିଛି ।
ମନୁଷ୍ୟ ମଧ୍ୟେ ସେ ଅଟଇ କୁପୁରୁଷ
ସେ ବ୍ରହ୍ମାକୁଂ ତୁମ୍ଭେ ତପ ଅଭ୍ୟାସ ।
ଆହୋ କହୁଂ କହୁଂ ବଇକୁଳ ହୋଇ ଉଠଇ ପୁଣ ପୁଣ
ମହା ବଇକୁଳ ହୋଇ ଛାଡ଼ିଲା ନିଜ ପ୍ରାଣ ।
ଆଶ୍ଚର୍ଯ୍ୟ ହୋଇଲେ ଦେଖିଣ ଦୁହେଂ
ବଇକୁଳ ହୋଇ ଦେବ ଭାଳନ୍ତି ସନ୍ଦେହେଂ । ୮୯୦ ।
ବାହୁଡ଼ି ବସିଲେ ବଦ୍ରିକା ଆଶ୍ରମେ
ଦୁହେଂ ପୁଣି ତପକଲେ ବ୍ରହ୍ମାର ନାମେ ।
କହୁଣ ଅନ୍ତର୍ଦ୍ଧ୍ୟାନେ ହୋଇଲେ ଯାଇଂ ହର
ଗ୍ୟାନ କହୁଣ ଗଲେ ବୈକୁଣ୍ଠ ପୁରୀ ।
ଅନେକ ଲଏ କଲେ ଯାତୁଧାନ
ଜିତାମହ ଧାତାର ନ ଦେଖିଲେ ବର୍ଣ୍ଣଚିହ୍ନ ।
ତପ ସ୍ଥାନ ସେହୁ ଛାଡ଼ିଲେ ବେନି ଜନ
ଆକାଶ ଭୁବନେ ପୁଣି ଲେଉଟନ୍ତି ପଦ୍ମଯୋନ ।
ବ୍ରହ୍ମାକୁଂ ଲେଉ ପଟନ୍ତି ଯେବଣ ପୁରେ
ଦେବତାମାନେ କେହି ନ ରହନ୍ତି ଡରେ ।
ଅନେକ ପୁର ଧଂସନ କଲେକ ମହାବଳୀ
ଆକାଶ ଭୁବନେ ବହୁତ ହୋଇଲା ହାଲେହୋଳି ।
ଶୂନ୍ୟପଥେ ଗଲେ ବିହନ୍ତା ପୁରୁଷେ
ବିକଳ ହୋଇ କହନ୍ତି ପିତାର ପାଶେ ।
ସ୍ୱାମୀ ଆକାଶ ଦଗେ ବଳେ ଶୁମ୍ଭ ନିଶୁମ୍ଭ ବେନି
ଯମ ଦେବତା ସହିତେ ଛାଡ଼ିଲା ସଂଯମନୀ ।
ତପବର ପାଇଂ ଦେବ ନ ଲେଖନ୍ତି କାହା
ଉପାଏ ଚିନ୍ତା କରିବା ଦେବ ତାହା ।

ହମନ୍ତଙ୍କର ବଚନ ଶୁଣି ଦେବ ଧାତା
କରେଣ ବ୍ରହ୍ମଶର ଘେନିଣ ପଦ୍ମଜା ।
ବେନି ଭୁଜେ ଧନୁ ବେନି ଭୁଜେ ଶର
ମହା କୋପିତ ହୋଇ ସେ ହୋଇଲେ ବାହାର ।
ବେଦବର କୋପ ଦେଖି ଶମ୍ଭୁ ନିଶମ୍ଭୁ ବେନି
ପିତାର ଉପରକୁ ଧାଇଂଲେ ଶର ଘେନି ।
ଯହୁଂଣ ଦେଖିଲେ ଅସୁରଙ୍କର ମୂର୍ତ୍ତି
କୋପ ଦେଖି ଧାତା ହୋଇଲେକ ଶାନ୍ତ ।
ପିତା ଶାନ୍ତ ଦେଖି ଧଇଲେ ଗୃଣ୍ଡାଳ
ଆକ୍ଷେପି ବ୍ରହ୍ମାକୁଂ ମାଇଲେ କରତାଳ ।
ଗୃପୋଡ଼ ଘାତେଣ ଅସାଷ୍ଟମ ପଦ୍ମଜାଏ
କୋପେଣ ନିପଂଡ଼ ଯେ ଗଳତ ପିତା କାଏ ।
କ୍ଷଣକେ ମୋହ ସେ ଗ୍ରୁଡ଼ଣ ପଦ୍ମଯୋନି
ଦେଖିଲା ନୟନେ ଶମ୍ଭୁ ନିଶମ୍ଭୁ ବେନି ।
କହୁଂ କହୁଂ ପିତାମହ କୋପିତ ପ୍ରତାପ
ଶମ୍ଭୁ ନିଶମ୍ଭୁକୁ ଦେଲା ଅଭିଶାପ ।
ଆରେ ମୂର୍ଖ ଦାନବେ ମର୍ଣିତ ନୁଆରଲ
ମୋହୋର ଶିରେ ଆଣି ଆକର୍ଣ୍ଣ ଘାତ କଲ ।
ଏହୁ ଅସ୍ତ୍ରରେ ବେଲେ ତୁମ୍ଭ ଶିର
ଭସ୍ମହୋଇ ଦହନ ହୋଉ ତୁମ୍ଭ ଶରୀର ।
ଶାପ ପାଇଂ ଦୁହେ ତାଟେକା କଲେ କାଏ
ପ୍ରଳମ୍ବିତ ହୋଇଲେ ସେ ପିତାମହର ପାଏ ।
ଦେ ପିତାମହ କୋପ କରିବାକ ଶ୍ୟାନ୍ତ
ବନସ୍ତୁ ଦେଖି ସେ ଶ୍ୟାନ୍ତ ହୋଏ ପ୍ରଜାପତ ।
ଶୃନ୍ୟେଣ ବାଗ୍ଧୁ ଯେ ଶୁଭଇ ଶବଦ
ଶିଷ ହୋଇ ସ୍ୱାମୀକରେ ଚଳିଲ ପରମାଦ ।
ବହୁତ ପାତେକ ହୋଇଲା ବୋଲି କରନ୍ତ ବନଏଁ
ପୁଣି ଉଭହୋଇ ରହିଲେ ବସିଲ ସଦଏ ।
ଶମ୍ଭୁ ନିଶମ୍ଭୁ ବୋଇଲେ ଅବଧାର ଦେବ ପିତା
ଅଦ୍ଭୁତେ ପୁରୁଷେକ ଦେଖିଲୁ ଅବସ୍ଥା ।
ତୋର ବର ନିଦାକଲ ଦେବପିତା
ଅମ୍ଭକୁ ସଦଏ ସ୍ନେହେ କରସି କରତା ।

ଶମ୍ଭୁ ନିଶମ୍ଭୁ ଦୁହିଂଙ୍କର ବାକ୍ୟ ଶୁଣି
ଧ୍ୟାନେଣ ଜାଣିଲେ ଦେବ ଅନନ୍ତ ଚକ୍ରପାଣି ।
ସଦାଏ ଚଟଉଣ ବୋଇଲେ ପଦ୍ମଯୋନି
ଚନ୍ଦକୂଟ ବୁଦ୍ଧିରେ ପଡ଼ିଲ ତୁମ୍ଭେ ବେନି ।
ଆହେ ବ୍ରହ୍ମ ଈଶ୍ୱର ଆମ୍ଭେ ଅଟୁଂ ବରଦାତା
ବିଷ୍ଣୁକୁ ଲାଗଇ ସେ ସଂସାର ଚିନ୍ତା ।
ମୁହିଂ ସେ ଅଜାପୀପ ଦେଲି ଅମର ବର
ତେଣୁକରି ଚିନ୍ତା ଯେ କଲେ ଦାମୋଦର ।
ଆରେ ଶମ୍ଭୁ ନିଶମ୍ଭୁ ତୁମ୍ଭେ ଅମରହିଂ ସେ ହୋଇବ
ବ୍ରହ୍ମା ବିଷ୍ଣୁ ରୁଦ୍ର ସୁର ଲୋକଙ୍କୁ ଜିଣିମ । ୧୨୦ ।
ଏକର ଶିରେ ତୁମ୍ଭେ ଆରେକ ଦେବ ହସ୍ତ
ଶ୍ୟାଣ୍ଡାର ଜଳିବ ତୁମ୍ଭର ହୋଇବ ଭସ୍ମୀଭୂତ ।
କହିଣ ବେଦବର ଗଲେ ଅନ୍ତରୀକ୍ଷେ
ନିରାଧାର ବାକ୍ୟ ଫିଟିଲ ଚତୁର୍ମୁଖେ ।
ବାହୁଡ଼ି ଶମ୍ଭୁ ନିଶମ୍ଭୁ ଗଲେ ତତକ୍ଷଣେ
ପ୍ରବେଶ ହୋଇଲେ ଯାଇଂ କୁଳବତୀ ପାଟଣେ ।
ମହା ସମ୍ପଦରେ ସେ କରନ୍ତି ରାଜ୍ୟ
ଅନେକ ରାଜ୍ୟ ଜିଣି ଭୋଗ କରନ୍ତି ଅଭିଶୂର୍ଯ୍ୟେଁ ।
କୁଳବତୀ ପାଟଣା ଶମ୍ଭୁ ନିଶମ୍ଭୁ ରାଜ୍ୟେ
ତାହାଙ୍କର ରାଜ୍ୟକୁ ମଏଷାଂସୁର ଦଗ ବିଜେ ।
ଅନେକ ବାଦ୍ୟ ଯେ ବାଜଇ ନିଶାଣ
ଭୁଲେଣ ଅଛନ୍ତି ଯେ ବେନି କୋଟି ରାଜାଗଣ ।
ଯୋଧ୍ୟା ଅମନାତ୍ୟ କେ ପାରିବ କଳି
ପାଦ ଘାତେ କମ୍ପଇ ମହୀଆଳୀ ।
ଆସ୍ଥାନର ତଳେ କହିଲେ ମୁନେହ୍ନ
ସ୍ୱାମୀ ତୋହୋର ରାଜ୍ୟକୁ ମଏଷାଂସୁର ବାନ୍ଧ ।
ସୁତାପ ମହୀପତି ସେ ସିଂହଳ ଦେଶର ରାଜା
ସମସ୍ତ ଦେଶ ନରେ ପାଇଲା ବହୁତ ପୂଜା ।
ହଟିଲା ପଦ୍ମଲାଭ ଶାଖାସୁର ସଙ୍ଗଂ
ରାଜା ନାଶ ଗଲା ସେ ରାଜ୍ୟ ଗଲା ସ୍ୱର୍ଗଂ । ୧୩୦ ।
କାନ୍ତିମାଳା ଦାନେବ ସେ ଭ୍ରମର ବେମାଲ
ରକ୍ତବୀର୍ଯ୍ୟ ସେ ଧୂମଲୋଚନ ମହାବୀର ।

ଏହାଙ୍କର ମୂଳେ ଅନେକ ବଜ୍ରସେନାଧ୍ୟ
ଏକେକଂ ମନ୍ତ୍ରୀ କଣନ୍ତି ସେ ନ ଜାଣନ୍ତି ଗଣନା ।
ମୁନେନ୍ଦ୍ରଂକ ବଚନ ଶୁଣି ଦନୁଯ ବୀର
ଶମ୍ଭୁ ନିଶମ୍ଭୁ ବୋଇଲେ ତରେ ଆମ୍ଭର ଦଣ୍ଡ ସଜକର ।
ରାଜାର ବଚନେ ସେ ସାଜିଲେ ସଇନ
ଅନେକ ବାଦ୍ୟ ଯେ ଶୁଭଇ ଶଙ୍ଖଧ୍ୱନ ।
ବେନି ମଣ୍ଡିତ ରଥ ପାଞ୍ଚ ମଣ୍ଡିତ ନାଗ
ବାଇଶି କ୍ଷୋହଣି ବଳ ସାତ ବୃନ୍ଦ ତୁରଙ୍ଗ ।
ଏଭେକ ସନ୍ୟ ସାଜିଲେ ଶମ୍ଭୁ ନିଶମ୍ଭୁ ବେନି
କଟେକରୁ ବାହାର ହୋଇଲେ ସଇନି ।
ପାଞ୍ଚ ଯୋଜନ ମାଡ଼ି ରହିଲ ଏ ଥାଠ
ମହା ମହା ଦାନେବ ଏକୁ ଆରେକ ବଳିଷ୍ଠ ।
ଖଡ଼ଗ କୋନ୍ତ ନାରାଚ ଅଗ୍ନିପନ୍ତ ଯଷ୍ଟି
ଶାବେଳି କୋଦାଳ କୋଠାର ତେଜ ଯାଠି ।
ଝଟକନ୍ତି ନାକଂଆ ଯେ ବିଜୁଳି ତେଜ ଜାଣି
ସେନାଧ୍ୟଙ୍କର ଜଡ଼ିଲ ଅଛୁ ବାଳଅର୍କ ମଣି ।
ଟେଙ୍ଗାର ତୁରଙ୍ଗମ ପବନୁ ବେଗେ ବାଜୀ
ଖେଦନ୍ତି ଖୁରୁସାଣି ଘଣ୍ଟା ରାବେ ମହାତେଜି । ୧୪୦ ।
ଅସିପନ୍ତ ବୁଲାଇ ଉଠନ୍ତି ରାଉତେ
ଗଜନ୍ତି ଚଳାଇଂ ତର୍ଜନ୍ତି ମାହୁନ୍ତେ ।
ହାକନ୍ତି ଦାନେବରେ ହୋଇଲ ନିରେଖଇ
ଦୂରେ ଥାଇ ମଏଷାଂର ବଳ ଦେଖଇ ।
ଯନ୍ତୁଂ ତୁମ୍ବାଇଲେ ଶମ୍ଭୁ ନିଶମ୍ଭୁଙ୍କର ବଳ
ଆଗିଆଣି ଦଂଡରେ ଉଠିଲେ ରାମର ବେମାଳି ।
ବାନ୍ତମାଳା ଚଣ୍ଡୁଲାକ୍ଷ ଆବର ରକ୍ତବୀର୍ଯ୍ୟ
ଏକ ମୁଖ ହୋଇ ଉଠିଲେ ସମସ୍ତ ଦନୁଯ ।
ଉଭଏ ବଳ ସଇନି ଯେ ହୁଅନ୍ତି ଭେଟାଭେଟି
ଗଦା ମୁଦଗୁର ଲଙ୍ଗିଆ ସେ ହୋଇଲେ ପିଟାପିଟି ।
ରଣ ରଙ୍ଗ ଧନ୍ଦୋଳ ଯେ ଅକଳିତ ବଳ
ଆକାଶ ଛାପୁଅଛୁ ମୁଖର ଚହଳ ।
ଏସନେକ ସମର ଯେ ଲାଗିଲକ ବେନି
ଲାଉତେ ରାଉତେ ହୋଇଲେ ଅନ୍ୟୋଅନ୍ୟ ।

ଶମ୍ଭୁ ନିଶମ୍ଭୁଙ୍କର ସୈନ୍ୟ ସେ ବଜ୍ରାଙ୍ଗ ବୀରଘଣ୍ଟ
ଘୁମର ବେମାଳ ତୁଳେ ହୋଇଲେ ଏମାନେ ଭେଟ ।
ବଜ୍ରଘଣ୍ଟ ଧରିଅଛି ଯେ ଲୁହାର ବେଜ ଗଦା
ମହିଷାସୁର ସୈନ୍ୟ ଯେ ମାରି କଲା ପନ୍ଥା ।
ଯେସନେକେ ଆରତ ବାସଭଗ୍ନ ପକ୍ଷୀ
ମହିଷାସୁର ସଇନ ସେ ବୀରଘଣ୍ଟ ଦେଖି । ୯୫୦ ।
ସୈନ୍ୟ ଭଗ୍ନ ଦେଖି ସେ ବିଡ଼ାଳାକ୍ଷ କାନ୍ତମାଳା
ବୀରଘଣ୍ଟ ଚୁମ୍ବିରେ ମିଳିଲେ ମହାବୀର ।
ଲକ୍ଷେକ ନାରାଚ ପୁରାଇ ରକ୍ତବୀଜ
ବଜ୍ରାଙ୍ଗ ଉପରେ ସେ ପେଷଇ ଦନୁଜ ।
ନାରାଚ ପଡ଼ିଲା ସେ ବଜ୍ରାଙ୍ଗର ଅଙ୍ଗେ
ସମସ୍ତ ନାରାଚେ ପଡ଼ି ହୋଇଲେ ଭଙ୍ଗେ ।
ପୁଣ ପୁଣ ନାରାଚ ଯେ ପେଷଇ ରକ୍ତବୀଜ
ଶରୀରେ ନ ବହଇ ସେ ଦର୍ପିଷ୍ଟ ଦନୁଜ ।
ହସ୍ତର ବେଗ ସେ ଦେଖିତ ନୁଆର
ଲୋହ ଶର ଘାତେ ସେ ହୋଇଲେ ମରାମର ।
ଈଶ୍ୱର ସେବ ସେ ସବୁଙ୍କର ଦେହ ବଜ୍ର ଅଙ୍ଗ
ସମସ୍ତ ନାରାଚ ପଡ଼ି ହୋଇଲେକ ଭଙ୍ଗ ।
ଘୁମର ବେମାଳ ଯୁଧ କରନ୍ତି ବୀରଘଣ୍ଟର ତୁଳେ
ନବଲକ୍ଷ ଯୋଧ୍ୟା ଯେନ ଏକମୁଖ ହୋଇଂ ବୀରଘଣ୍ଟ ଉପରକୁ ଧାଇଲେ
ବୀରଘଣ୍ଟର ତୁଳେ ଅଛନ୍ତି ପାଞ୍ଚ ଯୋଧି
ନବ ଲକ୍ଷ ଯୋଧ୍ୟାକୁ ପଞ୍ଚ ମୁଖ ଶର ବିନ୍ଧି ।
କାମେକ ନାରାଚ ଭୃଗୁ ଋଷିଙ୍କର ଦେଲା
ତାହା ଯେନ ସେ ବୀରଘଣ୍ଟ ମହିଷାସୁର ସୈନ୍ୟ ମାଇଲା ।
ଏକା ପ୍ରହାରକେ ପଡ଼ିଲେ ଲକ୍ଷେ ଯୋଧି
ରୋଧିରେଣ କର୍ଦ୍ଦମ ହୋଏ ରଣ ମଝି । ୯୬୦ ।
ମାନେବ ସଖ୍ୟାଂ କାହ୍ନୁଂ ବୀରଘଣ୍ଟର ସମର
ବ୍ରହ୍ମାଅର୍କ ଲୋକଙ୍କୁ କଳାକ ଅଗୋଚର ।
ବେଜ ବଳ ଶର ବୃଷ୍ଟି ଗହନ ଶର ଘାଏ
ସବୁଙ୍କର ଶରୀର ମନ୍ଦାରି ପୁଷ୍ପ ପ୍ରାଏ ।
ଏସନେକ ସମର କରନ୍ତେଣ ବେନି
କାନ୍ତମାଳା ପ୍ରହାର କଲା ବୀରଘଣ୍ଟକୁ ବଜ୍ରାବଳୀ ଗଦା ଘେନି ।

ଭଞ୍ଜଣ ଗଦା ଯେ ହୋଇଲ ବେନି ଖଣ୍ଡ
ପୁଣି ମୁଦ୍ଗରେ ଘେନି ପ୍ରହାର କଲକ ଦୁଦଣ୍ଡ ।
ବୀରଘଣ୍ଟ ବକ୍ଷସ୍ଥଳେ ପଡ଼ି ହୋଏ ଚୂନା
ଢେଙ୍କେ ଗଦା ଘାତକୁ ସେ ନ କଲା ଗଣନା ।
ବେଳେ ବେଳେ ସମର ହୋଇଲା ମହାଘୋର
ବେନି ବେଳ ସଇନ ହୋଇଲେ ମହାରୋଳ ।
ପର ଆପଣା କେହ୍ନୁ ବାରିତ ନୁଆର
ଆପଣେ ଆପଣେ ହୋଅନ୍ତି ମରାମରି ।
ମଂଷାସୁର ସଇନ ଯେ ପଳାନ୍ତ ବଳ ଭାଜି
ଶମ୍ଭୁ ନିଶମ୍ଭୁ ଯେ ଉଠିଲେ ଗଳଗାଜି ।
ପାଞ୍ଚ ଯୋଯନ୍ତ ପରଯନ୍ତେ ପଳାଇଲେ ମଷାଂସୁର ସଇନେ
ଅନେକ ବଳ ଗୋଡ଼ାଇଂ ମାଇଲେ ଶମ୍ଭୁ ନିଶମ୍ଭୁ ବେନି ।
ଭଗ୍ନ ବଳ ହୋଇଂ ସେ ମଷାଂସୁର ଆସଇ
ବନସ୍ତ ଭିତରେ ବୃଷଂମାଲେ ପଶଇ । ୯୭୦ ।
ମଷାଂସୁର ରହିଲା ବୃଷଂଗିର ପଙ୍କତେ
ଶମ୍ଭୁ ନିଶମ୍ଭୁ ବେନି ରହିଲେ ନିଜ ପ୍ରଶସ୍ତେ ।
ଜୟତୁ ଭଗବାନ ହେ ନୀଳନ୍ଧଦଳ ରୂଚ
ଶ୍ରୀବତ୍ସ ଲାଞ୍ଛନ ଯାହାର ନାମ ଶ୍ରୀବନ୍ଧୁ ।
ସ୍ୱାମି ନିରାକୂଳ ପୁରୁଷ ହୋଇଂ ଭଗତ ମହ୍ଲା
ଗୋପେଣ ଗୋପୀ ରମଣେ ମଣ୍ଡସ୍ଥେଲା ।
ସ୍ୱାମି ଏ ଭବ ସଂସାର କଲ ହୋଇଲା ଅପର୍ଣ୍ଣେତ
ଭବ ପଥ ନିବେଦିବ ମୋହୋର ମନ ବାଞ୍ଛି ।
ସ୍ୱାମି ଏ ଭବ ସଂସାର କଲି କାଳ ଫାଶି
ଏ ଭବ ବନ୍ଧନୁ ପାରି କରି ମୋତେ ତବ ପୁରେ ଠାବ ଦେଇ
ମୁହିଂ ଏହା ଚିହ୍ନି ନ ପାରିବି ମନ୍ଦ ଗତେ
ମାୟା ମୋହ ଅନ୍ଧକାରରୁ ଉଦ୍ଧର ବାଶୁଦେବେ ।
ସ୍ୱାମି ଦେବାଦେବେ ମୁହିଂ ଜାଗଇ ତବ ଆଣେ
କଲି କାଳ ଭୈରବ ନାଥ ତବ ଉଦ୍ଧେଣେ ।
ସ୍ୱାମି ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ସମସ୍ତ ବୃନ୍ଦାଅର୍କେ
ଯାହାର ବକ୍ଷ ସ୍ଥଳେ ମାଳା ଉଦ୍ଧକେ ।
ନମାମି ନାରାୟଣ ଯାବତ ଚନ୍ଦ୍ର ଶିବ
ସମସ୍ତ ଜୀବ ନାଥ ତୁହି ହେ ଏକା ଥିବ ।

ସ୍ୱାମି ଅଭିନ୍ନ ଚନ୍ଦ୍ର ଚକୋର ବଦନ ଗୋଟି
ତଥି ଅମିଅ ରସ ପିବଇ ତବ ସୃଷ୍ଟି । ୧୮୦ ।
ଆହେ। ମନ ବଚନ କର୍ତ୍ତିବ୍ୟ ଦେଖିଲି ସଂସାର
ଆପଣେ ଆପଣେ ଦେଖିଲି ଅନକାର ।
ସ୍ୱାମି ତବ ଶସୂଳ ସ୍ପୃହିତ ସର୍ବ ରସ
ଆହେ। ଅହୋରାତ୍ରେ ନରେ ନାରାୟଣ ଅଭ୍ୟାସ ।
ଅକର୍ମଣ ଆପାଦ ଅଗ୍ୟାନ ମନ୍ଦ ଦୋଷୀ
ପାଇଲା ପରମଗତି ତବ ନାମ ଅଭ୍ୟାସି ।
ଶ୍ରୀକୃଷ୍ଣ ନାଥର ଚରଣେ ସତତେ
ବଦସ୍ୱନ୍ତ ସାରୋଳ ବାସ ଶ୍ରୁ ଦ୍ରମୁନି ତୁଳସୀ ହୃଦଗତେ ।
ହେ ବୁଧଜନେ ବିଚାର କର ଏହା
ଯଞ୍ଜେର ଭୁବନ ବାସୀ ସାରୋଳା ଚଣ୍ଡୀ ସାହା ।
ବଇକୁଣ୍ଠର ଦ୍ୱାରପାଳ ଜୟ ବିଜୟେ ବେନି
ତାହାଙ୍କୁ ଭେଟିଲେ ମନୁ ମହାମୁନି ।
ଅନାକାର ପୁରୁଷଙ୍କୁ ଦେଖିବାକୁ ମୁନି କଲେ ଶରଧା
ଜୟ ବିଜୟ ତହିଂ କଲେକ ନିରୋଧା ।
କରପତ୍ର କଇଲେଣେ ମୁନିମ୍ବର ବୋଇଲେ
କ୍ଷିନ ରୂପ ଦେଖି ତାଙ୍କୁ ଜୟ ବିଜୟ ପେଲି ଦେଲେ ।
ଜୟ ବିଜୟ ବେନିଙ୍କର କର ଘାତେ
ମନୁ ମହାଋଷି ଉଡ଼ିଲେ ଗଗନ ଗତେ ।
ଉଡ଼ିଣ ପଡ଼ିଲେ ଯାଇ ନବ ସହସ୍ର ଯୋଜନେ
ବିସ୍ମରନ୍ତ ଏତେ ଦୂରେ ପଡ଼ିଲୁ ପସ୍ତାଣେ । ୧୯୦ ।
ଚେତନା ପାଇଲେ ନବ ସହସ୍ର ଯୋଜନେ ପଡ଼ି
ପୁଣି ବଇକୁଣ୍ଠକୁ ସେ ଅଇଲେ ବାହୁଡ଼ି ।
ପୁଣି ବେଦ ଆଧ୍ୟାନେ କରପତ୍ରେ କଲ୍ୟାଣ କହ୍ନେ
ଅନେକ ଭର୍ତ୍ସନା ବୋଲନ୍ତ ଜୟ ବିଜୟ ।
କୋପେଣ ଶାପ୍ୟ ମୁନି ଦେଲେ ବ୍ରହ୍ମ ସୁତ
ଏ ସାର ବଇକୁଣ୍ଠ ଦ୍ୱାରପାଳ ହୋଇଂ ତୁମ୍ଭେ ଏତେକ ଉଦନ୍ତ୍ୟ
ମୁହିଂ ବାଳଖିଲ୍ୟ ମୋତେ କଲ ଏତେ କର୍ମ
ବେଲୁଂ ବେଳ ମୁନି ଯେ ବଢ଼ିଲା ଅତି ତମ ।
ବୋଇଲେ ଜୟ ବିଜୟ ତୁମ୍ଭେ ଅସୁର କୁଳେ ଜନ୍ମ ହୁଅ
ନ ଜାଣି ଦ୍ୱାରନ୍ତ ନିରୁଧିଲ ତହିଂର ଫଳ ପାଅ ।

ଶାପ୍ୟ ବହନ୍ତେ ଯେ ଜଏ ବଜଏ ଋଷି
ବ୍ରହ୍ମା ପୁତ୍ର ଯେ ତୁମ୍ଭେ ମନୁ ମହାଋଷି ।
ନ ଚିହ୍ନି ତୁମ୍ଭନ୍ତ ଆମ୍ଭେ କଲୁ ମହାଦ୍ରୋହ
ଖେ ମୁନି ଆମ୍ଭନ୍ତ ପ୍ରତକାର କହ ।
ମୁନି ବୋଇଲେ ଆମ୍ଭନ୍ତ କଲ ଘଣ୍ଟାଳ
ଅବଶ୍ୟ ଅସୁର ତୁମ୍ଭେ ହୋଇବ ରବ ତଳ ।
ମୁନି ବୋଇଲେ ଅବଶ୍ୟ ହୁଅ ଅସୁର
ବିଷ୍ଣୁ ଭଗତ କଲେ ଶତେ ଜନ୍ମେ ହୋଇବ ବଇକୁଣ୍ଠ ପୁର ।
କୃଷ୍ଣର ତୁଲେ ଯେବେ ହୋଇବ ବଇର ।
ତିନି ଜନ୍ମେ ଆସି ବଜେ ବୈକୁଣ୍ଠ ପୁରୀ । ୧୦୦୦ ।
ପ୍ରଥମ ଜନ୍ମେ ଯେ ହୋଇବ ହିରଣାକ୍ଷ
ବିଷ୍ଣୁର ଭିରଯା ହରବ ପ୍ରତକ୍ଷ ।
ଦୁଷ୍ଟଏ ଜନ୍ମେ ରାବଣ କୁମ୍ଭକର୍ଣ୍ଣ
ସୀତଯ୍ୟା ହରଣେ ଶିର କମଳ ଛେଦବେ ଶ୍ରୀରାମ ।
ତୃତୀୟ ଜନ୍ମେ ତୁମ୍ଭେ ହୋଇବ ଦନ୍ତବକ୍ର ଶିଶୁପାଳ
ରୁକ୍ମଣୀ ହର ନେଉଲେ ନାରାୟଣ ଛେଦବେ ଶିର କମଳ ।
ତିନି ଜନ୍ମେ ଦାସ ହରଣ ଚକ୍ରପାଅ
ମମ ଶାପ୍ୟ ପୁରାଇଂ ବଇକୁଣ୍ଠ ଦ୍ୱାର ପାଅ ।

ଜଏ ବଜଏ ଦ୍ୱାରପାଳ ମନୁ ଋଷିଙ୍କର ଶାପେ୍ୟ
ଦୁହେଂ ଜନ୍ମ ହୋଇଲେ ସେ ଅସୁର ସ୍ୱରୁପେ ।
ଦ୍ୱାର ଶୂନ୍ୟ ସହୁଂ ହୋଇଲା ବଇକୁଣ୍ଠକୁ
ବିଷ୍ଣୁ କୋପ କଲେ ବ୍ରହ୍ମ ପୁଅମାନଙ୍କୁ ।

ଆରେ ଅଳ୍ପ ଦୋଷେ ଯେ ମୋର ଦ୍ୱାରପାଳନ୍ତ ନାଶି ।
ଯାଅ ମନୁ ମୃତ୍ୟୁମଣ୍ଡଳେ ଜନ୍ମ ହୋଅସି ।
ମନୁ ମହାଋଷି ସେ ହୋଇଲେ ବନୋଇଂ
ସ୍ୱାମୀ ପିତାର ଆଗ୍ୟାଂ ଘାଇଂ ଅଇଲୁ ଦୁଇଭାଇ ।
ଛୋଟହୋର ଆଗ୍ୟାଂରେ ସେ ହୋଇବା ମନୁଷ୍ୟ
ପ୍ରଥମ ଜନ୍ମେ ସେ ନାମ କାଳିଦାସ ।
ସେ ଜନ୍ମେ ପ୍ରସନ୍ନ ହୋଇଲେ ଗିରିଜା
ବିଷ୍ଣୁର ଚରିତ କହିବାକୁ ମୁଂ ହୋଇଲି ଅଗଜାଂ । ୧୦୧୦ ।
ଦ୍ୱିତୀୟ ଜନ୍ମେଣ ମହାକାଳୀ ନାମେ କବ
କୁନ୍ତିର ନନ୍ଦନୀ ପ୍ରସନ ବାକ୍ୟଦେବୀ ।

ତୃତୀୟ ଜନ୍ମେ ମୁ ସାରୋଳ ଦାସ କବି
ଏମାତେ ପ୍ରସନ୍ନ ହେଲେ ସାରୋଳ ଚଣ୍ଡୀଦେବୀ ।
ସେ ଦେବୀ ପ୍ରସନ୍ନ ହୋଇଂ କହିଲେ ଆଦ୍ୟଗ୍ରନ୍ଥ
ପ୍ରଥମେ ରାମାୟଣ ଦୁତୀଏ ଭାରଥ ।
ତୃତୀଏ ଲେଖନ ଶ୍ରୀ ଭାଗବତ
ମୂର୍ଖ ଅଗ୍ୟାଂନ ଯେ ମୁ ଅଟଇଂ ଅପଣ୍ଡିତ ।
ଯକ୍ଷେଂରପୁର ବାହେନୀ ସାରୋଳ ଚଣ୍ଡୀ ଚରଣେ ଦଇନ
ବଦୟନ୍ତ ସାରୋଳ ଦାସ ଶୂଦ୍ରମୁନ ।

## ମହିଷାସୁରର ଶମ୍ଭୁ ଓ ନିଶମ୍ଭୁ ସହ ଯୁଦ୍ଧ ଓ ପରାଜୟ

ଏଥୁ ଅନନ୍ତରେ ଶୁଣ ପରୀକ୍ଷ ରାଏ
ଶ୍ରୀ ଭାଗବତ ଶୁଣି ପାପ କର କ୍ଷଏ ।
ପୁଣି ପ୍ରଭାତେ ପଡ଼ିଲାକ ହାକ
ସାଜ ସାଜ ବୋଲି ଗହିଲା ସର୍ବଲୋକ ।
ଅକଳିତ ସୈନ୍ୟ କେହି ପରିମାଣୁ
ବାହାର ଶମ୍ଭୁ ନିଶମ୍ଭୁ କୁଳବନ୍ତ ପାଟଣୁ ।
ମଶାଂର ସଇନ୍ୟ ଯେ ବାହାର ବର୍ଣ୍ଣମାଳୁ
ବେନି ବଳ ସମର ଲାଗିଲା ହେଲୁ ହେଲୁଂ ।
ବଜ୍ର ପ୍ରାଏ ସେ ବନ୍ଧୁ ଅଚ୍ଛୁ ଶର
ଯେସନେକେ ଗଗନୁ ପଡ଼ଇ ଜଳଧାର । ୧୦୨୦ ।
ରକ୍ତବୀର୍ଯ୍ୟ ବୀରଦର୍ଣ୍ଣ ଗୃମର ବେମାଳ
ଲୋହ ଶର ଗଦା ଘେନି ଧାଇଲେ ମହାବଳ ।
ରକ୍ତବୀର୍ଯ୍ୟ ପ୍ରତାପ ଦେଖି ଶମ୍ଭୁ ନିଶମ୍ଭୁ
ହାକନ୍ତ ବେନି ବୀରେ ରହ ରହରେ ବାବୁ ।
ରକ୍ତବୀର୍ଯ୍ୟ ଶମ୍ଭୁ ନିଶମ୍ଭୁ ଭେଟାଭେଟି
ବଜ୍ରାବଳୀ ଗଦା ଘେନି ଶମ୍ଭୁ ନିଶମ୍ଭୁ ରକ୍ତବୀର୍ଯ୍ୟଙ୍କୁ ନେଇ ପିଟି ।
ଲୋହର ବେନି ଗଦା ଅଶୀ ସହସ୍ର ଭାର
ରକ୍ତବୀର୍ଯ୍ୟ ବକ୍ଷସ୍ଥଳେ ପଡ଼ି ହୋଇଲାକ ଚୂର ।
ଶତେ ଭାର ଗଦା ଘେନି ରକ୍ତବୀର୍ଯ୍ୟ ଘୋଟି
ଶମ୍ଭୁ ଦୈତ୍ୟ ଶିରେ ସେ ପିଟନ୍ତେ ଗୁଂଡା ଉଠି ।
ପୁଣି ହୁଂ ଧାଡକାରେ ରକତବୀର୍ଯ୍ୟ ଆକର୍ଷି
ଶମ୍ଭୁ ଦୈତ୍ୟ ହସ୍ତକୁ ଧଇଲା ଦୃଢ଼େ ଆସି ।
ମାଳାବନ୍ଧେ ଦୋହେଂ ରାଗେ ଭୁଜେ ଭୁଜ ଛନ୍ଦି
ସମରେ ବେନି ବୀରେ ହୁଅନ୍ତ ଗଡ଼ାଗଡ଼ି ।

ମହା ଆକ୍ଷେପି ସେ ଶମ୍ଭୁ ଦଇତ ପିଟି
ଘାଏଣ ଭ୍ରମର ସେ ପଡ଼ିଲା ମସ୍ତ ଲୋଟି ।
ଭ୍ରମର ମୋହଗତେ ଦେଖି ଧାମନ୍ତି କାନ୍ତିମାଳା
ଶମ୍ଭୁର ତୁଲେ ସେ ସମର ମହାଖଳା ।
ଲକ୍ଷେ ଭାର ଗଦା ଘେନି ସେ ଶମ୍ଭୁ ଦଇତ ପିଟଇ
ବଞ୍ଚିତ ହୁଆଇ ସେ କାନ୍ତିମାଳା ଲୋଟଇ । ୧୦୩୯ ।
କାନ୍ତିମାଳାର ମୋହ ଦେଖି ଧାମଇଂ ମଏଷା
ସଖା ବନ୍ଧୁଜନେ କରି ଜୀବନକୁ କରି ନିଆଶା ।
ରାଜାକୁ ଦେଖି ଶମ୍ଭୁ ନିଶମ୍ଭୁ ଦାନବେ ମହା କୋପି
ମଦନ ସମାନେ ସେ କାୟା କାମ ରୂପୀ ।
ଭୁଜ ବିସ୍ତାର ଲମ୍ବ ଯୋଜନ ବାହୁ
କରଭାର ଦେଖି ଯେସନେ ଘୋଟଇ ରାହୁ ।
ତେସନେକ ଆକର୍ଷଣ କରଣ ମହାବଳା
ମଷାସୁର ଘୋଟିଲା ସେ ରାକ୍ଷସ ଅନର୍ଗଳା ।
ଜଏସିଂଘ ବଜ୍ରସିଂଘ ମଷାସୁର ତିନି ବୀର
ଶମ୍ଭୁ ନିଶମ୍ଭୁ ତୁଲେ ସମର ମହାଘୋର ।
ଲୋହଶର ଧନୁରେ ବସାଇଣ ଶର ଗୁଣ
ଲୋହ ଧନୁଏ ଧରିଣ ଦଇତାସ୍ତ୍ର ।
ଶର ବୃଷ୍ଟି ଦେଖି ମଷାସୁରକୁ ପ୍ରଶଂସି ଶମ୍ଭୁ
କୁଳଭ ଛନ୍ଦି ଖଣ ଅଟଇ ତୋର ବାହୁ ।
ଆମ୍ଭକୁହିଁ ଅଟଗୋଚର କି ବୁଝଇ ଆନ ଭଳି
ଧାମଇଂ ଶମ୍ଭୁ ସେ ଦୁଇ ଲୋହ ଗଦା ତୋଳି ।
ବୁଲାଇଣ ଗଦା ସେ ମଷାସୁରକୁ ପିଟଇଂ
ଗଦା ଘାତେ ମଷାସୁର ଲୁହା ରଥ ଗୁଣ୍ଡା ହଠଇ ।
ରଥ ଭଙ୍ଗେଣ ମଷାସୁର ପାଦ ଗଢ
ଟିକାପେ ବୁଲାଇଲା ସେ ବ୍ରଜ ଶକଢ । ୧୦୪୦ ।
ଶମ୍ଭୁ ରକ୍ତାର୍ଣ୍ଣିର ସମର ମହାଘୋର
ମେଦନୀ କମ୍ପିଲା ସେ ଦାନେକ ପାଦଭର ।
ଲକ୍ଷେକ ଗଦା ଭାର ଘେନି ଶମ୍ଭୁ ନିଶମ୍ଭୁ ଦଇତ ଉଠି
ମଷାଙ୍କର ଛାଇନି ଉପରେଣ ପିଟି ।
ଶମ୍ଭୁର ଗ୍ରୀମୁରେ ପଡ଼ିଲେ ଭ୍ରମର ବେମାଳ
ଯୁଦ୍ଧେ ଅନର୍ଗଳ ସେ ବେନି ମହାବଳ ।

ଖଦା ପରତାଳ କରନ୍ତେଣ ବେନି
ପୃଥିବୀ ଉତପାତେ କମ୍ପିଲ ପଦ୍ମଯୋନି ।
ଶକଟ ବୁଲାଇ ସେ କପିଲ ସିଂଘର ସନ୍ତତ
ନିଶମ୍ଭୁ ଉପରେ ପିଟିଲା ତଡ଼ତ ।
ଶକଟ ପିଟନ୍ତେ ନିଶମ୍ଭୁ ପାତଲା ଭୁଜ ଦଣ୍ଡ
ମହା ବଜ୍ର ଶକଟ ହୋଇଲା ବେନି ଖଣ୍ଡ ।
ଶୂନ୍ୟ ଦଣ୍ଡ ହୋଇଂ ସେ ମହାଂସୁର ଦୁଷ୍ଟଇ
ରହ ବୋଲି ଶମ୍ଭୁ ଦଇତ ପୁଛଇ ।
ଲେନ୍ତି ଶର ଘେନି ଶମ୍ଭୁ ସନ୍ଧୁଡ଼ନ୍ତେ
ନାସେ ମଏଷାଂସୁର ବଦନ ଘେନି ଦନ୍ତେ ।
ମରଣ କାକୁସ୍ତ ଦେଖି ସେ ଧାଂମଇ ନିଶମ୍ଭୁ
ଶମ୍ଭୁ ଦାନେବ ବୋଇଲା ରହ ରହ ବାବୁ ।
ସାନୁଜ ସମାର୍କି ଶମ୍ଭୁ ଦଇତ ପୁଛଇ
ଅନାସ୍ତ ଦେଖିଣ ସେ ସମର ଲେଛଇ । ୧୦୫୦ ।
ଶମ୍ଭୁ ଦଇତ ପୁଛଇ ତୁ ଅଟୁ କେବଣ ଦେଶୀ
କମ୍ଭୁତ କାରଣେ ତୁ ମମ ରାଜ୍ୟେ ପଶି ।
କୁଳବନ୍ତୀ ପାଟଣା ଏ କେନାବନ୍ତ ନଗ୍ରି
ଯମ ଆଦିତ୍ୟ ପବନ ଏ ନ ପଶନ୍ତି ଭଏ କରି ।
ନିଶଙ୍କା ଚଣେ ତୋହୋର ସ୍ନେହେଡ଼ିକ ଭରସା
କହନ୍ତୁ ଭଗତ ହୋବ ସେ ବୋଇଲାକ ମସାଂ ।
ନବଲକ୍ଷ ମଧ୍ୟ ସ୍ଥାନ ସେ ସିଂଘଲ ଦେଶ ପୃଥି
ଷୋଳଶ ଲକ୍ଷ ଯୋଜନ ସେ ମୁ ତହିଂର ଚକ୍ରବର୍ତ୍ତୀ ।
ଜମ୍ବୁ ଦ୍ୱୀପ କୁଶ ଦ୍ୱୀପ ଚନ୍ଦ୍ର ଦ୍ୱୀପ ଜିଣି
ସମସ୍ତ ରାଜାଙ୍କୁ ଖଟାଇଲି ମୋହୋର ପାଦ ତଳେ ଆଣି ।
ରକ୍ତବାର୍ଯ୍ୟ ବୀରଘଣ୍ଟ ଚାମର ଜାନ୍ତମାଳା
ସେ ଦ୍ୱୀପର ରାଜାମାନେ ଛନ୍ଦି ଅର୍ପିଗଲା ।
ନାରଦେ କହିଲେ ଜମ୍ବୋଦ୍ୱୀପ ଇଶାନ ଭୂମି ବୋଲି
ତାହାର ବାକ୍ୟେଣ ମୁଂ ଦଣ୍ଡ ଚଳିଣ ଅଇଲି ।
ଅନେକ ନୃପତି ମୁ ଜିଣିଲି ବାହୁବଳେ
ତୋତେ ହାରିଲି ମୁ କର୍ମର ଅବଳେ ।
ତିଭଗ ପୁରନ୍ଦର ଭୂମି ବୋଲି ମୁ ଏଥକୁ କଲି ଇଛା
ତୁ ହୋ ମହାପ୍ରଭୁ ପୂରାଅ ମନବାଞ୍ଛା ।

ଅନେକ ବଚନୋଇଂ ବୋଇଲା ମଷାଂସୁର ନୃପତି
ଶୁଣି ଦୟା କଲେ ମହା ଡାମର ନାଥ । ୧୦୬୦ ।
ଜନସ୍ତ୍ର ବାକ୍ୟ ଶୁଣି ସେ କୋପ ହୃଦଂର
ମଷାଂସୁର ରଜାକୁ ସେ କୋଳ କରି ଶମ୍ଭୁ ଧରି ।
ଉତ୍ତର ଦରେ ଶମ୍ଭୁ ନିଶମ୍ଭୁ ଦକ୍ଷିଣ ଦରେ ରକ୍ତବୀର୍ଯ୍ୟ
ପଶ୍ଚିମେ ଚମର ବେମାଳ ଖାରଘଣ୍ଟ ରାଜ ।
ବାରିନିଧି ପ୍ରାଏକ ଅପ୍ରମିତ ବଳ
ମଷାଂସୁର ରାଜ୍ୟ ସମ୍ପଦ ଶମ୍ଭୁ ନିଶମ୍ଭୁ ବାହୁବଳି ।
ରୋଗ ଆପଦ ସେ ନ ପଶଇ ସେହୁ ପୁରୀ
ଯମ ପବନ ଅଗ୍ନି ତହିଂ ପଶି ନ ପାରି ।
ଅନେକ ବର୍ଦ୍ଧିତ ହୋଇଲା ଦଇତ ବଳ
କାଳକ୍ରମେଣ ହେଲା ସେନଇ ମହାସ୍ଥଳ ।
ଦିଗ ବିଜେ କରି ରାକ୍ଷସ ସାଧ୍ୟ କଲେ
ଏକ ଦିନେ ତହିଂକି ନାରଦ ବିଜେ କଲେ ।
ପ୍ରବେଶ ଦେବ ନଗର ଶୁକ୍ଳାମ୍ବର ଯତି
ନୃତ୍ୟ ଗୀତ କରି ସେ ସମସ୍ତନ୍ତ ବୋଧନ୍ତ ।
ସେତେ କଥା ସତ କହନ୍ତ ସମସ୍ତ ଭଣ୍ଡ ପଣେ
ଭେଣ୍ଡୁ କରି ପୂଜା ସମସ୍ତ ବ୍ରହ୍ମ ପୁରେଣ ।
ନମୋ ନାରାୟଣ କହୁଁ ଉଧାରନ୍ତା
ଜାତ-ଅନ୍ତ-ପୁରୁଷ ସକଳ ଜନ୍ମ ଚନ୍ତା ।
ଯାବତ ଜୀବ ଜନ୍ତୁ ତୁହି ସେ ଆଦିମୂଳ
ଯୋଗୀଜନଙ୍କର ପରମ ଅନୁକୂଳ । ୧୦୭୦ ।

ମହା ବ୍ରହ୍ମ ଦେବତା କୋଟି କଳ୍ପ ପୂନ୍ୟ
ଇଦଂ ଭୂତ ଆତ୍ମା ତୋର ସେ ରଚନ ।
ସ୍ୱାମି ଯାହା ତୁ କହୁ ମୁ ତାହା ଲିହଇ
ସେ ଯାହା ଲିହାଇଂ ବ୍ୟାସ ତାହା କହଇ ।
ବ୍ୟାସଙ୍କର ମୁଖୁଂ ଶୁଣନ୍ତ ସବ ଶିଷି
ଗ୍ୟାଂନ ପାଇଂଣ ସେ ଭଗତ କରନ୍ତ ଆସି
ସ୍ୱାମି ପରମ ଅନୁକୂଳ ପଣ୍ଡିତ ମହାବୁଧି
ଜଗୁଜନ ନାଥ ଜାଣଇ ବୁଦ୍ଧିବୃଦ୍ଧି ।
ଅହୋ ଯୁଗତେ କଳି ଯୁଗ କଲି କଲ୍ମଷ ପାଶି
ସକଳ କଳା ଦେହ ସେ କଳାବର୍ଣ୍ଣ ଦିଶି ।

ସକଳ ଧାରଣ ଏ ନାରାୟଣ ନାମ ଗୋଟି
ଶ୍ରବଇ କୁନ୍ଦଗତେ କଳି କଲୁଷ ଯାଇ ଫିଟି ।
ଯଟେଶ୍ୱରପୁର ବାସେନ ଗୋ ସାରୋଳ ଚଣ୍ଡୀ ଦେବ୍ୟ
କୃପାଜଳ ନନ୍ଦନୀ ଦେବୀ କ୍ଷୀବର ବଲ୍ଲଭୀ ।
ସେ ମୋତେ ପ୍ରସନ୍ନେ କହିଲେ ଯେବଣ ବାଣୀ
ମୁହିଂ ତାହା ଲେଖନ କଲି ବ୍ୟାସଙ୍କ ମୁଖୁଂ ଶୁଣି ।
ସେ ସର୍ବ ମଙ୍ଗଳା ଚରଣେ ଲଏ ଭାବି
ମୁନି ନସ୍ତାର ଭାବେ ବୋଲେ ସାରୋଳା ଦାସ କବି ।
ହେ ବୁଧଜନେ ନ ଦେଇମା ମୋର ଦୋଷ
ସମସ୍ତ ଝଗଡ଼ ଛାଡ଼ି କୃଷ୍ଣନାମ ଘୋଷ । ୧୮୦ ।
ପୁଛନ୍ତେ ଶୁଣନ୍ତେ ମୁକତ ଗତି ଅଛି
ଧନ ପୁତ୍ର ମନେ ଯେ ଯାହା ବାଞ୍ଛି ।
ଆସନ ସମାର୍ଜନା କଲେ ସେ ନାରଦ ମହାମୁନି
ବସିଲେ ମହାତ୍ମା ପାଦଅର୍ଘ୍ୟ ଘେନି ।
ସକଳ କୁଶଳ ପଚାରନ୍ତି ବ୍ରହ୍ମଋଷି
ଅସୁର ଭୁବନ ସୁଲଭ ଦେଖିଣ ପ୍ରଶଂସି ।
ନାରଦଙ୍କ ଇଦଂ ବାକ୍ୟ ଶୁଣ ହୋ ଶମ୍ଭୁ ନିଶମ୍ଭୁ
ବଡ଼ାଇ ସୁନ୍ଦର ତୋର ଭୁବନ ଗୋଟି ବାବୁ ।
ଯେସନେକ ସମ୍ପଦ ଦେଖିଲୁ ତୋହର ପୁରି
ଅସୁର କୁଳ ଦୁଲଭ ଏ ଯେନାବନ୍ତି ନଗ୍ରି ।
ପୂର୍ବେ ରତ୍ନଗିରି ପଶ୍ଚିମେ ସିଂଘଗିରି
ଦକ୍ଷିଣେ କୁଣ୍ଡଗିରି ଉତ୍ତରେ ବର୍ଷଂଗିରି
ଏ ଚ୍ୟାରି ପର୍ବତ ଅଟନ୍ତି ଆକାଶ ଭେଦି
ବହଇ କଣ୍ଠଭଦ୍ରା ଭୋଗ ନାମେ ନଦୀ ।
ନାରଦେ ବୋଇଲେ ଅପୂର୍ବ ଭୁବନ ତୁହ୍ମଂ
ଏସନେକ ଭୁବନ ତୁଳାଇତ ନାହିଂ ।
ନାରଦେ ବୋଇଲେ ଭୁବନ ଅମରାବତୀ
ତହ୍ମଂକ ପଟାନ୍ତର ଯେ ଭୁବନ କେନାବଳି ନଗ୍ର ହେତି ।
ଅମରପୁରକୁ ପଟାନ୍ତର ଅଟଇ ଏ ଭୁବନ
ଚ୍ୟାରି ପଦାର୍ଥ ମାଣିକ ନାହିଂ ଯେହ୍ନୁ ସ୍ଥାନ । ୧୦୯୦ ।
ଶମ୍ଭୁ ନିଶମ୍ଭୁ ପଚାରିଲେ କହ ମୁନିଦେବ
କେବଣ ଚ୍ୟାରି ପଦାର୍ଥଯେ ଏଥକୁ ଅପୂର୍ବ ।

ନାରଦେ ବୋଇଲେ ହେ ଅଇରାବ୍ରତ ହସ୍ତୀ
ଆଉ ଅପୂର୍ବ ହୋ ରମ୍ଭା ଯୁବତୀ ।
ଉର୍ଚ୍ଚି ଶ୍ରବା ଅଶ୍ୱ ପାରିଜାତେକ ପୁଷ୍ପଇ
ଏତେକ ପଦାର୍ଥ ଆମ୍ଭ ମନକୁ ଆସଇ ।
ମୁନିଙ୍କର ବଚନ ଶୁଣି ବୋଲନ୍ତି ଶମ୍ଭୁ ନିଶମ୍ଭୁ
ଆମ୍ଭର ଦର୍ପେ କରି ସାଧ୍ୟକଲୁ ସବୁ ।
ଆସ୍ତାନେ କହିଲେ ଶମ୍ଭୁ ନିଶମ୍ଭୁ ବେନି
ଅମରାବତୀକି ଯାଉ ଦୂତ ଶ୍ରୀମୁଖ ଆମ୍ଭର ଘେନି ।

---

## ଶ୍ରୀ ମହିଷାସୁରର ଆଜ୍ଞାପତ୍ର

**ଶ୍ରୀ ମତ** ପ୍ରସନ୍ନ କରତାର ନାଥ ନମସ୍ତେ
ଅନାଦି ଆଦି କଶ୍ୟପ ଗୋତ୍ରେ ।
ଶ୍ରୀ ରାହୁ ରମଣ ପ୍ରତାପ
ସିଦ୍ଧିକା ଗୁଣ କୁଳ ଉତ୍ତକର୍ମ ।
ପରମାନନ୍ଦ ମାଧୁର୍ଯ୍ୟ ଉର୍ଦ୍ଧବଳ ମୂର୍ତ୍ତି ।
ଶ୍ରୀ ଚତୁର୍ଦ୍ଦଶ ଭୁବନେ ଆଦିପତି ।
ବିବୁଧ ଭୁବନ ପାତାଳ ଭୁବନ ଉଦେକ ପାଟଣା ଚନ୍ଦ୍ରପାଟଣା
ଶ୍ରୀ ମହାଥାଣୁ ମହାପ୍ରଭୁ । ବରଣ୍ଡିବର ପ୍ରସାଦ ।
ସିଦ୍ଧିଲା ଦୀପକୁ ଉଦିତ ସେ ପଦ ।
ଦେବ ଲୋକ ନର ଲୋକ ଗନ୍ଧର୍ବ ଯକ୍ଷ କିନ୍ନରଇ
ଗ୍ରହଗଣ କାଳଗଣ କଳିକାଳଙ୍କ ରକ୍ଷ ରାକ୍ଷସଇ ।
ଏହାନ୍ତ ଅନର୍ଗଳ ଧୂମାନ୍ତେକ
ଉତ୍ତର ଦକ୍ଷିଣ ପୂର୍ବ ପର୍ଶ୍ଚିମ ଚତୁର୍ଦ୍ଦଶ ଭୁବନେ ।
ବ୍ରହ୍ମ କ୍ଷତ୍ରୀ ବୈଶ୍ୟ ଶୂଦ୍ର ଦୈତ୍ୟ ଦାନବ
ଏକସାଦ ଲୋକଙ୍କ ଉପର ସ୍ଥାପନ ।
ସ୍ୱରଣ, କିନ୍ନର, ଦୈତ୍ୟ ଅସୁର ମାନମର୍ଦ୍ଦନ
ଅସୁର ଲୋକକଇ ଧାଡି ତଡ଼କ ।
ନାଗ ଲୋକକୁ ଗରୁଡ଼ା ଆସନ
ଭୂତ ଭବିଷ ବ୍ରତମାନ ।
ନିର୍ଗୁଣ ତନ୍ତ୍ର ହୃଦଗତ
ଦେବଗୁରୁ ଶହସ୍ର ଗୁରୁ ଶାହାସ୍ତ୍ର ଗୁରୁ
ଧନୁ ସଙ୍କେତ ଖଡ଼ଗ ଗୁରୁ ।

ପିତାମହଙ୍କର ବର ପ୍ରସାଦେ
ନାଗଙ୍କର ଉପରେ ବୀରଚୂର ।
ଜମ୍ବୁ ଦ୍ୱୀପ ସିଂହଳ ଦ୍ୱୀପ କୋଶଳ ଦ୍ୱୀପ
ଉଦେ ଦ୍ୱୀପ ଚନ୍ଦ୍ର ଦ୍ୱୀପ ମଂଡଳ ।
ନବ ଦ୍ୱୀପ ସପତ ସାଗର ଚୂଡ଼ଣ
ରକ୍ତବୀର୍ଯ୍ୟ ଗ୍ରାମର ବେମାଲ ବୀରଘଣ୍ଟା ଧୂମ୍ରଲୋଚନ କାନ୍ତମାଳ ।
ଚଂଡ ମୁଂଡ ଶମ୍ଭୁ ନିଶଂଭୁ ବୀରବର ଶରଣ ଉଧାରଣ
ଲିଯ୍ୟା ଚୁଡ଼ଙ୍ଗ କାଶୀ କଉଶିକ ନେପାଳ
ପଶୁପତି ଗଉଡ଼ ଗାଜଣ ଉହୁଣ୍ଡ ।
ମାଳେବ ଗୁର୍ଜ୍ଜର ମଗଧ ମଛ ମରହଟ୍ଟ ଶାଖା ସଉରାଷ୍ଟ୍ର
କାଞ୍ଚି ମହେନ୍ଦ୍ର ମାଳେବ ବଜାନ୍ତେକ ।
ଯମୁନା ଶବରି ଦୁରନ୍ତେକ
ଏକ ଚକ୍ର ଗହଣ ଖଣ୍ଡ ମଣ୍ଡଳ ।
ବାର ରାଷ୍ଟ୍ର ଛତଣ ମୋଣ୍ଡୋଳ କୁମାରି ଉଜାଣ
ମୁରୁ ମଣ୍ଡୋଳ ରାଜାମାନଙ୍କୁ ଆପନା କରି ।
କଇଛ୍ଛା ଜଗଜେଠୀ ଶରଣ ଈଶ୍ୱର
ସୁର ସିଧ୍ୟା ମୁନି ଜନ ମହାମଲ ।
ସଜନ ଜନ ସୋଦର ଦୁର୍ଜନ ଦର୍ପ ଚୂଡ଼ଣ
ବୋଧିଦେବ ଶିରୋମଣି ।
ରାଜାଧି ରାଜାମାନଙ୍କୁ ଆର୍ଥନା କରି
ପରମ ଯୋଗେଶ୍ୱର ଅଭଏ ମାନଚଶୋବନ୍ଦ ।
ନିଉଗଂ ପୁର ମଣ୍ଡଣ
କାମେନୀ ମନସିଜ ସିଂଘାର ମହାନିଧି ।
ସିକ୍ତୋପସିକ୍ତୋବାସନ୍ନ ଧୂମାନ୍ତେକ
ହଇଜ ଚକ୍ର ଚୂଡ଼ାମଣି ।
ଦେବାଧିଦେବ ରାଜେ୍ୟଶ୍ୱର
ବୀରବର ସୋହଡ଼ ସୁନ୍ଦର ।
ଶ୍ରୀ ମଏଷାଂସୁର ପାଦେ ଶତ ନିନସ୍କୃ ନମ
ଅମରାବତୀ ସ୍ୱର୍ଗ ଇନ୍ଦ୍ରକୁ ନାମେ ଶ୍ରୀମୁଖ ପ୍ରସାଦ ।
ଏଏରାବ୍ରତ ମହାନାଗ ପାରିଜାତେକ ଉଚ୍ଚିଶବା ଅଶ୍ୱ ରମ୍ଭାକନ୍ୟା
ଏ ସ୍ତୁରି ପଦାର୍ଥ ଘେନି ଉଠି ଆସିବୁ ।
ଶ୍ରୀମୁଖ ସମାପତ ।

ସହସ୍ର ପ୍ରଶସ୍ତ ବୋଲି ବେନି ସେନାପତି
ତାହାନ୍ତ ରାଇ ଶମ୍ଭୁ ନିଶମ୍ଭୁ ଆଗ୍ୟାଂ ଦିଅନ୍ତି ।
ଶ୍ରୀମୁଖ ଘେନି ଯିବ ଅମର ସ୍ୱର୍ଗେ
ଇନ୍ଦ୍ର ଦେବତାଙ୍କୁ ଘେନି ଆସ ବେଗେ ।
ରାଜାର ଆଗ୍ୟାଂ ବଚନେ ନିରାଧାର
ହୃଦେ ଶ୍ରୀମୁଖ ଘେନି ଗଲେକ ବେନି ବୀର ।
ଆକାଶ ମାର୍ଗେ ସେ ଚଳନ୍ତି ବେନି ବୀରେ
ବିରଞ୍ଚି ବରେ ପଶନ୍ତି ଶୂନ୍ୟ ପଥରେ ।
ନାରଦେ କହିଲେ ଶୁଣ ହେ ପୁରନ୍ଦର
ମହିଷାଂସୁର ଶ୍ରୀମୁଖ ଆସଇ ସ୍ୱର୍ଗପୁର । ୧୧୦୦ ।
ଶୁଣି ପ୍ରହସିତ ହୋଏ ଦେବରାଏ
ହୃଦୟ ମଧ୍ୟରେ ସେ ପାଇଲି ମହାଭଏ ।
ଗଳିତ ନିପଣ୍ଡ ଗହନ ନିଶ୍ୱାସ
ଗଗନ ଘୋଟିଲେ ସେ ବେନି ଯେ ରାକ୍ଷସ ।
ଆହେ ଅସକନ୍ଦ ବୋଲି ଡାକନ୍ତି ରାକ୍ଷସ ଦୁଷ୍ଟ
ତ୍ରଇଲୋକ୍ୟ ଈଶ୍ୱର ସେ ମହିଷାଂସୁର ପ୍ରବିଷ୍ଟ ।
ଆସନ ତେଜି ଆହ ମଘବାନ
ପାଦସ୍ତ୍ରୁଡ଼ା ପାଢ଼ ସ୍ୱାମୀର ଶ୍ରୀମୁଖ ଗୋଟି ଘେନ ।
ଶୁଣି କୋପାନଳ ସେ ବଦନ୍ତି ଦେବରାଏ
ଯୁଗତେ ସୁନାସୀର ମହା ତେଜମଏ ।
ସ୍ୱାମୀର ତେଜ ଦେଖି ଅଙ୍ଗାର ପନଙ୍ଗେ
ଅସୁରଙ୍କର କାଳ ସେ ଧଇଲେ ଅତି ବେଗେ ।
ସ୍ୱଶୁ କୋଠାର ଘେନି ସେ ବିଦ୍ୟାଧର
ଦୂତଙ୍କର ଉପରେ ସେ କଲାକ ପ୍ରହାର ।
ମହା ପ୍ରଚଂଡ ବିଦ୍ୟାଧର ବିଘାତେ
ବେନି ଖଂଡ ହୋଇଂ ସେ ଲୋଟିଲେ ଦୂରାନ୍ତେ ।
ଅସୁରଙ୍କର ନାଶ ଦେଖି ବୋଇଲେ ନାରଦେ
ଦୂତଙ୍କ ବିନାଶ କମ୍ପା କଲୁ ହେ ଅସ୍କନ୍ଧେ ।
ସତ୍ୟ ଦ୍ୱାପର ତ୍ରେତୟା କଳିଯୁଗ ସ୍ଥିତ
ରାଏବାର ଘାତେ ହୋ ବ୍ରହ୍ମହତ୍ୟା ସତ । ୧୧୧୦ ।
ନାରଦ ମୁଖେ ଏସନେକ ବାକ୍ୟ ଶୁଣି
ପ୍ରତଗ୍ୟାଂ କରି ସେ ବୋଲନ୍ତି ବଜ୍ରପାଣି ।

ଅମରାବତୀପୁରେ ମୁ ରାଜା ଦେବାଧି
ଯମ ରାଜା ପୁରେ ଜନ୍ମେ ଦଇତ ଭେଦ ।
ତିନ ସ୍ୱର୍ଗରେ ମୁଂ ଅଟଇ ହାଦେ ରାଏ
ଯମ ଦର୍ପ ମର୍ଦ୍ଦନ କାହାକୁ ମୋର ଭଏ ।
କଟଂତ କୋପେ ନାଶ ଗଲେ ସହସ୍ର ପ୍ରଶସ୍ତ
ଅନେକ ଯୁଗ ଭୋଗ କଲେ ବେନ ଦଇତ ।
ଆହୋ ପରୀକ୍ଷ ରାଜା କୁମ୍ଭ ମାସ ଶୁକ୍ଳପକ୍ଷ ଦୁତୀଆ ରବବାର
ଅଶ୍ୱିନୀ ନକ୍ଷତ୍ର ଅଟଇ ସେ ଦିନର ।
ବାବ୍ୟ ନାମେ କରଣ ଆଜୁସ ନାମେ ଯୋଗ
ଅଳ୍ପ ସୋଧନ ନାମେ ଅଟଇ ସତ୍ୟ ଯୁଗ ।
କେନାବତୀ ନଗ୍ରେ ଶମ୍ଭୁ ନିଶମ୍ଭୁ ବେନି
ଆସ୍ଥାନେ ବିଜେ କଲେ ଅମାତ୍ୟ ପାତ୍ର ଘେନି ।
ଅକ୍ରେକ ନାମ ମହିଷାଂସୁର ମନ୍ତ୍ରୀ
ଭୂତ ଭବିଷ୍ୟ ଗ୍ୟାଂତା ସେ ଜାଣଇ ସର୍ବ ପ୍ରୀତି ।
ବଇସ୍ମନ୍ତ ପରୀକ୍ଷ ଶୁଣ ଶୁକ ମୁନି ହେ
ଯେ କଥା ଲାଗିଲା ମୋତେ ସନ୍ଦେହେ ।
ନବ ଦୀପ ପୃଥି ସାଧିଲା ଯେବଣ ମହିଷାଂ
ମନ୍ତ୍ରୀ ଅଛ ହେ ତାଙ୍କୁ କଂପା କଲା ଆଶା । ୧୧୬୦ ।
ନୟନ ସେ ଯେବେ ଅନ୍ଧ ତାର ଅଟଇ
ସେ କିସ ମନ୍ତ୍ରୀପଣ ବୁଦ୍ଧି ପ୍ରକଟଇ ।
ଏ କଥା ମହାତମା ବଡ଼ାଇ ଅପୂରବ
ଯେ ସନ୍ଦେହ ମୋତେ ଫେଡ ହେ ମୁନି ଦେବ ।
ବଇସ୍ମନ୍ତ ଉପୀଏନ ସିଦ୍ଧ ବ୍ରହ୍ମବେତା
ଶୁଣ ହୋ ମହାରାଜା ପଣ୍ଡିତ ମହାଗ୍ୟାଂତା ।
ଋଷି ଭକ୍ଷରଂ ଏ ଅଟନ୍ତି ପଣ ନାଥ
ଏହାଙ୍କର ପିଅର ସେ ଅଟଇ ପ୍ରହେତ ।
ଏହାଙ୍କର ଭଗ୍ନୀ ନାମ ସଜବାଳୀ
ମହିଷାଂର ମାତା ସେ ବାଳୁତ ପ୍ରତିପାଳି ।
ମହିଷାଂସୁର ରାଜାର ସନ୍ତୁଂ-ଦେଖିଲା ଅମାତ
ଅନେକ ତଆର ସେ ଅକ୍ରେକ ସେନାପତି ।
ବାବୁ ଅନେକ ସମ୍ପଦ ଅରଜିଲା ବାହୁବଳେ
କଷ୍ଟ ହୋଇଲେ ମୃତ୍ୟୁ ହୋଅଇ ଅଳପ କାଳେ ।

ଅନେକ ବାଟେ ସେ ଡାକିଲା ବିରୂପାକ୍ଷ
ଶୁଣି କୋପ କଲା ସେ ଅସୁର କୁଳ ଦକ୍ଷ ।
ମାରୁଲ ନୋହିଲେ ପକାନ୍ତି ମୁଣ୍ଡ ମୋଡ଼ି
ରାଗେଣ ମହିଷାସୁର ଦେଲା ଚକ୍ଷୁ ତାର ତାଡ଼ି ।
ଚକ୍ଷୁ ତାଡ଼ନ୍ତେ ପଡ଼ିଲା ମୁହିଁ ମାଡ଼ି
ହେ ଈଶ୍ୱର ବୋଲି ଦେଲାକ ସିଂଘ ରଡ଼ି ।
ଅନାଥ ଲୋକଙ୍କର ବିକଳ ଦେଖି
ବଇଲ ବାହାନେ ବିଜେ କଲେ ବିରୂପାକ୍ଷି ।
ବୋଲନ୍ତି ସୋଡ଼ଲେ କି ନିମନ୍ତେ କାନ୍ଦୁ
ପରଲୋକେ କାତର ମୁ ପରଲୋକେ ବନ୍ଧୁ ।
ସ୍ୱାମୀ ରକ୍ଷ ଭକ୍ଷ ଅଂଶେ ହେତ ପ୍ରହେତ
ହେତ ପ୍ରହେତର ପୁତ୍ର ସୁରକ୍ଷର ପଣ ନାତି ।
ସ୍ୱାମି ମହିଷାସୁରର ମୁ ଅଟଇ ମହଲା
ଉପଦର୍ପ ଦାନବ ଅନେକ ଅଶ୍ରୁତ କଲା ।
ଡାଆଶ୍ରଣ କହିଲି ମୋତେ ନପାରିଲା ଦେଖି
ରାଗେଣ ମହିଷାସୁର ମୋର ତାଡ଼ିଲା ବେନି ଆଖି ।
ଈଶ୍ୱରେ ବୋଇଲେ ରେ ମୁହିଂ ବିରୂପାକ୍ଷ
ତୋହୋର ନାମ ବିରୂପାକ୍ଷ ଆମ୍ଭର ମଇତ୍ର ପ୍ରତକ୍ଷ ।
କହୁଂ କହୁଂ ଦୟା ବସିଲା ତ୍ରିଲୋଚନ
ଈଶ୍ୱରେ ବୋଇଲେ ତୋତେ ଦେବା ଚକ୍ଷୁ ଦାନ ।
ଅନ୍ଧେକ ବୋଇଲା ମୁ ସମ୍ପଦ ବିପଦ ଏହାର ନ ଦେଖିବି
ବେନି ଚକ୍ଷୁ ଅନ୍ଧ ହୋଇ ଏହି ରାଜ୍ୟେ ଥିବି ।
ଅଭଗତେ ପ୍ରସନେ ଯେବେ ହୋଇଲୁ ବିଶ୍ୱନାଥ
ହୃଦରେ ଚକ୍ଷୁ ଦେବ ମୋହୋର ହୋଉ ପରାପତ ।
ମନ୍ତ୍ରୀ ପଣେକୁ ମୁ ହୋଇବି ଶକତା
ସବ ଗୁଣ ମୋତେ ଭୂତ ଭବିଷ୍ୟ ଗ୍ୟାତା ।
ପରମ ସାନନ୍ଦ ହୋଇଲେ ଶୀତାଂଶୁ
ଯା ତୋତେ ବୈକୁଣ୍ଠ ଭୁବନ ଯାଏ ଦିଶୁ ।
ଅନ୍ଧର ମହାକଷ୍ଟ ଦେଖିଣ ମହାଦେବ
ଯେ ଅବା ଅନ୍ଧ ହେବ ତାର ହୃଦେ ଚକ୍ଷୁ ଥିବ ।
ଆହୋ ଧର୍ମାକ୍ଷ ରାଜା ଯାହା ପ୍ରସନ୍ନେ ବୋଇଲେ ତ୍ରିସ୍ୱମ୍ଭେ
ତେଣୁ କରି ସମସ୍ତ ସେ ଜାଣଇ ଅନ୍ଧେକ ।

ଏମ୍ନ ଅନେକ ମନ୍ତ୍ରୀଙ୍କ ପଗ୍ଭରିଲେ ଶମ୍ଭୁ ନିଶମ୍ଭୁ
ଅମରାବତୀ ଦୂତଙ୍କର ବାରତା କହ ସବୁ ।
ହୃଦଗତେ ଚିନ୍ତା ଜାଣିଲେ ଅନେକ
ଶୁଣ ଦେବ ମହାରାଜା ପ୍ରସନ୍ନ ହି ଅମ୍ଭେକ ।
ଶ୍ରୀମୁଖ ଶୁଣି କୋପ କଲା ବଜ୍ରପାଣି
ସହସ୍ର ପ୍ରଶସ୍ତକୁ ପକାଇଲା ହାଣି ।
ଅନ୍ୟ ମନ୍ତ୍ରୀ ମୁଖେ ତଥ୍ୟ ବାରତା ଶୁଣି
ସ୍ୱର୍ଗକୁ ଥାଠ ମୋର ସାଜ ଏହିକ୍ଷଣି ।
ରାଜାର ବଚନେ ସାଜିଲେ ସମଦଣ୍ଡ
ଦୁନ୍ଦଭି ଶବଦେ ସେ କମ୍ପିଲା ବ୍ରହ୍ମାଣ୍ଡ ।
ସେନାମାନନ୍ତ ରାଇ ବୋଲନ୍ତି ଶମ୍ଭୁ ନିଶମ୍ଭୁ ବେନି
କେଉଁ ଦିଗକୁ ଯିବା ଅସୁର ବଳ ଘେନି ।
ବଜ୍ରେ କଣ୍ଠି ରଥ ଯେ ସାଜିଲେ ମହାବଳ
ରଥରେ ଯୋଚିଲେ ସେ ସହସ୍ରେ ଶାର୍ଦ୍ଦୂଳ । ୧୧୫୦ ।
ମନୁ ପବନୁ ବେଗେ ବାହାର ରଥ
ପବନୁ ବେଗେ ଚଳଇ ଅସୁର ବଳ ପଥ ।
ନାରଦେ କହିଲେ ଯେ ଶୁଣ ପୁରନ୍ଦର
ଶମ୍ଭୁ ନିଶମ୍ଭୁ ବାହିଲେ ତୋର ଅମରାବତୀ ପୁର ।
ଆସ୍ଥାନ ତେଜିଣ ଉଠିଲେ ପୁରୋହିତ
ସାଜିଲେ ବେଗେ ତୋହର ଐରାବତ ।
ଶ୍ରୀ ଅଙ୍ଗେ ବଜ୍ର ସାରଙ୍ଗ ଧନୁ ତୋଣ
ଚଉଷଠୀ କୋଟି ତୁଳେ ବୃନ୍ଦାଅର୍କଗଣ ।
ନନ୍ଦାବ୍ରତେକ କୋନ୍ତ କରେ ଚକ୍ର ଯାଠି ।
ମୁଦ୍ଗର ଶକତି ଚକ୍ର ଶସ୍ତ୍ର କୋଟି କୋଟି ।
ମେଘନାଦ ସନ୍ନିଧ୍ୟେ ଚଳଇ ହସ୍ତୀବର
ପ୍ରତାପ୍ୟା ସମ୍ଭବେ କରି ନିଯ କମ୍ପଇ ଜନପୁର ।
କୋବେର ବାରିନିଧି ଅପୂର୍ବ ରତ୍ନମାନ
ରତ୍ନ ଆଭରଣେ ଦିଶନ୍ତି କୋବେର ସମାନ୍ୟ ।
ଏହିନ ସମ୍ଭବ ସେ ସୁରବର ସେନା
ଚଳନ୍ତି ଗନ୍ଧର୍ବେ ବାନ୍ଧି ବୀରବର ବାନା ।
ଏହିନେକ ସମଏ ଇନ୍ଦ୍ର ଥାଠ ପଳିଣି
ବ୍ରହ୍ମାଣ୍ଡ କମ୍ପିଲା ଯେ ଦୁନ୍ଦଭି ବାଦ୍ୟ ଶୁଣି ।

ଶମ୍ଭୁ ନିଶମ୍ଭୁ ଆସି ହୋଇଲେ ନିକଟ
ଦେବେ ଅସୁରେ ହୋଇଲେ ସ୍ନେହ ଭେଟ । ୧୧୬୦ ।
ଇନ୍ଦ୍ର ବୋଇଲା ହୋ ଶମ୍ଭୁ ନିଶମ୍ଭୁ
ମୃତ୍ୟୁ ମଣ୍ଡଳ ରାଜା ତୁମ୍ଭେ ଜିଣିଲ ସବୁ ।
ମୁହିଂ ଦେବରାଜ ଆକାଶ ରକ୍ଷପାଳ
କିମ୍ପାଇଁ କାରଣେ ତୁମ୍ଭେ ମୋତେ ଛଡ଼ିଆଲ ।
ଶମ୍ଭୁ ନିଶମ୍ଭୁ ବୋଇଲେ ଶୁଣ ହୋ ସୁର ନାହା
ମହେଂଷାସୁର ଦାନେବ ଯେ ନ ଜିଣିଲ କାହା ।
ଦେବ ଦାନବେ ଆମ୍ଭେ ଏକ ସୋଦର ବେନି ଆଇ
ଜନ୍ମୁ ଦତ୍ୟ ମାର ତୁ ଅସୁର କୁଳ ବିବାଦ ।
ବୃତ୍ତ ପଣ୍ଡ ବେନି ତୋତେ ଦେଖିଲି ମହାଦାସ
ରାଜା ବଲ୍ଲଭ ସେ ପ୍ରାଣକୁ ବିଶ୍ୱାସ ।
ତାହାକୁ ନାଶ ଯେ କଲ ଅନିମିତେ
ଏସନେକ କୃତ କରିବାକୁ ନାହିଂ ନା ଜଗତେ ।
ଅଏରାବତ ହସ୍ତୀ ପାରିଜାତେକ ତରୁ
ରମ୍ଭା ଅପସରି ଉଚଶ୍ରବା ଅଶ୍ୱ ଅମୃତ୍ତ ଦେଲେ ବାହୁଡ଼ିବୁ ।
ବୃତ୍ତକୁ ନାଶକଲୁ ଯେ ତୋହୋର ମୃତ୍ତ ପଣ
ବୃତ୍ତ ଲୋକକୁ ମାଇଲେ ଅଢ଼ ଅକାରଣ ।
ଆମ୍ଭେ ଅସୁର ଯେ ଗୃଣ୍ଡାଳ ଜନ୍ମ ନିହ୍ନୁ
ଧର୍ମ ଲଙ୍ଘିବାକୁ ପୁଣ ଭୟେ କରିଥାଉ ।
ନାଶନ୍ତ କାଳକୁ ଯେ ଛାଡ଼ିଲୁ ସର୍ବ ଧର୍ମ
ସେ କାଳକୁ ଧର୍ମ ଛାଡଇ ପ୍ରାଣୀ ହୋନ୍ତ ମତିଭ୍ରମ । ୧୧୭୦
ଶମ୍ଭୁ ନିଶମ୍ଭୁଙ୍କର ବଚନେ ବୋଲନ୍ତ ଦେବରାୟେ
ମୁହିଂ ସେ ଦେବରାଜା କାହାକୁ ମୋର ଭୟେ ।
ଶମ୍ଭୁ ବୋଇଲା ତୁ କହୁଅଛୁ ମନ୍ଦ
ମହେଷାଂସୁର ଆଗ୍ୟାଂ ରୁ ପାଳବୁଟିକ ଦେବ ଇନ୍ଦ୍ର ।
ବଦନ୍ତ ଦେବରାଜା ଶୁଣ ତୁମ୍ଭେ ବେନି
ମୁହିଂ କହୁ ଆସଇ ଦେବ ପଦ୍ମଯୋନି ।
ତାହାଙ୍କର ସିନା ସମସ୍ତ ଯେ ମୁହି ରକ୍ଷ ପାଳେକ
ତାଙ୍କ ଆଗ୍ୟାଂ ଘେନି ତୁମ୍ଭେ ଚଳିବାକ ।
କହଣ ଦେବରାଏ ଚଳିଲେ ଧାତାର ସମୀପେ
ଅମର ମଣ୍ଡଳ ମାଡିଣ ବସିଲେ ଦଇତେ ।

ଅପଛରାମାନେ କେହି ନ ରହିଲେ ଡରେ
ସ୍ୱର୍ଗ ଛାଡ଼ି ପଳାଇଲେ ସେ ସ୍ୱର୍ଗର ବିଦ୍ୟାଧରେ ।
ଅପଛରାଙ୍କ ମୋକ୍ଷପାନ କାମସେଣା ମୋହିନୀ
ତାହାନ୍ତ ହରିଲେ ଯେ ଶମ୍ଭୁ ନିଶମ୍ଭୁ ବେନି ।
ଏମନ୍ତ ସମଏ ସେ ଦେବ ସୁରପତି
ଇନ୍ଦ୍ର ପ୍ରବେଶ ହୋଇଲା ବ୍ରହ୍ମାଂଡ ଯଶୋବନ୍ତୀ ।
ନିତ୍ୟକର୍ମ ବିଧି ପିତାର ଲମ୍ବ ବେଳେ
ମଘବା ଉଭା ହୋଇ ଅଛନ୍ତି ବ୍ରହ୍ମାର ସଭାତଳେ ।
ସମାଧି ନ ସାରଇଂ ଯେ ଦେବ ପଦ୍ମଯୋନି
କହି ନ ପାରଇ ସେ ଦେବ ବଜ୍ରପାଣି । ୧୧୮୦ ।
ପିତାକୁ ନବ ଦଂଡ ହୋଇଲା ପରବେଶ
ଇନ୍ଦ୍ର ଦେବତାକୁ ହୋଇଲା ନବ ସହସ୍ର ବରଷ ।
ସୁଖେଣ ଅମର ବଳସନ୍ତ ଶମ୍ଭୁ ନିଶମ୍ଭୁ ବେନି
ହିହନ୍ତା ପୁରୁଷନ୍ତ ଯେନି ପାଳନ୍ତି ଭୁବନ ତିନି ।
ମେଘେ ଖଟିଲେ ସେ ଚଳିଲେ ଗ୍ରହଗଣ ମାନ
ନବଦୀପା ପୃଥି ସେ ସକଳ ସମ୍ଭାଳିଣ ।
ଯେ ଯାହା ଠାବେ ଦିଗପାଳେ ଭଲେ ଭୋଗି
ଅକାଳେ ମୃତ୍ୟୁପୁରୁ ସେ ନ ପାରିଲେ ଲଙ୍ଘି ।
ଶମ୍ଭୁ ନିଶମ୍ଭୁ ବସିଲେ ସ୍ୱର୍ଗେ. ନବ ସହସ୍ର ବରଷ
ନର ନାଗ କିନ୍ନର ଜଣଙ୍କର ନାହିଂ ନାଶ ।
ନାଶକର ପଳାଇଲା ସେ ଯମର ଭଏ ନାହିଂ
ଜରା ଶୋଗ ମୃତ୍ୟୁ ପଶିବାକୁ ଆର କାହିଂ ।
ଏହେନ୍ତେକ କର ମେଘକୁ ଆଗ୍ୟାଂ ଦେଲା ଅସୁରା
ପ୍ରତିଦିନ ରାତ୍ର ପ୍ରହରକ ବରଷନ୍ତି ଦିବସେଣ ଖରା ।
ଖଣ୍ଡମଂଡଳ ନାହିଂ ଏକା ମହିଷାଂସୁରହି ସେ ରାଜା
ଯେ ଯାହା ଅର୍ଜନ୍ତି ସୁଖେ ବଳସନ୍ତ ଜନ ପ୍ରଜା ।
ଦଇତ ଦାନବେ ସେ ଉପଦର୍ପ ନାହିଂ
ଯାଗ୍ୟଂ ଯାଗନକ କରନ୍ତି ସେ ମହାସୁରୁ ପାଇଂ ।
ମଷାଂସୁର ରାଜାକୁ ଉଠିଲା ବହୁତ ଧୂନ
ଅନେକ ପରପୂର୍ଣ୍ଣେ ପାଳିଲା ଭୁବନ ତିନ । ୧୧୯୦ ।
ମଷାଂସୁର ପଚାରଇ ସେ ଅନେକ ମନ୍ତ୍ରୀ ଯେନ
ବଡ଼ତ ଦେବତାଏ ପାଳିଲେ ପୃଥିବୀ ତିନ ।

ଅନେକ ମନ୍ତ୍ରୀ କହଇ ଶୁଣ ଜଗୁପତି
ତୋହୋର ରାଜ୍ୟେ ରାଜକଥା ଅପୂର୍ବ ବୋଲି କହିଲେ ନାରଦ ନ ଭ୍ରାନ୍ତି ।
ଆହୋ ରମ୍ଭାକନ୍ୟା ପାଣଜାତେକ ତରୁ
ଅଜଏ ଅଏରାବ୍ରତ ଉଚ୍ଚୈସ୍ରବା ଅଶ୍ୱ ରାରୁ ।
ସେହା ଶୁଣି ଶମ୍ଭୁ ନିଶମ୍ଭୁ ଇନ୍ଦ୍ରଙ୍କୁ ଶ୍ରୀମୁଖ ଦେଲେ
ସହସ୍ର ପ୍ରଶସ୍ତ ଦୁହିଂଙ୍କ ଦୂତ ବରଗିଲେ ।
ଶ୍ରୀମୁଖ ଘେନ ସେ ଗଲେ ବେନି ଦୂତ
ଦୁଇ ଦୂତକାରଙ୍କୁ ସେ ମାଇଲେ ପ୍ରୋହିତ ।
ତହିଂର ପରେ ଶମ୍ଭୁ ନିଶମ୍ଭୁ ବେନି
ଅମର ଆବୋରିଲେ ଘଉଡ଼ି ସହସ୍ରଯୋଜନ ।
ଅମର ସ୍ୱର୍ଗ ମାଡ଼ି ରହିଲେ ବେନି ବୀର
ବଡ଼ ସୁଲଭ ସେ ପାଳିଲେ ଧନପୁର ।
ମେଘେ ପ୍ରଭୁତା କରି ନ କରନ୍ତି ବୃଷ୍ଟି
ନିରନ୍ତର ରାତ୍ରଦିନ ବରଷଇ ଜଳ ଧୂଳି ।
ଯମ ସହିତେ ଦେବ ପଳାଇଲେ ଡରେ
ନବ ସହସ୍ର ବରଷ ହୋଇଲା ମୃତ୍ୟୁ ନ ପାବନ୍ତି ନରେ ।
ଏତେ କାଳ ହୋଇଲା କାହାକୁହିଂ ନାହିଂ ଶଙ୍କା
ଧବଳ ଘର ପୁର କ ସେ ସୁବର୍ଣ୍ଣମଏ ଲଙ୍କା ।
ତପୀ ଜପୀ ତପୋଧନୀ ଋଷି ବ୍ରାହ୍ମଣ
ଚିର ଆୟୁଷ ହୋଇ ତୋତେ ବାଞ୍ଛା କରନ୍ତି କଲ୍ୟାଣ ।
ଶୁଣି ଉଲ୍ଲସିଲେ ସେ ମହିଷାଂସୁର ଅସୁର
ସାଧୁ ଶମ୍ଭୁ ନିଶମ୍ଭୁ ପ୍ରାଣର ସୋଦର ।
ସନିଧ୍ୟେ ରାଇଲା ରାଜା ରାମର ବେମାନ
ଛତ୍ରେ ଛତ୍ର ଭୂଷଣ ମକୁଟ ହାର କୁଂଡ଼ଳ ।
ଏ ଭୂଷଣ ମୋହୋର ବେଗେ ଯାଅ ଘେନି
ଏହା ଘେନି ଶମ୍ଭୁ ନିଶମ୍ଭୁଙ୍କୁ କରିବ ଦଇନି ।
ଆକାଶ ଭୁବନେ ଘେନିମ ତୁମ୍ଭେ ପୂଜା
ସ୍ୱର୍ଗପୁରେ ସେ ନ ପଶୁ ବଡ଼ୋଜା ।
ରାଜାର ଆଜ୍ଞାଂରେ ସେ ରାମର ବେମାନ
ନବଲକ୍ଷ ଯୋଧ୍ୟା ସଙ୍ଗେ ଘେନି ବଳ ।
ଶମ୍ଭୁ ନିଶମ୍ଭୁଙ୍କୁ ଅନେକ ଉପହାର ମାନ
ଘେନି ଶ ପ୍ରବେଶ ହୋଇଲେ ସ୍ୱର୍ଗ ଭୁବନ ।

କହନ୍ତି ଶୃମର ବେମାଲ ତୋତେ ବହୁତ ପରିଚୟ
ବହୁତ ବନୋଇଂ ତୋତେ କହିଲାକ ମଏଷାଂ ।
ଏ ରତ୍ନମାନ ତୁମ୍ଭେ କର ଆଭରଣ
ସୁବଧାନେ ଯେମନ୍ତେ ପାଳନ୍ତି ଗ୍ରହଗଣ ।

---

ଏଥୁ ଅନନ୍ତରେ ଯେ ପରୀକ୍ଷ ନାମେ ରାଜା
ଶୁକମୁନିଙ୍କ ପଦ୍ମପାଦେ କଲାକ ଦବ୍ୟପୂଜା ।
ଇନ୍ଦ୍ର ଦେବତା ଯେ ଧାତା ତହିଂକ ଗଲା ମୁନିନ୍ଦେ
ଜପ ବସ୍ତିର ଯେ କଲାକ ସନ୍ଦେହେ ।
ଶୁଣ ମହାରାଜା କହନ୍ତି ଶୁକ ମୁନି
ସମାଦ ସରଲ ସେ ଶୃହଲେ ପଦ୍ମଯୋନି ।
ପରୀକ୍ଷ ବୋଇଲା ଦେବ ଶୁଣିମା ଭଗବନ୍ତେ
ବ୍ରହ୍ମାର ସମାଦ ମୁନି ହେ କାହିଂର ନିମନ୍ତେ
କରତାର ନାଥ କେ ତା ତହୁଂ ବଡ଼ ଜାଣ
ତାହାର ସମାଦ କହୁ ତ କାରଣ ।
ଶୁକମୁନି ବୋଇଲେ ରାଜା ପୁଚ୍ଛାକଲୁ ଯାହା
ସାବଧାନେ ଶୁଣ ହାଦେ କହଇଂ ମୁ ତାହା ।
ଶୃଶଖାନି ଚଉରାଶୀ କୋଟି ଜୀବଜନ୍ତୁ
ସେହି ସେ ନବ ସୃଷ୍ଟିକର ବର ହେତୁ ।
ନିତ୍ୟେହେଂ ସର୍ଜନ କରୁଥାଇ ଚରସ୍ତ୍ରୁ
ଯେ ଯେତେ ମାନକୁ ନିତ୍ୟ କରଇ ଚନ୍ତା ।
ଚତୁବଦନ ଗିତାର ଅଷ୍ଟ ଆଖି
ଧ୍ୟାଏ ଅନୁକର୍ମେ ସବୁକୁହିଂ ଦେଖି ।
ଲଏ କର ସବୁକୁହିଂ ଦଅଇ ଯୋଗ କ୍ଷମ
ତହିଂ ସେ କରିଥାଇ ଜନ୍ମୁକର୍ମ ।
ନବ ସୃଷ୍ଟି ଚନ୍ତା କରିବା ନିମନ୍ତେ
ତହିଂକ ସେ ଲଏ କରିଥାଇ ଅଠର ଦଣ୍ଡ ପରିଯନ୍ତେ ।
ଆହୋ ପରୀକ୍ଷ ପୁଚ୍ଛିକଲୁ ଯେବଣ ବାରତା
ଏଥକୁ ସେ ସମାଦ ବସଇ ଦେବ ଧାତା ।
ଜାସ୍ତୁ ତୁ ପିତାମହ ଅଭଏ ବିରଞ୍ଚି
ଅଶେଷ କୋଟି ବ୍ରହ୍ମାଣ୍ଡକୁ ଲଏ ଯାହାର ସଞ୍ଚି ।
ବାମେ ପୂର୍ବ ବଦନେ ଅର୍ଥବାସୀ
ପଶ୍ଚିମେ ବିରଞ୍ଚି ବଦନେ ଋକବେଦ ଭାଷି ।

ଡାହାଣେ ଧାତାର କରତାର ବଦନ
ଏଣେ କରି ସାମ ବେଦ କରଇ ଧ୍ୟାନ ।
ଆଗେଣ ବ୍ରହ୍ମା ବଦନ ବିହନ୍ତା
ଯଦୁର୍ବେଦ ଭାଷଇ ଅଭଏ ବକତା ।
ଚତୁର୍ମୁଖେ ଗୃର ବେଦ ଆଧ୍ୟାନ
ମହାବ୍ରହ୍ମ ବୋଧନ୍ତେ ସେ ବାକ୍ୟ ବ୍ରହ୍ମ ।
ଶ୍ରୀ ବ୍ରହ୍ମ ଦେବତା ଚରଣେ ନମସ୍ତେ
ବଦସ୍ଥନ୍ତି ଶୁଦ୍ରମୁନି ସାରୋଳ ଦାସ ଅଭଗତେ ।

—o—

**ଏଥୁ ଅନନ୍ତରେ** ପରୀକ୍ଷ ନାମେ ରାଏ
ଶୁକବ୍ରହ୍ମ ପାଦେ ପ୍ରଲମ୍ବିତ କଏ ।
ମୁନି ହେ ପିତାର ସମାଧି ଛାଡ଼ିଲ ଯେତେବେଳେ
କସ ପ୍ରଭବାକ୍ୟ ସେ ବୋଇଲ ଅଖଣ୍ଡଳେ । ୧୬୩୦ ।
ବଦସ୍ଥନ୍ତି ଶୁକବ୍ରହ୍ମ ପାରଶର ନାତି
ବ୍ୟାସଙ୍କ ଲଏ କରି ସେ କହଇ ସୁମତି ।
ଏସନେକ ସମଏ ସମସ୍ତ ବିଦ୍ୟାଧରେ
ଅପସରା ଗଣେ ସେ ଅଛନ୍ତି ସଙ୍ଗରେ ।
ସ୍ୱାମୀ ତୁମ୍ଭେ ଯେ ଅମର ଭୁବନ ଅଇଲ ଛାଡ଼ି
ଶମ୍ଭୁ ନିଶମ୍ଭୁ ବସିଲେ ଅମର ସ୍ୱର୍ଗ ମାଡ଼ି ।
ସ୍ୱାମୀ କାମସେଣୀ ମୋହୋନୀ ତୋହୋର ଅପସରା ବେନି
ତାହାଙ୍କୁ ହରିଲେ ସେ ଶମ୍ଭୁ ନିଶମ୍ଭୁ ବେନି ।
ପୁଣି ହଂ ଅଇଲେ ଗୃମର ବେମାଳ
ଅନେକ ରାକ୍ଷସ ତୁଲେ ସୈନ୍ୟ ବଳ ।
ବ୍ରହ୍ମାଙ୍କ ଲଏ ତେଜିବାର କାଳେ
ଇନ୍ଦ୍ର ଦେବତା ପ୍ରଣିପତ୍ୟ ବ୍ରହ୍ମାଙ୍କ ସମ୍ଭତଳେ ।
ଇନ୍ଦ୍ର ପ୍ରଣିପତ୍ୟ ଦେଖିଣ ପିତାମହ
ଉଠ ହୋ ପୁରନ୍ଦର କସ କାର୍ଯ୍ୟ ତୋହୋର କହ ।
ବୋଲଇ ଅମରାଧି ନାଥ ତୁ ବିଧି ବିଧାତା
ତୁ ଦେବ ଗୁଣ୍ଡଳୁ ସୃଷ୍ଟିର ଚକ୍ରା ।
ତୋହୋର ଆଗ୍ୟାଂରେ ମୁହି ଅମରାଧି
ମୁ ତ୍ରଇଲୋକ୍ୟ ପାଳଇଂ ତୋହୋର ବୁଧି ।

ମଷାଂସୁର ବୋଲି କରି କପିଲ ସିଂଘର ବାଳ
ସେ ମୋହୋର ଘେନଲେ ଅମର ମଣ୍ଡଳ । ୧୬୦ ।
ପାରଜାତେକ ତରୁ ଅଏରାବ୍ରତ କରୀ
ରମ୍ଭା କନ୍ୟା ଉଇଁସବା ଅଶ୍ୱ ମାଗିଲେ ମୋତେ ଗୃର ।
ଶ୍ରୀମୁଖ ଦେଇଂଣ ପେଷିଲେ ମୋତେ ଦୂତ
ଧ୍ୱଗାଂସି ବଚନ ମୋତେ ବୋଇଲେ ବହୁତ ।
ସ୍ୱାମି ତୋହୋର ପ୍ରସନେ ମୁହିଂ ଦେବରାଜା
ରାଟଗଣ ଦୂତ ଦୁହିଂଙ୍କ ମୁ କଲି ପ୍ରାଣତେଜ୍ୟା ।
ସେ ରାଗ ଘେନି ଶମ୍ଭୁ ନିଶମ୍ଭୁ ବେନି
ସନ୍ୟବଳ ସହିତେ ଅମର ମୋର ଘେନି ।
ନାଶିଲେ ବିଦ୍ୟାଧରୀ ମୋହୋମୀ କାମସେଣା
ତୋହୋର ବରେ ସେ ଅସୁର ଜଗଜଣା ।
ଅସକ୍ଷ କରି ଯେ ଦେଲୁ ତାକୁ ବର
ତେଣୁକରି ମଷାଂ ହୋ ଘେନଲା ତନପୁର ।
ମୁହି ତାହା ସମରେ ସହି ନପାରି
ପୂର୍ବେ ଅମର ହୋଇବ ବୋଲି ବର ଘେନଲା କରି ପ୍ରସାଦ ।
ଅବଶେଷେକ ଯୋଗାଡ଼ ଥୋଇଂଲା ପିତା ଆଗେ
ଶମ୍ଭୁ ନିଶମ୍ଭୁ ଏବେ ଥାନ୍ତି ଅମର ସ୍ୱର୍ଗେ ।
ବିଦ୍ୟାଧରୀ ଅପଛରୀ ସମସ୍ତ ବାନ୍ଧି ଘେନି
ଯଶୋବନ୍ତୀ ବ୍ରହ୍ମାଣ୍ଡେ ରହିଲେ ସହସ୍ରଯୋଜନ ।
ଆହୋ ପରୀକ୍ଷ ଚନ୍ଦ୍ରକାଳ ଅନ୍ତ ବୋଲି ଏକ ସମ୍ବତ୍ସରେ
ସିଂଘମାସ ଶୁକଳ ପକ୍ଷ ଷଷ୍ଠୀ ଦିବସରେ । ୧୭୦ ।
ଶଉରୀ ବାର ନକ୍ଷତ୍ର ବିଷ୍ଟି ନାମେ କରଣ
ବିସିକୁମ୍ଭ ନାମେଣ ଯୋଗ ସେଦିନ ଘଟଣ ।
ସେ ଦିନ ଶମ୍ଭୁ ନିଶମ୍ଭୁ ବେନି
ଅଳକା ଭୁବନକୁ ବାହିଲେ କୃତାନ୍ତେକ ବଳ ଘେନି ।
ଆଗିଆଣି ଥାଠରେ ଥାନ୍ତି ଚାମର ବେମାଳ
ତାହାଙ୍କର ତୁଲେ ନବ ସହସ୍ର ଭୃତ୍ୟ ବଳ ।
ଶୂନ୍ୟ ପୁରୁଷ କହିଲେ କୁବେର ଦେବତାକୁ
ଶମ୍ଭୁ ନିଶମ୍ଭୁ ବାହିଲେ ତୋହୋର ଭୁବନକୁ ।
ଶୁଣି ଅନେକ ବିଷାଦ ଦେବ ଭଣ୍ଡାର ଅଧିକାରୀ
ସମରେ ମୁହିଂ ତାକୁ ନୋହିବି ସମସରି ।

ମ୍ନପତ ବାଧି ଦେବଙ୍କର ଅବଶେଷ ଯୋଗାଡ଼ କାଢ଼ି
ଏକାଠିଲ ଅଲକା ନାଥ ଦେବ ଭୁବନ ଗ୍ଳାଢ଼ି ।
ଏ ଇଂଶ ନଶାଚରେ ପଶିଲେ ଦେବପୁରୀ
ବେଦ ରତ୍ନମାନ ସମସ୍ତ କୂର କରି ।
ଗିଛନ୍ତି ଦେବ ବସନ ହରନ୍ତି ବାରାଙ୍ଗନା
ଆଡ଼ାଣ ଜ୍ଵଳସନ୍ତି ଅସୁର ବଳ ଘେନା

ଦେବତା ଅବଶେଷ ଯୋଗାଡ଼ ମାନ ପାଇଂ
ଧାଇଲେ ରାକ୍ଷସ ବଳ କୁବେରକୁ ଗୋଡ଼ାଇଂ ।
ମହା ବିଶ୍ଵରୂପ ସେ ଦାନେବଙ୍କର ଦେଖି
ପଳାଇଂ ଦେବଲୋକେ ଆଶ୍ରମ ଉପେକ୍ଷି । ୧୨୬ ।
କୋବେର ପଳାବଇ ନଇଋତ ପୁରେ
ଗୋଡ଼ାଇଂ କଢାଇଲେ ସେ ବେନି ଅସୁରେ ।
ପଳାଇଲେ କୋବେର ଗୁଡ଼ଣ ଦେବରତ୍ନ
ଘେନନ୍ତି ଦାନବେ ସେ କରଣ ଅନେକ ଯତ୍ନ ।
ଅବଶେଷ ଯୋଗାଡ଼ ପାଇଲେ ବୀର ଯନ୍ତୁଂ
ଆଠ ଘେନ ଚାମର ବେମାଳ ବାହୁଡ଼ିଲେ ତହୁଂ ।
ଭୁଲେଣ ଛନ ମଭ୍ରତ ବଳ
କୋବେର ଅଳକାପୁର ବେଢ଼ି ରହିଲେ ଚାମର ବେମାଳ ।
ଦେବରତ୍ନ ଘେନ ସେ ଅନେକ ହରଷ
ଅମରାବତୀ ଭୁବନେ ଶମ୍ଭୁ ନିଶମ୍ଭୁ ପ୍ରବେଶ ।
ଇନ୍ଦ୍ର ଦେବତାର ଅବଶେଷ ଯୋଗାଡ଼ ମାନ
ମହିଷାଂର ତହିଂକ ବୋଲି ଘେନଗଲେ ଯାତୁଧାନ ।
କୁଳବତୀ ପାଟଣେ ମହିଷାଂସୁର ବନେ
ଆକାଶୁଂ ଦ୍ରସନ ଯାଇଂ କଲେ ଦନୁଯେ ।
ରତ୍ନମାଳା ଥୋଇଲେ ନେଇଂ ମହା ନଶାକାଳେ
ତମିର ଦ୍ଵାରଣ ହୋଇଲା ମହାମଣ୍ଡଳେ ।
ଅହୋ ପରୀକ୍ଷ ଆକାଶ ସମ୍ବାଦ କହନ୍ତି ଦୂତମାନେ
ଏହାଙ୍କର ଗଲେ ପଳାଇଲେ ଦେବତାମାନେ ।
ଇନ୍ଦ୍ର ଦେବତାର ଅବଶେଷ ଯୋଗାଡ଼ମାନ
ମହିଷାଂସୁର ରାଜା ତା କଲା ଆଭରଣ । ୧୨୭ ।
ସମୋଦ୍ର ମନ୍ଥନ କାଳେ ଯେବଣ ରତ୍ନ ପାଏ
ତାହା ବାନ୍ଧିଲେ ମହିଷାଂସୁର ରାଏ ।

ରକ୍ତବୀର୍ଯ୍ୟ ବୀରଘଣ୍ଟ ଅସୁର ବଡ଼ୁଲାକ୍ଷ
ସବୁଙ୍କର କଣ୍ଠେ ଦେଲ ଦେବତାଙ୍କର ଜଏମାଲା କଷ ।
ବଜାନ୍ତ କଢ଼ା ଦାଉଣ୍ଡି ମର୍ଦ୍ଧଲ ଘୁମୁରା
କାଦମ୍ବରୀ ପାନେ ନାଚନ୍ତ ମହାବୀର ।
କଉତୁକେ ଆଗ୍ୟାଁ ଦେଲ ମଷାଂସୁର ମହାରାଜ
ମନ୍ତ୍ରୀକଂ ବୋଇଲେରେ ଦଣ୍ଡ ମୋର ସାଜ ।
ରାଜାର ବଚନେ ସେ ରାଜାର ସାରଥି
ମଣ୍ଡିଲ ବିମାନ ସେ ନବରତ୍ନ ଜ୍ୟୋତ ।
ଅହ୍ବ୍ରତେ ବ୍ରାଘ ନେଇ ଯୋଚିଲାକ ରଥେଂ
ଆକାଶ ମଣ୍ଡଳକୁ ସେ ଚଳାଇ ଦ୍ରୁତପାଦେ ।
ବୀରତୂର ଢୋଲ ଟମକ ନିଶାଣ ବାଜେ
କୃତାନ୍ତେକ ସନ୍ୟ ଘେନଣ ମଏଷାଂସୁର ବଜେ ।
ବ୍ରହ୍ମାର ବରେ ସେ ଅଟନ୍ତ କାମରୂପୀ
ଜଳ ଭୁବନ ଶୂନ୍ୟ ଭୁବନ କ୍ଷେପି ।
ପବନହୁଂ ବେଗେ ଉଡ଼ନ୍ତ ଶାର୍ଦ୍ଧୋଲ
ବିଜଏ ମହାଅସୁର ସେ ଆକାଶ ମଣ୍ଡଳ ।
ଗନ୍ଧର୍ବ ଦକ୍ଷ କିନର ଯେ ଅବା ଥିଲେ ସ୍ୱର୍ଗପୁରେ
ଅସୁରଙ୍କର ଭଏ ସେ ପଳାଇଲେ ଡରେ । ୧୬୮୦ ।
ଇନ୍ଦ୍ର ସେ ରକ୍ଷପାଳେକ କରଇ ଯିନା ସ୍ୱର୍ଗ
ତାହାର ଅଭ୍ୟାନ୍ତରେ ଦେବତାଏ ରହିବେ କେବଣ ବାଗ ।
ଅସୁର ଦୁରନ୍ତେକ ପଡ଼ିଲେ ଯହୁଂ ମାଡ଼ି
ପଳାଇଲେ ବୃନ୍ଦାଅର୍କେ ଗଗନ ମଣ୍ଡଳ ଛାଡ଼ି ।
ସମସ୍ତ ମଣ୍ଡଳେ ଯେ ଖେପଇ ମଷାଂସୁର
ଅସୁର ଭୋଗ୍ୟ ହୋଇଲା ସ୍ୱର୍ଗ ମଣ୍ଡଳ ।
ଅମରାବତୀ ଭୁବନେ ପ୍ରବେଶ ବଳ ସବୁ
ବାନ୍ଧି ଘେନ ଦ୍ରଶନ କଲ ଶମ୍ଭୁ ନିଶମ୍ଭୁ ।
ବାସେବ ଦେବତାର ଅବଷେକ ଯୋଗାଡ଼ି
ଆଭରଣ କଲ ସେ ମଷାଂସୁର ହୃଦସୁର ।
ରକ୍ତବୀର୍ଯ୍ୟଙ୍କୁ ଦଅନ୍ତ ଦେବରତ୍ନ ବାନ୍ଧି
ଅନେକ ମନ୍ତ୍ରୀଙ୍କି ସେ ଦେଲ ସାତଣଧି ।
ଅନେକ ରତ୍ନ ଦେଲେ ବୀରଘଣ୍ଟ କାନ୍ତମାଲା
ଚଣ୍ଡ ମୁଣ୍ଡ ଦୁହିନ୍ତ ପୁଷ୍ପଜଏ ମାଲା ।

ବଞ୍ଚିତ ରହି ଦେଲେ ଭାସ୍କର ବିଡ଼ାଳାକ୍ଷ
ସୁରବର ଭାର୍ଗବ ଅବଏ ବିରୂପାକ୍ଷ ।
ବଜ୍ର ଦଣ୍ଡ କାଳ ଦଣ୍ଡ ବିରୂପା ବୀରବାହୁ
ଲୋହପୁର କଙ୍କ ଧଙ୍କ କାଳାନଳ ରାହୁ ସେହୁ ।
ବାହୁ ସୁବାହୁ ଯେ ଚଣ୍ଡ ପ୍ରଚଣ୍ଡ
ଲେଖି ଗଗନଘୋଷି ଅଭଏ ଦୁର୍ଦଣ୍ଡ । ୧୬୯୦ ।

ଡମ୍ବୁରା ଦୁମ୍ବୁରା ସୁଖା ଦୁର୍ମୁଖା
ଗିଳା ମହାଗିଳା ତାଡ଼କା ବିମୁଖା ।
ମଷାଂସୁର ରାଜାର ଅସୁର ସେନାପତିମାନ
ସବୁନ୍ତ ଭୂଷଣ ସେ ଅମରାବତୀ ରତ୍ନମାନ ।
ଆଟକ୍ରା ପଦ୍ମିନୀ ଅମର ଭଣ୍ଡାର ଯେ ଆଣିଲେ ଜୁରକରି
ଧନବନ୍ତ ପଣେ ତାକୁ କେହି ଆର ସରି ।
ମଷାଂସୁର ପ୍ରଶଂସଇ ସାଧୁରେ ଶମ୍ଭୁ ନିଶମ୍ଭୁ
ତୁମ୍ଭର ପ୍ରସାଦେ ସ୍ୱର୍ଗ ପ୍ରାପତ ହୋଇଲି ବାବୁ ।
କାଳକେତୁ ଦାନବକୁ ରାଇଣ ଦେଲି ଶାଢ଼ୀ
ଯମ ସଞ୍ଜୀବନୀ ପୁରେ ତୁମ୍ଭେ ହୁଅ ଦଣ୍ଡଧାରୀ ।
ବୀରଘଣ୍ଟ ନାମେଣ ଯେବଣ ସେନାପତି
ହେମବନ୍ତ ଭୁବନେ ତୁମ୍ଭେ ହୁଅ ଚକ୍ରବର୍ତ୍ତୀ ।
ପୁଣ ଆଗ୍ୟାଂ ଦେଲି ସେ ଅସୁର ବିଡ଼ାଳାକ୍ଷ
ହିରଣ୍ୟଗର୍ଭପୁରେ ରହିଲି ବିରୂପାକ୍ଷ ।
ପ୍ରସନେ ଶାଢ଼ୀ ଦେଲି ଗୃମର ବେମାଳକୁ
ତୁମ୍ଭେ ଭୋଗ କରସି ଅଳକା ଭୁବନକୁ ।
ପ୍ରସନ୍ନେ ମଷାଂସୁର ଦେଲେ ଯେତେ ଶାଢ଼ୀ
ଶମ୍ଭୁ ନିଶମ୍ଭୁସୁର ପୁରେ ଅଧିକାରୀ ।
ନାରଦେ କହିଲେ ଦେବ ଶୁଣ ବେଦପଣ୍ଡି
ମଷାଂସୁର ସେନାମାନ ମାଡ଼ିବସିଲେ ବାରସ୍ୱର୍ଗ । ୧୭୦୦ ।
ଏଥୁ ଅନନ୍ତରେ ସେ ଚଣ୍ଡମୁଣ୍ଡ ବେନି
ପାତାଳ ପୁରକୁ ଯେ ଅବଧାରି ପାଠ ଘେନି ।
ଜଳାତରଙ୍ଗ ନାମେ ସେ ଯେବଣ ସେନାପତି
ବରୁଣ ଭୁବନେ ସେ ହୋଇଲା ଚକ୍ରବର୍ତ୍ତୀ ।
ଯେ ଯାହାର ଭୁବନ ଯେ ତେଜିଲେ ବୃନ୍ଦାଅର୍କେ
ବ୍ରହ୍ମାର ଭୁବନେ ଯାଇ ପଶିଲେ ଦେବଲୋକେ ।

ଚନ୍ଦ୍ର ସୂର୍ଯ୍ୟ ପବନ ବରୁଣ ସ୍ଥାନ ଭ୍ରଷ୍ଟ
ବୋଇଲେ ପିତାମହ ସମସ୍ତଙ୍କର କଷ୍ଟ ।
ଶୁଣିଲେ ଧେନ୍ଦଲେ ସେ ସମସ୍ତ ଦେବାସୁର
ମରାଳ ବାହାନେ ବଜେ ବେଦବର ।
ଇନ୍ଦ୍ର ବଜେ କଲେ ଯେ ଅଇରାବତ ପିଠି
ମଇଂଷି ବାହାନେ ଯମ କାଳାନଳ ଦୃଷ୍ଟି ।
ଗ୍ରହଗଣ ସଙ୍ଗତେ ନକ୍ଷତ୍ରମାନେ ବଜେ
ବୃଷଭ ବାହାନେ ସଦାଶିବ ସାଜେ ।
ମରୁତ ଦେବତା ବଜେ କଲେ ମୃଗ ଆସନେ
ବୃହସ୍ପତି ବଜେ କଲେ ମନ ହଂସ ଯାନେ ।
ଉଚ୍ଚୈଶ୍ରବା ଅଶ୍ୱେ କାମଦେବ କ୍ଷେତ୍ରପାଳ
ସମସ୍ତ ଦେବତାଏ ତରନ୍ତି ଛିରୋଦ୍ର ମହାଜଳ ।
ଅସୁରନ୍ତ ଦେଖିଣ ସେ ଦେବ ସ୍ତ୍ରୀରମାନେ
ଦେବତାଙ୍କ ସଙ୍ଗେ ଗଲେ ନ ରହିଲେ ଗଗନେ । ୧୦୮୧୦ ।
ଗଗନ ମଣ୍ଡଳେ ଯେ ନ ରହିଲେ କେହି
ସମସ୍ତ ଦେବତାଏ ହୋଇଲେ ଜଳଶାୟୀ ।
କ୍ଷୀର ସମୁଦ୍ରରେ ଯହିଂ ନାରାୟଣ ବଜେ
ତହିଂଯାଇ ମିଳିଲେ ସକଳ ଦେବରାଜେ ।
ଦେଖିଲେ ନାରାଏଣ ଅନନ୍ତଯୋଗ ନିଦ୍ରା
ଲକ୍ଷ୍ମୀ ଜାନୁ ସୀମସ୍ଥାନେ ପାଦେଣ ନର୍ମଦା ।
ଆରୋହା ପକ୍ଷୀ ରାଜା ବରଜଚନ୍ଦ୍ର ନାମେଣ ମାହାନାଗ
ତାର ଫେରୁ ଉପରେଣ ନାରାଏଣ ମହାଲଏ ଯୋଗ
ଯେମନ୍ତ ସମଏ ତେତିଶ କୋଟି ଦେବ ।
ବିନୟ ହୋଇ ଉଭା ଶ୍ରୀ ନାରାଏଣଙ୍କ ଆଗ ।
କୃତାଞ୍ଜଳି ହୋଇଣ ସେ ବନ୍ଦୟନ୍ତି ଦେବ ଧାତା
ନାରାୟଣର ସମାଦ ଭାଙ୍ଗ ଜଗତ ମାତା ।
ପିତାର ବଚନ ଶୁଣି ଅଭୟେ ବାକ୍ୟ ଦେବୀ
ବିଷ୍ଣୁଙ୍କୁ ଭୟେ କର ସେ ପଞ୍ଚମସ୍ୱରେ ରାବ ।
ଅଜପା ଲୟେ କର ସଙ୍ଗୀତ ମେଳା
ସପତ ସ୍ୱର ବୀଣା ଗୃହଲେକ ଅବଳା ।
ସରିମମଗ ଧୁନି ସପତ ସ୍ୱର ଗୀତ
ଶ୍ରବଣେ ପଶିଲା ବାକ୍ୟ ଦେବୀର ସଙ୍ଗୀତ ।

ବେଣୁ ମଧୁର ଓଙ୍କାର ସ୍ୱର ଗୀତ
ମାହା ବ୍ରହ୍ମ ଭେଦିଲା ଚେତିଲେ ବନମାଳୀ । ୧୩୨୦ ।
ନୟନ ମେଲିଣ ଯେ ଗୃହିଂଲେ ଅନାଦି
ସୁରଗଣ ଘେନ ପ୍ରଣିପତ୍ୟ ଜମ୍ବୁଭେଦୀ ।
ଯହୁଂଣ ଲମ୍ଫେ କରି ରହିଂଲେ ମହାତ୍ମା
ଶତ ସହସ୍ର ଦଣ୍ଡ ପ୍ରଣମ୍ୟ ହୋଇଲେ ଦେବ ବ୍ରହ୍ମା
ବିଷ୍ଣୁନାଥ ଦେଖିଲେ ଯେ ଦେବତାଙ୍କର ମୁଖ
କିମ୍ଭୂତ କାରଣେ ଦେବ ପାଇଲେ ଏତେତ ଦୁଃଖ ।
ପ୍ରଣିପତ୍ୟ ହୋଇଣ ଯେ ବୋଲନ୍ତି ଦେବ ପିତା
କ୍ଷୀରେନ୍ଦ୍ରଶାୟୀ ହୋଇ ଛାଡିଲୁ ସର୍ବଚନ୍ତା ।
ବିଷ୍ଣୁ ବୋଇଲେ ତୁ ନବସୃଷ୍ଟି କରତା ହୋଇ କାହାକୁ ଏତେକେ ଭୟେ
କ୍ରୋଧଭର ହୋଇ ବୋଲନ୍ତି ଦେବତାଏ ।
ସହିତ ନ ପାରିଲୁ ଆମ୍ଭେ ଦୈତ୍ୟଙ୍କର ଘାରି
ମୁଖେ ରୁଧିର ଯେ ବହଇ ବସୁନ୍ଧରା ।
ଅଗ୍ନି ଚନ୍ଦ୍ର ସୂର୍ଯ୍ୟ ବରୁଣ କଲେ ଗୁହାରି
ମହିଷାସୁର ଘାରା ଦେବ ସହିତ ନପାରି ।
ଆକାଶକୁ ବାହିଲେ ସେ ଅସୁର ବଳ ସେନା
ଯମ ପବନ ଜଳ ଅଗ୍ନି ନ କରନ୍ତି ଗଣନା ।
ଅପସରନ୍ତ ରମିଲେ ଅନ୍ଧକର ବୁଦ୍ଧି
କୁବେର ପଳାଇଲା ଛାଡ଼ିଣ ଅଷ୍ଟନିଧି ।
ଜଳ ଶୂନ୍ୟ କଲେ ବରୁଣପୁରେ ପଶି
ଧର୍ମିର ବିଦାରଣ ମଣି ନେଲେ ନାଗପୁରୁ ଆସି । ୧୩୩୦ ।
ନର ଲୋକ ନାଗ ଲୋକ ସୁର ମଣ୍ଡଳେ
ଅମର ମାଡି କଷିଲେ ଦୁର୍ବୃତ୍ତେକ ଗଣ୍ଡାଳେ ।
ସ୍ୱାମୀ ତୁ ଛାଡ଼ିଲୁ ଯହୁଂ ଜଗତର ଚିନ୍ତା
ଦେବ ଲୋକ ନାଗ ଲୋକ ପାଇଲେ ଅବସ୍ଥା ।
ଆହେ ଦଶନହ ମୁଖେ ଭରଣ ଦେବତାଏ ଅଙ୍ଗ କଷ୍ଟି
ବିଜୟେ ଅସୁରଙ୍କ ବୈନେକ ସେ ପିଠି ।
ତେତିଶ କୋଟି ଦେବ ଯେନେକ ସଙ୍ଗତେ
ବିଜୟେ ଜଗୁସୋଦର ଅନନ୍ତଗିରି ପର୍ବତେ ।

ତେତିଶ କୋଟି ଦେବେ ପାଇଲେ ବଡ଼ ଦୁଃଖ
ଏମନ୍ତ କର ବର କମ୍ପା ଦେଲୁ ଚତୁର୍ମୁଖ ।
ପୁଣି ଶ୍ରୀହରି ବୋଇଲେ ହୋ ଶୁଣ ବିଶ୍ୱେଶ୍ୱର
ତୁ ଯେ ବଧ୍ୟ କଲୁ ଅସୁର ତ୍ରିପୁର ।
ତୋହର ନାମ ତେଣୁ ହୋଇଲା ତ୍ରିପୁରାରି
ଏତେବ ଶମ୍ଭୁ ନଶମ୍ଭୁ କମ୍ପା ତୁ ନପାରିଲୁ ମାରି ।
ଈଶ୍ୱରେ ବୋଇଲେ ମହେଷାଂ ତପ କଲା ବିରିଞ୍ଚି ଦେବତାକୁ
ପୁରୁଷେ ବଧ୍ୟ ନୋହିବ ବୋଲି ସେ ବର ମାଗିଲା ପିତାକୁ ।
ଦେବ ଲୋକେ ନାଗ ଲୋକେ ନର ଲୋକେ ନ ମରିବା
ନର ବାନରେ ଋକ୍ଷେ ରାକ୍ଷସେ ବଧ୍ୟ ନୋହିବ ।
ଯମେ ନ ମରିବ ନ ମରିବ ପ୍ରଳୟ କାଳେ
ବାତେ ନ ଉଡ଼ିବ ନ ପୋଡ଼ିବଂ ଅନଳେ ।
ଦେବତାଙ୍କର କୋପ ଋଷିଙ୍କର ଶାପ୍ୟ
ଏମାନ ନ ପଡ଼ିବ ନ ଲାଗିବ ଯୋଗ ତପ ।
ସ୍ୱାମି ଏନ୍ତେ କରି ଦୈତ୍ୟ ବର ପ୍ରସାରି
ପୁରୁଷେ ବଧ୍ୟ ନାହିଁ ବ୍ରହ୍ମାର ବରେ କରି ।
ସେ ନାରାଏଣ ବୋଇଲେ ସେହୁ ନ ମରିବ ତମାର ହସ୍ତେ
ଶ୍ରୀକୃଷ୍ଣେ ଅଭସ୍ତେ ବୋଲି ଜାଣିଲେକ ଦୈତ୍ୟେ ।
ନାରାୟେଣଙ୍କର ହସ୍ତେ ଅବଧ୍ୟ ଯହୁଂ ଶୁଣି
ଉଚ୍ଚସ୍ୱରେ ରୋଦନ କଲାକ ଧରଣୀ ।
ଆବର ମୁହିଂ ଯାଇତ ନ ପାରଇ ମହୀତଳେ
ପୋଡ଼ୁ ସେ ଅବନୀ ଯାଉ ରସାତଳେ ।
ଚନ୍ଦ୍ର ସୂର୍ଯ୍ୟେ ବୋଇଲେ ନୋହିବୁ ଆମ୍ଭେ ଉଦେ
କ୍ଷୀର ସୋମନ୍ତ୍ରେ ଖଟିବୁଂ ଶ୍ରୀ ନାରାୟଣଙ୍କ ପାଦେ ।
ପବନ ବୋଇଲା ମୁଂ ନ ବହିବ ଶୀତଳ
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ମରନ୍ତୁ ସକଳ ।
ଶ୍ରୀ ନାରାୟଣଙ୍କର ମୁଖ ଚାହିଁ ରୋଦନ୍ତି ବୃନ୍ଦାଅର୍କେ
ଖଗେଶ୍ୱର ଆଗ୍ରେ ମଲୁ କଙ୍କର ଦେବଲୋକେ ।
ଏମନ୍ତ ସମଏ ମହା ନଶାର କାଳେ
ଦେବଙ୍କର ବିକଳ ଅନନ୍ତ ଅମର ମଣ୍ଡଳେ ।
ଆଶ୍ୱିନ୍ୟ ମାସ କୃଷ୍ଣପକ୍ଷ ଅଷ୍ଟମୀର ତଥି
ଉତ୍ତର ସ୍ୱାତି ନକ୍ଷତ୍ରକୁ ଭୋଗ ସେହୁ ରାତି ।

ବାଳବ ନାମେ କରଣ ସୌଭାଗ୍ୟ ନାମେ ଯୋଗ
ରାତ୍ର ପ୍ରହରକ ମଧ୍ୟେ ଦେବତାଏ ଉଦବେଗ ।
ଏମନ୍ତର ସମୟେ ଯେ ମହେଂଷାସୁର ଦନୁଜେ
ମହାମତ୍ତ ମଇଂଷିଏ ହୋଇ ଅହଙ୍କାର ଦଗବଜେ ।
ଶ୍ରୀ ନାରାୟଣ କହୁଛନ୍ତି ବ୍ରହ୍ମାଙ୍କର ଆଗେ
ମହେଷାସୁର ଦାନବ ବଧ୍ୟ ହୋଇବ କେବଣ ବାଗେ ।
ଏଥିକ ବୁଦ୍ଧି ତୁମ୍ଭେ କର ଏହୁକ୍ଷଣି
ଗିରିବର ତଳେ ଥାଇ ତା ମହେଷାଂସିଂଘ ଶୁଣି ।
ଶୁଣି ପଛଧୁଆଁ ଦେଇ ଯେ ଧାଇଁଲା ଅତି ବେଗରେ
ଗିରିରାଜ ଉପରେ ନେଇ ଯେ ମାଇଲା ବଜ୍ର ସିଂଘେ ।
ସିଂଘେ ମହାବଳ ଦାନବ ଯନ୍ତ୍ରେ ମାଇଲା ଗଳଗାଜି
କି ଅବା ମେରୁଗିରି ପଡ଼ୁଅଛି ଭାଜି ।
ତେତିଶ କୋଟି ଦେବେ ହୋଇଲେ ମହାରାଗି
ସବୁଙ୍କର ମୁଖରୁ ଯେ ବୁଧିର ଅଗ୍ନି ଉଚ୍ଛୁଳି ।
ମହା ପ୍ରଚଣ୍ଡ ଯେ ବିକାଶିଲା ଭୂତ
ମହାବ୍ରହ୍ମ ଅନଳ ଯେ ହୋଇଲା ତହୁଁ ଜାତ ।
ରୁଦ୍ର ଅଗ୍ନି ବିଷ୍ଣୁ ଅଗ୍ନି ସୂର୍ଯ୍ୟ ଅଗ୍ନି ସବୁ ରଣ୍ଡ
ମହା ପ୍ରଳୟ ଅଗ୍ନି ଯେ ସପତ ବ୍ରହ୍ମାଣ୍ଡ ।
ମହାତେଜ ଦେଖି ମହେଷାସୁର ଘୂଞ୍ଚିଲ
ପଳାଇ ଯାଇ ଶମ୍ଭୁ ନିଶମ୍ଭୁଙ୍କୁ ପୁଚ୍ଛିଲ । ୧୩୬୦ ।
ଦେବଙ୍କର ଚରିତ ହୋ ଦେଖିଲୁ ମାତୁଳ
ମେରୁଗିରି ଶିଖରେ ହୋଇଲେ ଏକ ମେଳ ।
ଅହଙ୍କାର ବଚନେ ବୋଲେ ଶୁଭୁଅଛି ମୋତେ
ବୋଲୁଛନ୍ତି ମହେଷାସୁର ମରିବ କେମନ୍ତେ ।
ଆଜ ସମସ୍ତ ଦାନବେ ଦେବଙ୍କୁ ଦିଅ ଧାଡ଼ି
ଦେବତାମାନଙ୍କୁ ଯେ ପକାଅ ସର୍ବ ମାରି ।
ଶମ୍ଭୁ ନିଶମ୍ଭୁ ବୋଇଲେ ଆକାଶ ଲେଛି ପଳାଇଲେ ବୃନ୍ଦାଅର୍କେ
ଯଶୋବନ୍ତୀ ପୁରେ ଥାନ୍ତି ଦେବଲୋକେ ।
ମହେଷାସୁର ବୋଇଲା ଭଙ୍ଗ ହେ ବ୍ରହ୍ମାଣ୍ଡ
ପିତାର ପୁରେ ନେଇ ବସାଅ ଚଣ୍ଡ ମୁଣ୍ଡ ।
ଶମ୍ଭୁ ନିଶମ୍ଭୁ ବୋଇଲେ ବ୍ରହ୍ମାବର ଦେଲେକ ତୋତେ
ଅଣଦୋଷେ ପିତାଙ୍କୁ ତୁ ଲଙ୍ଘିବୁ କେମନ୍ତେ ।

ମହେଷାସୁର ବୋଇଲା ହୋ ସେ ଯେବେ ଆମ୍ଭର ପିତା
ଦେବଙ୍କର ଅଟଲେ ପଶି ସେ ଆମ୍ଭଙ୍କୁ ଚିନ୍ତଇ ମନ୍ଦ ଚିନ୍ତା ।
ପିତା ହୋଇ ଯେ କୁଟୁମ୍ବ ନ ପାଳଇ
ତାହାକୁ ବଧ୍ୟ କଲେ ଦୋଷ ନାହିଁ ସର୍ବକାଳହିଁ ।
ଶୁମ୍ଭ ନିଶୁମ୍ଭ ବୋଇଲେ ଦେବତାଏ ମେରୁଗିରିରେ ଥିଲେ
କେବଣ ଭୁବନକୁ ସେ ପଳାଇଣ ଗଲେ ।
ମଷାଂ ବୋଇଲା ମୁ ଅନଳ ତେଜ ଦେଖି
ମୁହିଂ ଅଇଲି ସେ ଦେବତାନ୍ତ ଉପେକ୍ଷି । ୧୩୭୦ ।
ଚଣ୍ଡ ମୁଣ୍ଡ ବୋଇଲେ ଚାଲ ଯିବା ମେରୁଗିରି
ବ୍ରହ୍ମାର ପୁରକୁ ଅଦଭୁତେ ଦେବା ଧାଡ଼ି ।
ଆହୋ ପରୀକ୍ଷ ରାଜା ବ୍ରହ୍ମାର ପୁରକୁ ମହେଷାସୁର ଆଠ ପାଞ୍ଚଇ
କମ୍ପେହା ହୋଇ ସେ ଶଙ୍କର ବୁମାଞ୍ଚଇ ।
ଆଠ ଯେଜ ମହେଷାସୁର ନିଜ ରାଜ୍ୟ ପାଇ
ଅନେକ ମନ୍ତ୍ରୀଙ୍କ କହିଲା ଶବଦାଇ ।
ଅନେକ ମନ୍ତ୍ରୀ ବୋଇଲେ ରାଜା ମନ୍ଦକୃତ କଲୁ
ଅମରାବତୀ ଯେଜଲୁ ଲକ୍ଷ୍ମୀ ଶିରାଚ୍ଛତ୍ର ବହିଲୁ ।
କିପୁର ତାରକା ରକ୍ଷ ଭକ୍ଷ ଆଦିକରି ତୋହୋର ଉପର ବଂଶେ
ଅମର ଭୁବନ ମାଡ଼ି ନୁଅଇଲେ ରାକ୍ଷସେ ।
ଶୁଣି ମହେଷାଂସୁର କଟିଂତେ ଭସ୍ମ କଲା
ପୁଣିହିଂ ଗର୍ବପଣେ ପ୍ରତାପ୍ୟାଂ ଦେଖାଇଲା ।
ସିନ୍ଧୁ ଉପସିନ୍ଧୁ ଯେଜ ବେନ ସେନାପତି
ଆଠ ଗୋଟି ଯେଜ ଆସ ସିନ୍ଧୁ ଉତ୍ତର କୂଳ କଠ ।
ପଳାଇଣ ଦେବତାଯ୍ୟେ ଯେବେ ହୋଅନ୍ତି ଜଳଶାୟୀ
ସବୁନ୍ତହିଂ ଧରବୁଟି ନ ଛାଡ଼ିବୁ କାହାକୁହିଂ ।
ଜଳତରଙ୍ଗ ନାମେ ସେ ରାଇଲାକ ସେନା
ତୁ ଯାଇଂ ସମୁଦ୍ର ଭିତରେ ପଶି ଲୋଡ଼ି ବହୁନା ।
ଆପଣେ ରାଇଲା ରାଜା ବଡ଼ୁଲକ୍ଷ ରାକ୍ଷସ
ତୁ ଯାଇଂଣ କ୍ଷୀର ସମୁଦ୍ରେ ଆକର୍ଷ । ୧୩୮୦ ।
ତହିଂ ଭିତରେ ଯାଇଂ ପଶନ୍ତି ଦେବତାଏ
କ୍ଷୀର ସମୁଦ୍ର ଯାକ ଶୋଷ କ ଥାଉଂ ମନ୍ଦାଏ ।
ନୀଳ ସମୁଦ୍ରକୁ ଯାଅ ଚାମର ବେମାଲି
ସେ ସମୁଦ୍ର ଶୋଷ ନଥାଇ ମନ୍ଥାକଲ ।
ପୁଣ ରାଇଲା ଯେ କୃତାନ୍ତେକ ନାମେ ଦୈତ୍ୟ
ତୁମ୍ଭେ ବେଗେଣ ଯାଇଂ ଇକ୍ଷୁ ସମୁଦ୍ର ଭକ୍ଷ ।

ମୁଖା ଦୁର୍ମୁଖା ସେ ଗଇଲ ବେଙ୍କ ଝଇ
କ୍ଷୀର ସମୁଦ୍ର ଭକ୍ଷ ତୁମ୍ଭେ ବେଗେ ଯାଇ ।
ପୁଣ ଗଇଲ ଯେ ଚଣ୍ଡ ମୁଣ୍ଡ ବେଙ୍କ ବୀର
ତୁମ୍ଭେ ଦୁହେଁ ଲବଣ ସମୁଦ୍ର କର ଆହାର
ଏ ବିଧି ଗଇଲ ସମସ୍ତ ସେନାପତି
ସମସ୍ତ ସମୁଦ୍ର ତୁମ୍ଭେ କ୍ଷେପ ବିନଶ୍ୟତି ।
ଆପଣେ ଯମଦଣ୍ଡ ଥାଠ ଅଛୁ ଭିଡ଼ି
ଦଶମୀ ଦିନରେ ବ୍ରହ୍ମା ପୁରକୁ ଦେବ ଧାଡ଼ି ।
ଯେମନ୍ତ ସମସ୍ତେ ଆଜ୍ୟାଂ ସେ ମଷାଂସୁର ଦେଲା
ସମସ୍ତ ଭୁବନକୁ ଥାଠ ଚଳାଇଲା ।
ଏହା ଶୁଣି ବୋଇଲେ ସେହୁ କୁରୁକୁଳ ନାହା
କଥାଯେ ମୁଇ ମୁନି ପୁଚ୍ଛିବ ତୋତେ ଯାହା ।
ଅଦଭୁତେ ଅନଳେ ଯେ ହୋଇଲାକ ବିକାଶ
ତିଦ ଅନ୍ତରେ ଦେବେ କଲେ ପୁଣ କସ । ୧୩୯୦ ।
ଏକଥା ମୋତେ କହିବ ବ୍ରହ୍ମବେତ୍ତା
ତବ ମୁଖେଁ ଶୁଣିମି ଅମୃତ ରସ କଥା ।
ବୋଲନ୍ତି ଶୁକବ୍ରହ୍ମା ଶୁଣ ହୋ ମହାରାଯେ
ଶ୍ରୀ ଦୁର୍ଗା ଚରିତ ଶୁଣି ପାପ କର କ୍ଷୟେ ।
ଦେବତାଙ୍କର ତହୁଂ ଜାତ ଯେତେଣ ବହ୍ନି
ତହୁଂ ଯାଇ ମିଶ୍ରିତ ହୋଇଲା ସର୍ବ ଅଗ୍ନି ।
ଅନଳ ଶ୍ୟାନ୍ତ ମନ୍ତ୍ରେ ଦିଅନ୍ତି ଆହୁତି
ସୁପ୍ରାଲେକ ମତେ କରନ୍ତି ଅନେକ ସ୍ତୁତି ।
ସବୁଙ୍କର ଜୀବନ ଜଆସିଲେ ଅନଳକୁ
ଧ୍ୟାନ ମନ୍ତ୍ର ସ୍ତୁତି କରନ୍ତି ଲଯେଙ୍କୁ ।
ସମସ୍ତ ଦେବତାଙ୍କର ଜୀବନ୍ୟାସ ଏକାବେଳେ
ଅଗ୍ନି ଘୋଟିଲା ସେ ବ୍ରହ୍ମାଣ୍ଡ ମଣ୍ଡଳେ ।
ସମସ୍ତ ଦୈତ୍ୟ ଯେ ଥିଲେ ଆକାଶେ
ଅସୁରେ ରହି ନ ପାରିଲେ ଅନଳ ତ୍ରାସେ ।
ଦେବପୁରନ୍ତି ଛାଡ଼ି ପଳାଇଲେ ଅସୁରେ
ସମସ୍ତେ ହୋଇଲେ ଯାଇ ଜେଜାବତୀ ନଗ୍ରେ ।
ଦେବଙ୍କର ମହିମା ଯେ ଶୁଣ କୁରୁପତି
ଅଗ୍ନି ଦେବତାଙ୍କୁ କରୁଅଛନ୍ତି ଅନେକ ସ୍ତୁତି ।

ଜଠରେ ତୁ ଦାବାନଳ ଶୀତଳ ଜନ ପଶ୍ଚାତ୍ତ
ଅନନ୍ତ କୋଟି ବ୍ରହ୍ମାଣ୍ଡରେ ଲାଗିଲା ଯାହାର ଶିଖ । ୧୪୦୦ ।
ଅସଂଖ୍ୟ ମାହାତ୍ମ୍ୟ କୃତାନ୍ତେକ ମହାତେଜା
ଅନେକ କୋଧ ବହ୍ନି ଯେ ବୋଲନ୍ତି ଦେବରାଜା
ଅଦ୍ଭୁତ ଅବସ୍ଥା ତୁହି ସେ ନିରାକାର
ଅଧାରଣ ଧାରଣ ତୁ ଅନନ୍ତ ତେଜ ତୋର
ନାଭି ଅଙ୍ଗ ମଧ୍ୟେ ଶୂନ୍ୟ ଭୁବନ ଭେଦ
ସକଳ ଅସାଧ୍ୟ ନାଥ ତୁହି ସେ ଆଦ୍ୟ ସିଦ୍ଧ ।
ଜଟା ଅର୍ଦ୍ଧ କର୍କଶ ମହା ମଧୁ ପିଙ୍ଗଳ
ଅଦଏ ଅଶ୍ୱବକୁ ସେ ପ୍ରସନ୍ନ ନିର୍ମଳ ।
ନ ଶିଖି ନ ଶୁଣିଲି ଅମୃତ ଲିଙ୍ଗ ଗୋଟି
ଶତବଂଶ ଅଲକାକୁ ଯାହାର ତେଜ ଫୁଟି ।
ତବ ମନ ଭେଦ ସେ ଉତପତ୍ତି ଦେବତାଏ
ତବ ମନ ଭେଦ ସେ କରତା ଦେବତାଏ ।
ଅସଂଖ୍ୟଂ ଅଧାରଣେ ଦେବ ତୁହି ସେ ମନ୍ଦଭୋଗୀ
ସମସ୍ତ ଭୁବନ ଭୁଞ୍ଜଲେ ନିପୁଣ ନ ଭଜ ।
ଅତଏ ନିରାକାର ତୁ ଅତଏ ଅନାମ
ଅନୁବ୍ରତେ ଦହନ ତେଜ ତବ ନାମ ।
ଭୁକତା ପ୍ରିୟ ତୁ ଦରିଦ୍ର ରୋଗ ନାଶି
ଅନୁବ୍ରତେ ଭକ୍ଷଂତେ ଯାହାର ଶରୀର ଅଙ୍ଗକ୍ରୋଧି ।
ଉତପତ୍ତି କରତା ତୁ ଜପ ତପ ବ୍ରହ୍ମ
ଯାବତ ଚନ୍ଦ୍ର ଦିବାକର ତୋହୋର କର୍ମ । ୧୪୧୦ ।
ଦେବ ଲୋକ ନାଗ ଲୋକ ନର ଲୋକ ତୁ ସବୁର ଗର୍ଭେ ଥାଉ
ଅନ୍ଧକାର କାଳେ ତୁ ସମସ୍ତ ଜଳ ଖାଉ ।
ନାମ ସଙ୍ଗତେଣ ଯାହାର ତେଜ ଲସ୍ୱେ
ସକଳ ଭକ୍ତଙ୍କର ନାଥ ତୁହି ସେ ନିର୍ଭୟେ ।
ଅଜପା ପୁରୁଷ ତୋର ନାହିଁ ଚହ୍ନବର୍ଣ୍ଣ
ଏକ ନିମିଷେକେ ତୁ ହୋଇ ଗୋପ୍ୟାନ ।
ପରମ ବ୍ରହ୍ମ ତୁହି ମନ୍ତ୍ରଦେବ ତୁହି
ଅଜାତେଣ ଜାତ ମହାତେଜ ବହି ।
ସୁରସିଦ୍ଧ ମୁନି ଚରଣେ ଯାର ବନ୍ଦେ
ସୁରଙ୍କୁ ଅଗୋଚର ସ୍ୱାମୀ ପରମ ସାନନ୍ଦେ ।

ସ୍ୱାମି ଆଇରବେଦ କୋଢବେଦ ଧନୁବେଦ ଶିଂଶୁମୁନା
ଅଜପା ଗାୟତ୍ରୀ ତୋହୋର ପଞ୍ଚଯେହ୍ମା ।
ଅନାଦ ଅଣାକାର ନରଞ୍ଜନ ମହାପ୍ରଭୁ
ଅମାପ ଅପିଣ୍ଡା ଅନଳ ନାମ କହୁ ।
କଳ୍ପତେ ନବସୃଷ୍ଟି କଉତୁକେ ଖାଇଂ
ଅଡଅନ୍ତ ଶାଖା ନାଥ ପଣ୍ଡିତ ଗୁଣଗ୍ରୋଷ୍ଠ ।
ଅକାମେ ମେଙ୍ଖଲା ଶତକୋଟି ଯାହାର ଗର୍ଭ
ଦେବତାଙ୍କ ଉପରେ ତୁହ ସେ ଦେବ ଦେବ ।
ନମୋ ନାରାୟଣ କାଳାନଳ ଅନଳ ପିଙ୍ଗଳ ଜାଳା
ନମୋ ନମୋ ଦବାକର ମହାକୃଷ୍ଣ ପିଙ୍ଗଳା । ୧୪୬୦ ।
ନମୋ ନମୋ ଦେବ ଆକୃତ ଦବାକର
ନମୋ ନମୋ କୃତାନ୍ତକ ସ୍ୱୟର ବଇଶ୍ୱାନର ।
ନମୋ ନମୋ ବଡ଼ବାନଳ ଦାବାନଳ ବହ୍ନତ
ନମୋ ନମୋ ପଣ୍ଡିତ ଅପାପ ପାପ ଶିତ ।
ସ୍ୱାମୀ ପରମ ଯୋଗୀ ଆତ୍ମା ଯାହାର ମହାସଧଇ
ଅକାଳେହେଂ ଆକାଶହେଂ ହୋଇଲେ ଆଇବଧଇ ।
ପ୍ରିୟା ସଉଭାଗ୍ୟ ପ୍ରସନେଣ ପତ
ତେଣୁକରି ଜାତ ସେ ହୋଇଲେ ସନ୍ତତ ।
ସ୍ୱାମୀ ପରମାନନ୍ଦ ଉଦର ରୁ ପରମବ୍ରହ୍ମ ଉପରେ ବ୍ରହ୍ମ
ଅନାଦ ଦୋହେରା ରୁ ପ୍ରତକ୍ଷେଣ ନଜକର୍ମ ।
ଗୋପ୍ୟାନ ଭଗ୍ନ ରୁ ପବନ ନତ୍ୟ ସୁର
ଯତ ସତ ମତୋଆଳ ଅନମିତ ନତ୍ୟଧାର ।
ସ୍ୱାମି କ୍ଷୀରୋଦ୍ର ଉତକର୍ମ ରୁ ଯୋଗେଣ ମହା ବ୍ରହ୍ମେ
ସମସ୍ତ ସ୍ଥାପିନ୍ତ ରୁ ବଡ଼ବାନଳ ଗର୍ଭେ ।
ସ୍ୱାମି ! ଯେ କର୍ମ ଧର୍ମ ତୁହ ସେ ଆଦ ଦେବତା
ସମସ୍ତ ସହଣ ନାଥ ତୁହ ସେ ମହନ୍ତା ।
ପ୍ରସନେ ଯୋଗେଶ୍ୱର ଉଦେଶ ଯାହାର ଦେହା
ଜାତ ଅନ୍ତ କାଳେ ତୋହୋର ବ୍ୟାକୁଳ ସ୍ନେହା ।
ସ୍ୱାମି ! ବିଷ୍ଣୁ ମହେଶ୍ୱର ଯାହାକୁ କରନ୍ତି ସ୍ତୁତ
ମୁହିଂ ତାହା ନର୍ଯାପ କରିବାକୁ କସ ମୋହୋର ମତ । ୧୪୭୦
ଶ୍ରୀ ଅଗ୍ନି ଦେବତାଙ୍କ ଚରଣେ ଦାସ
ବଦମୁକ୍ତ ସାରୋଳା ଦାସ ଜନ୍ମେ ଜନ୍ମେ ଆଶ ।

ଶୁଣ ହୋ ପରୀକ୍ଷ ରାଜା ବଇବସ୍ୱନ୍ତ ଶୁକ ମୁନି
ଧାତାର ବଚନସ୍ତୁ ଦେଖି ମହାକୋପ ବହ୍ନି ।
ଦେବତା ବ୍ୟାକୁଳେ କଲେ ମହା ସ୍ତୁତି
ମହା ଅନଳ ପ୍ରକାଶି ଉଠିଲ ରତ୍ନକାନ୍ତ ।
କାନ୍ତିହୁଁ ଅଧିକ ପ୍ରକାଶିଲ ତେଜ
ଯେତେକ ଶିର ବେନି ଚରଣ ସହସ୍ରେକ ଭୁଜ ।
ଅଭୟେ କାନ୍ତାମା ସେ ଅଭୟେ କାମାକ୍ଷୀ
ଯେ ଦୁର୍ଗତି ତାରେଣୀ ମହା ବୈଷ୍ଣବୀ ପ୍ରସନ ମୂର୍ତ୍ତି ।
ପ୍ରସନ୍ନ ଅପର୍ଣ୍ଣା ନିରାକାର ରୂପ ଦେଖି
ଭଏଣ ବୃନ୍ଦାଅର୍କେ ପଳାଇଲେ ଆସନ ଉପେକ୍ଷି ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଇନ୍ଦ୍ର ଆଦି ସ୍ୱାମୀ
ଶ୍ରୀ ଦୁର୍ଗାର ମୁଖ ଗୃହଂ ଶତ ସହସ୍ର ଦଣ୍ଡ ପରଣାମି ।
ତେତଶ କୋଟି ଦେବତାଏ ବିନସ୍ୱ ଭଗତେ
ପ୍ରଣାମ କରନ୍ତି ଶ୍ରୀ ଦୁର୍ଗାଙ୍କ ପାଦାଗ୍ରତେ ।
ଦନ୍ତେଂଶ ତରଣ ଯେନି ମୁଖେଣ ଆଙ୍ଗୁଷ୍ଠି
ବିନସ୍ୱ ହୋଇଲେ ତେତଶ ଦେବ କୋଟି ।
ବଇଷ୍ଣବ ରୂପ ଦେଖି ଦେବତାଏ
ବହୁତ ସ୍ତୁତି ସେ କରନ୍ତି ବିନଏ । ୧୪୪୦ ।
ବ୍ରହ୍ମାର ଅଗ୍ନି ସେ ହୋଇଲେ ଉତପତ୍ୟ
ସେ ଅନଳ ତେଜ ଯେନି ସେ କପୋଳ ସମ୍ଭୂତ ।
ନାରାୟଣ ଅଗ୍ନିଂ ବଦନ ପ୍ରକାଶି
ଈଶ୍ୱର ଅଗ୍ନି ସେ ଦନ୍ତପନ୍ତି ପ୍ରକାଶି ।
ଅଗ୍ନିର ତେଜ ଯେନି ବେନି ନୟନ
ନାସିକାର ତେଜ ଦେବ ମଘବାନ ।
ଆଦିତ୍ୟର ତେଜ ବଦନ ସରୋଜ
ଜିହ୍ୱା ଅଗ୍ନି ସେ ଦେବ ଚନ୍ଦ୍ରରାଜ ।
ଯମର ଅଗ୍ନି ସେ ହୋଏ ଗଣ୍ଡସ୍ଥଳ
କୋବେର ଅଗ୍ନି ନିର୍ମିତ ବକ୍ଷସ୍ଥଳ ।
ବିଶ୍ୱ ଦେବତାଙ୍କର ଯେ ହୋଏ କୁକ୍ଷି
ସନେକ ଲୋକଙ୍କର ଲଭି ବକ୍ଷସ୍ଥଳେ ଅଛି ।
ମହା ଖିନ ତେଜ ବଳିତ ବେନି
ଚନ୍ଦ୍ରଂର ତେଜ ହୋ କୁମର ଅଶ୍ୱିନୀ ।

ବେଦ ଫୁଲଣା ଅମୂଲ୍ୟ ତେଜ କାନ୍ତ
ସେ ଅଗ୍ନିଙ୍କର ତେଜ ନାଶକର ବୃହସ୍ପତି ।
ଅତଅନ୍ତ ସୁବଳିତ ବେନ ଜାନୁ
ପ୍ରଜାପତି ଦଇବତ ସେ ଅନଳ ତେଜ ଘନୁ ।
ଅନନ୍ତ ବାସୁକୀ ଅଷ୍ଟକୁଳା ନାଗ •ଖ୍ୟାତି
ଏହାଙ୍କର ତେଜ ହୋଇଲା ପାଦ ଅଙ୍ଗ କାନ୍ତି । ୧୪୫୯ ।
ପ୍ରସନ ଦେବତା ନବ ଗ୍ରହ ଭୃଗୁ
ବେନ ଚରଣ ଅଙ୍ଗୁଷ୍ଠି ହୋଇଲେ ସବୁ ।
ଅଙ୍ଗୁଳିର ଲଖ କୁନ୍ଦ ଜଳ ପ୍ରକାଶ
ପିଠି ହେମବନ୍ତ ଅଗ୍ନିର ପ୍ରବେଶ ।
ବିଷ୍ଣୁର ନନ୍ଦନୀ କାମଦେବର ବହ୍ନ
ଏତେ ଅଗ୍ନି ଘେନ ସେ ଉପୁଜିଲେ ଭବାନୀ ।
ଆହୋ ପରୀକ୍ଷ ଏମନ୍ତେଣ ପ୍ରଥମା ମହାବଳୀ
ନକ୍ଷତ୍ର ମାନଙ୍କର ତେଜ ରୋମାବଳୀ ।
ବରୁଣ ତେଜ ହୋଇଲା ମହାଗର୍ଭ
ମେଘଙ୍କର ତେଜ ହୋଇଲା ଅମ୍ବୁଭାବ ।
ଅଣଞାଶ ପବନ ଦେବତାଙ୍କର ତେଜ
ପବନ ସାମାନ୍ୟେ ଆକର୍ଷଣ ସହସ୍ରେକ ଭୁଜ ।
କୃତାନ୍ତେକ ସାନ ଯେ ବଚନ ପ୍ରକାଶି
ବୈଷ୍ଣବତଣ ଯେ ଅଟନ୍ତି ଦେବ କାଶୀ ।
ବ୍ରହ୍ମାର ସମାନ୍ୟେ ମହା ବ୍ରହ୍ମଗ୍ୟାନୀ
କାମଦେବ ସମାନ୍ୟେ ଶଯ୍ୟଳ ମୋହୋନୀ ।
କୃଷ୍ଣ ସମାନ୍ୟେ ଷୋଳି ବାଗନଧି
ବୃହସ୍ପତି ସାମାନ୍ୟେ ପଣ୍ଡିତ ମହାବୁଧି ।
ଇନ୍ଦ୍ରର ସମାନ୍ୟେ ଅଟଇ ବଳିମା
ଚନ୍ଦ୍ରର ସମସ୍ତକ୍ଷେ ଅନେକ ମହିମା । ୧୪୬୦ ।
ଆଦିତ୍ୟ ସାମାନ୍ୟେ ଅଟଇ ତେଜ କାନ୍ତ
ଯମର ସମାନ୍ୟେ କାଳାନଳ ପ୍ରକୃତି ।
ଅନନ୍ତ କାନ୍ତାମା ସେ ନକ ବସନ୍ତର
ତାହାର ସମାନ୍ୟେ ସେ ସହଣି ମହାଭାର ।
ପବନ ସାମାନ୍ୟେ ସେ ଅଟଇ ଚଞ୍ଚଳା
ମେରୁ ସମାନ୍ୟେ ଧାର୍ମିକ ଅନର୍ଗଳା ।

ମେଘଙ୍କର ସମାନ୍ୟେ ଅଛଇ କାମରୂପୀ
ବରୁଣ ସମାନ୍ୟେ ଅଛଇ ତେଜକାନ୍ତ ।
ମୋହୋନୀ ପଣକୁ ପ୍ରତକ୍ଷେ ଦାଙ୍କଣ
କୁମାର ସମାନ୍ୟେ ପ୍ରତଗ୍ୟାଂ ଶକତ ।
ଶୁଣ ହେ ରାଜନ ଦେବଙ୍କର ତେଜ ଦେନ ଏକ କେଛ
ତେଶୁକର ବହ୍ମଲ ସେ ସବୁ ପ୍ରକୃତ ।
ତଇଲୋକ୍ୟ ମୋହ୍ଲଲ ସେ ତେତଶ ଦେବକୋଟି
ସବୁ ତେଜ ଯେନ ହୋଇଲ ଏକା ଶ୍ୟଗ୍ର ଗୋଟି ।
ଶୂନ୍ୟେଣ ଶବଦ ଶୁଭିଲକ ବାଣୀ
ନାମ ସଙ୍କେତନ କଲେ ଦୁଗତ ତାରେଣୀ ।
ତଇଲୋକ୍ୟ ଦୁଗତରୁ ଯେ କରିପାରଇ ପାର
ତେଶୁକରି ଦୁଗା ନାମଟି ଏହାର ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ତିନ ମୂର୍ତ୍ତି
କରପଦ୍ମ ଯୋଡ଼ି ତହୁଂ କରନ୍ତି ସ୍ତୁତି । ୧୪୭୦ ।
ଜୟ ତୁ ସର୍ବ ମଙ୍ଗଲେ ତୁ କର ସୁବିଧାନ
ଜୟ ତୁ ମଙ୍ଗଲେ ପ୍ରସନେ ଜାନ୍ତାମୀ ।
ଜୟ ତୁ ମଙ୍ଗଲେ ଶୁଭ ଅବଧାର
ଜୟ ତୁ ମଙ୍ଗଲେ ଗୋ ଦୁସ୍ତରୁ ନସ୍ତାର ।
ଜୟ ତୁ ଅଭଏ ମଙ୍ଗଲା ମହା ଦୁର୍ଗେ
ତବ ମଙ୍ଗଲ ପ୍ରସନେ ଆମ୍ଭର ପ୍ରସଙ୍ଗେ ।
ହେ ମାତା ତ୍ରିଦଶ ଦେବତା ଯାହାକୁ ଭଗତ
ମୁହ୍ନଂ କସ ବର୍ଣ୍ଣିବି ଅଗ୍ୟାନ ବାଳ ମୂଢ ।
ଶ୍ରୀ ଦୁର୍ଗାର ଜନମ ଶୁଣ ସୁଗ୍ୟଂଜନେ
ଧର୍ମ ଅର୍ଥ କାମ ମୋକ୍ଷ ଯେଉଁଣ ଦେଖା ପ୍ରସନେ ।
ଶ୍ରୀ ଦୁର୍ଗା ସୁମର ଜନେ ଦୁର୍ଗତି ଖଣ୍ଡୁ
ଶ୍ରୀ ଦୁର୍ଗା ସୁମର ଜନେ ଦୁର୍ଗତି ନ ପଡ଼ୁ ।
ଦୁର୍ଗା ସୁମର ଜନେ ଦୁର୍ଗତି ହେଉ ନାଶ
ଦୁର୍ଗା ସୁମର ଜନେ ଫିଟୁ କାଳଫାଶ ।
ଦୁର୍ଗା ଲଏ ଜର ଜ୍ୱର ରୋଗ ଖଣ୍ଡ
ଶ୍ରୀ ଦୁର୍ଗା ସୁମରଣେ ନ ଲଗିବ ଯମଦଣ୍ଡ ।
ଦୁର୍ଗା ସୁମର ଜନେ ରାଜ ସନ୍ଧ୍ୟୁ ଭଜ
ଦୁର୍ଗା ସୁମର ଜନେ ସନ୍ତାନ ଉପୁଜ ।

ଦୁର୍ଗା ସୁମର ଜନେ ବାସ୍ତ ହୋଇ ଥିର
ଦୁର୍ଗା ସୁମର ଜନେ ଆଇଷ ହୋଇ ଚିର । ୧୪। • ।
ଆଶ୍ୱିନ ମାସ ଶୁକ୍ଳପକ୍ଷ ନବମୀ ପର୍ଯ୍ୟନ୍ତେ
ଏସନ ଉଚ୍ଛବ ପୂଜା ଆରାଧନା କର ନତେ ।
ଆୟୁଷ ଧନ ପୁତ୍ର ଯେ ଯାହା କର ଇଚ୍ଛା
ଜଗତ ଜନେ ସୋଦର ସେ ପୂରାଅ ମନବାଞ୍ଛା ।
ମାତା ଗୋ ଲୋଭ ମୋହ ସଂସାର ଅପବାଦୁଂ
ଏଥୁଂ ତରିବା ଶ୍ରୀ ଦୁର୍ଗାଙ୍କ ପ୍ରସାଦୁ ।
ଜୟ ଜୟ ଦୁର୍ଗା ଗୋ ସତତ ମମ ହୃଦେ
ଶୂଦ୍ର ମୂଳ ସାରେଳା ଦାସ ବିନୟ ଦୁର୍ଗାର ପ୍ରସାଦେ ।

—o—

**ଆହୋ ପରୀକ୍ଷ** ଦେବତା ମାନଙ୍କର ଯେସନ ଜଗତ
ସମସ୍ୟା ଫିଟିଲି ଅତଏ ଶାନ୍ତ ମୃତ ।
ଆହୋ ଦେବତାମାନେ ଅନେକ ବିନୟ ମୋତେ କଲେ
କମ୍ପିତ କାରଣେ ଯେତେ ବ୍ୟାକୁଳ ହୋଇଲେ ।
ବ୍ରହ୍ମାଙ୍କୁ କହିଲେ ଦେବ ଚକ୍ରଧର
ବୁଝାଇ କହ ଧାତା ଦେବୀଙ୍କ ଗ୍ରମୁର ।
ଆହୋ ପରୀକ୍ଷ ଦେବତାଙ୍କ ବଚନେ ପିତା ଆଗସର
ସ୍ତମୁରେ ପ୍ରତିବାକ୍ୟ ହୃଦରେ କର ଯୋଡ଼ି ।
ମାଆଗୋ ଦକ୍ଷ ପ୍ରଜାପତିଙ୍କର ଷାଠିଏ ଦୋହିତା
ଦଶ କନ୍ୟା ପ୍ରଦାନ କଲି ଧର୍ମ ଦେବତା ।
ତନୁ ସନୁ ମେଧା ଶରଧା
ଶୃତି ମୃତି ଶାନ୍ତ ସୁମେଧା । ୧୦୯୦ ।
ବୁଦ୍ଧି ତୁଷ୍ଟି ଏ ଦଶ ଦୋହିତ
ଧର୍ମ ଦେବତାଙ୍କରେ ଦେଲି ଏ ଦକ୍ଷ ପ୍ରଜାପତି ।
ଉମା କନ୍ୟାକୁ ସେ ଈଶ୍ୱରଙ୍କୁ ଦେଲା
ସାବିତ୍ରୀ କନ୍ୟାକୁ ସେ ମୋତେ ପ୍ରଦାନ କଲା ।
ମାଗୋ ବରୁଣ ଦେବତାଙ୍କୁ ପ୍ରଦାନ କଲି ନିର୍ବତୀ
ଅଗ୍ନି ଦେବତାଙ୍କୁ ଦେଲି ସ୍ୱାହା ସୁଧା ଦୋହିତା ।
ବୃହସ୍ପତିଙ୍କ ପ୍ରଦାନ କଲି ତାରି
କୁବେରଙ୍କୁ ପ୍ରଦାନ କଲି ହାରି ।

ଆଦିତକୁ ଦେଲ ସେ ସର୍ଯ୍ୟାଂ ନାମେ ବାଳୀ
ଚନ୍ଦ୍ର ଦେବତାଙ୍କୁ ଦେଲ ସତାଇଶ ବାଳୀ ।
କଶ୍ୟପେଣ ଦେଲ ସେ ତେର ନନ୍ଦନୀ
ହେମା କନ୍ୟା ହୋଇଲ ପରମ ଯୋଗ୍ନୀ ।
କିଷ ନୋହିଲ ଭ୍ରଥା ନ ଇଚ୍ଛିଲ
ତେଣୁ କରି କନ୍ୟା ପରମ ଯୋଗ୍ନି ହୋଇଲ ।
ଦିତି ଅଦିତି ବନନ୍ତ୍ରା: କଦ୍ରୁଗୀ କାଲ ଅଂଲା ଗନ୍ଧର୍ବ
ଦକ୍ଷା ରକ୍ଷା ଅରିଷ୍ଟି ଚୁହିକା ସୁରଭି ସିଂଙ୍ଗକା ଏ ଦୋହିଣୀ ।
ଏ ମାତ ଆଦିତିର ତହୁଂ ଦେବତାଏ ଉତପତି
ଦିତର ତହୁଂ ପବନ ସମ୍ପ୍ରାପ୍ତି ।
ନାଗେ ଜାତ ହୋଇଲେ କଦ୍ରୁଗୀ ତହୁଂ
ବନନ୍ତ୍ରାର ତହୁଂ ପକ୍ଷୀ ଗରୁଡ଼ ମହାବାହୁ । ୧୬୦୦ ।
ଗନ୍ଧର୍ବ ତହୁଂ ଜାତ ହୋଇଲେ ଗନ୍ଧର୍ବ ଲୋକେ
ଭିରହ ରସ କଉତୁକ ନୃତ୍ୟ ସୁଖେ ।
ଦକ୍ଷୁଂ ଉପୁଜିଲେ ଦକ୍ଷ କର୍ମରେ
ରକ୍ଷୁଂ ଉପୁଜିଲେ ଚଉଗଦ ଜୀବରେ ।
ହସ୍ତୀ ଘୋଡ଼ା ଭଲୁଙ୍କ ଆଦି କରି
ନାନା ଜୀବମାନେ ଚୁଷାଙ୍କୁଂ ଅବତରି ।
କାଳ ତହୁଂ କାଳ ପୁରୁଷ ଉତପନ୍ନ
ଅଂଲାଙ୍କ ତହୁଂ ଆଲେକ୍ଷ ପର୍ବତ ଜନ୍ମ ।
ସୁରଭି ତହୁଂ ଉପଜିଲେ ଗୋ ଜୀବ
ଗୃହିଯାର ତହୁଂ ପ୍ରଜା ଲୋକେ ସମ୍ଭବ ।
ଯେଉଂ ଯେଉଂ ଲୋକଙ୍କୁ ଛୁଇଂଲେ ସ୍ନାହାନ କରି
ଅରିଷ୍ଟିର ତହୁଂ ଅସଙ୍ଗଂ ଲୋକେ ଅବତରି ।
ମାତା ଗୋ ସିଂଘକା ବୋଲିକରି ଯେବଣ କୁମାରୀ
ତାହାର ତହୁଂ ସେ ରାହୁ ଅବତରି ।
ବଦସୂତ୍ର ବେଦ ବ୍ୟାସ ଶୁଣ ସଂତୁଷ୍ଟି
ଆଦି ମୂଲୀଣେ ରାହୁ ବଡ଼ କଷ୍ଟି ।
ଅଦିତିର ବିବାଦେ ରାହୁ ନାଶ ଗଲ
ରାହୁର ଅର୍ଦ୍ଧ କେରୁ ହୋଇଲ ।
କେରୁର ତହୁଂ ଉପୁଜିଲେ ଜମ୍ବୁ ଦାଇକ
ଅର୍କ ବିବାଦେ ତାକୁ ନାଶିଲେ ପୂରୁ ଭୂତ । ୧୬୧୦ ।

ଜମ୍ଭୁ ଦଇତର ତହୁଂ ଉପୁଜିଲେ ହିରଣ୍ୟ କଶ୍ୟପ
ହିରଣ୍ୟ କଶ୍ୟପ ତହୁଂ ଉପୁଜିଲେ ରକ୍ଷ ଭକ୍ଷ ।
ମାଗୋ ରକ୍ଷିତ ସତ୍ୟଯୁଗେ ଅନେକ ସମର ହୋଇଲା
ନାରସିଂହ ଅବତାରେ ବିଷ୍ଣୁ ସବୁଙ୍କୁହିଂ ନାଶ କଲା ।
ମାଗୋ ରକ୍ଷ ଭକ୍ଷ ପୁତ୍ର ହେତ ପ୍ରହେତ
ଏହାଙ୍କୁ ବଧ୍ୟ କଲେ ହରି ଦାମୋଦର ମୂର୍ତ୍ତି ।
ହେତ ପ୍ରହେତଙ୍କର ପୁତ୍ର ବଜ୍ରାଗଂ କାଳାନଳ
ବିଷ୍ଣୁ ଅବତାରେ ହରି ନାଶି ତାଙ୍କ ବଳ ।
ବଜ୍ରାଗଂର ନନ୍ଦନ ହିରଣ କପଟ ବୀର
ଜନାର୍ଦ୍ଦନ ଅବତାରେ ତାହାଙ୍କୁ ନାଶ କଲା ।
ହିରଣ୍ୟର ପୁତ୍ର ବଜ୍ର କପଟ
ଦୁସହ ସମରେ ତା ମାଇଲେ ପୀତବାସ ।
ମାଗୋ ବଜ୍ର କପଟର ପୁତ୍ର ଯେ ଅନ୍ଧକ ଦର୍ଇତ
ଅନ୍ଧକାରଣ ଯୁଦ୍ଧେଂ ତାହା ମାରିଲେ ବିଶ୍ୱନାଥ ।
ମାଗୋ ଅନ୍ଧକର ନନ୍ଦନ ତ୍ରିପୁରା ରାକ୍ଷସ
ଷାଠିଏ ସହସ୍ର ବରଷେ ତାହା ନାଶିଲେ ବିଶ୍ୱବାସ ।
ତ୍ରିପୁର ଦଇତ ତହୁଂ ଶମ୍ଭୁ ଦଇତ ଉପୁଜିଲା
ବେଦମନ୍ତ୍ର ହରଣେ ତାହା କାମଦେବ ନାଶକଲା ।
ଶମ୍ଭୁ ଦଇତ ପୁତ୍ର ଜଳତରଙ୍ଗ ଉପୁଜଇ
କେଶବ ରୂପେ ତା ନାଶିଲେ ଦେବରାଜଇ । ୧୫୬୦ ।
ଜଳତରଙ୍ଗର ପୁତ୍ର ଶଙ୍ଖାସୁର
ଶଙ୍ଖ ବେଦ ପୋଥି ଗ୍ରାସିଲା ମୋହୋର ।
ମୀନ ରୂପ ଧରି ସେ ଦେବ ନାରାୟଣ
ଶଙ୍ଖାସୁର ଦାନବର ଘେନିଲେକ ପ୍ରାଣ ।
ଶଙ୍ଖାସୁର ଦାନବର ଅର୍ବନ ନାମେ ଦୈତ୍ୟ
କୂର୍ମ ରୂପେ ତାହା ମାଇଲେ ଜଗନ୍ନାଥ ।
ଅବନ ଦଇତର ପୁତ୍ର ହିରଣକ ଉପୁଜଇ
ବରାହା ରୂପେ ତାହା ବିଦାରିଲେ ଦେବରାଜ ତହିଂ ।
ହିରଣର ପୁତ୍ର ଉପୁଜିଲା ଦୈତ୍ୟ କେଶୀ
ଗୋମୁଖ କେଶବ ତାହା ଯମପୁରେ ପେଷି ।
ଅମାସ୍ଥା ଦାନବ କେଶୀ ପୁତ୍ରର ପୁତ୍ର
ରାଜୀବ ରୂପେ ତାହା ବଧିଲେ ବିଶ୍ୱନାଥ ।

ଅମାସ୍ୱା ନନ୍ଦନ ହିରଣ୍ୟକଶିପୁ
ନରସିଂଘ ଅବତାରେ ଡରି ବିଦାରିଲେ ବପୁ ।
ବିରୂପଲୋଚନ ଦଇତ ହିରଣ ସମ୍ଭୂତ
କୁଠେଣ ମାଇଲେ କୃଷ୍ଣ ଧରି ରୂପ ମାଳତ ।
ମା଼ଗୋ ବଢ଼ଲୋଚନର ପୁତ୍ର ଉପୁଜିଲା ଦାନବ ବଳି
ବାମନ ରୂପେ ତାହା ଚପିଲେ ପାତାଳି ।
ମାଗୋ ବଳିର ନନ୍ଦନ ମଏ ଦାନେବ
ତାହା ନାଶ କଲେ କୃଷ୍ଣ ସମର ଅସମ୍ଭବ ।

ମଏ ଦାନବର ନନ୍ଦନ ଅମଏ ନାମେ କତ୍ୟ
ସୁରୂପାବନ ସଙ୍ଗ୍ରାମରେ ତାକୁ ଚପିଲେ ହନୁମନ୍ତ ।
ଅମଏର ନନ୍ଦନ ତାଡ଼େକାସୁର ସ୍ୱଏ
କୁମାର ହେଲେ ତାହା କାର୍ତ୍ତିକ ନାଶ କଏ ।
ତାଡ଼େକାର ନନ୍ଦନ ଲୋହସୁର ଉପୁଜଇ
ବଜ୍ରସିଘଂ ବୋଲି କରି ଯେ ତାହାର ଆତ୍ମାଜଇ ।
ବଜ୍ରସିଂଘର ପୁତ୍ର କପିଳ ସିଂଘ ରାକ୍ଷସୀ
କପିଳ ସିଂଘର ପୁତ୍ର ସେ ଉପୁଜିଲ ମହିଷ ।
ମହିଷ ଦାନେବ ଗୋ ତପ କଲା ମୋତେ
ପବନ ଆହାରୀ ହୋଇ ସହସ୍ରେ ବରଷ ପରଯନ୍ତେ ।
ମାତ ଗୋ ଖେଳ ହୋଇଂ ବର ଦେଲି ମୁହିଂ
ବୋଇଲି ବିଷ୍ଣୁ ନାଶ କଲା ବଂଶ ମୋରହି ।
ମୋତେ ବୋଇଲା ଯେବେ ବର ଦେବୁ ସାଧ୍ୟ
ପୁରୁଷ ହାଥେଣ ନୋହିବ ମୁହିଂ ବଧ୍ୟ ।
ଖେଳ ହୋଇଂ ତାକୁ ମୁହିଂ ଦେଲି ବର
ବୋଇଲି ପୁରୁଷ ହସ୍ତେ ନମରିବୁ ତୁ ମାର ।
ବ୍ରହ୍ମା ବିଷ୍ଣୁ ଶିବ ପବନ ଚନ୍ଦ୍ର ସୂର୍ଯ୍ୟ
ଏହାନ୍ତ ଜିଣିମି ମୁ ବର ଦେବା ଦେବ ରାଜ ।
ସେ ଯାହା ବୋଇଲା ମୁଂ ଖେଳେ ସତ୍ୟ କଲଇଂ
ତେଣୁକରି ମହିଷାସୁର ହୋଇଲା ଅମରଇ ।
ମହିଷାସୁର ଦାନେବର ନବ ମର୍ବୁଦ ସେନା
ଦେବେ ଦାନବେ ମାନବ ନ ଯାଇ ଗଣନା ।
ବଜ୍ର ସିଂହ ଦଇତ ସେ ପଦ୍ମଦ୍ୱୀପେ ରାଜା
ମହାକେରୁ ଦଇତ ଚନ୍ଦ୍ର ଦ୍ୱୀପେ ରାଜା ।

ସୁବାହୁ ଦଇତ ସେ କୁଶ ଦୀପେ ରାଜା
ସିଂହଳ ଦୀପେ ସେ ମହିଷାଂସୁର ରାଜା ।
ଖପ୍ପର ଦଇତ କରଞ୍ଚ ଦୀପେ ରାଜା
ଶମ୍ଭୁ ନିଶମ୍ଭୁ ଜମ୍ବୋଦୀପେ ରାଜା ।
ଜଳତରଙ୍ଗ ଦଇତ ବରୁଣ ପୁରେ ରାଜା
ଭୂମି ଦାହାନ ପାତାଳ ସ୍ୱର୍ଗେ ରାଜା ।
ଉତ୍ତର ପଶ୍ଚିମେ ସିନ୍ଧୁ ଅପସିନ୍ଧୁ ରାଜା
ବନସ୍ତ ଆଦିପଥ କାଳଜନ ରାଜା ।
ପର୍ବତଙ୍କ ଉପରେ ବଜ୍ରକେତୁ ରାଜା
ନିଶାଦ ପୁରେ ସୁବାହୁ ଦୈତ୍ୟ ରାଜା ।
ମାତ ଗୋ ଅମରାବତୀ ପୁରେ ଶମ୍ଭୁ ନିଶମ୍ଭୁ ରାଜା
ସଞ୍ଜିବନୀ ପୁରେ ବୀରଘଣ୍ଟ ରାଜା ।
ହିରଣଗର୍ଭ ପୁରେ ରକ୍ତବୀର୍ଯ୍ୟ ରାଜା
ଅଗ୍ନିଙ୍କର ଭୁବନେ ଖପ୍ପର ଦୈତ୍ୟ ରାଜା ।
ମାତ ଗୋ ମୋହୋର ଭୁବନ ଯଶୋବନ୍ତୀ ବ୍ରହ୍ମାଣ୍ଡ
ତହିଂକ ଶାଢ଼ୀ ଘେନ ଅଛନ୍ତ ଚଣ୍ଡ ମୁଣ୍ଡ । ୧୫୫୦ ।

ଆହୋ ପରୀକ୍ଷ ଅନେକ ବିନୋଇଂ ଯହୁଂ କହିଲେ ବେଦପଥ
ଘେନ ସ୍ୱର୍ଗେ ମାତ ଗୋ ଅସୁରେ ଅଛନ୍ତି ।
ମାଗୋ ଅନାଦି କର୍ମକଲ ମହିଷାଂସୁର ଚଣ୍ଡାଳ
ସ୍ନେହ ଦେହ ଘେନ ସେ ଥିବ ଚିରକାଳ ।
ସମସ୍ତଙ୍କର ବଳକୁଳ ଦେଖିଣ ମହାମୂର୍ତ୍ତି
ଅଗ୍ନିରୁ ବିକାଶିଲ ସେ ଅନାଦି ଶକତି ।
ମାତ ଗୋ ବ୍ରହ୍ମାୟଣୀ ଇନ୍ଦ୍ରାୟଣୀ ନାରାୟଣୀ ରୁଦ୍ର
ପ୍ରସନେ ମାତଙ୍ଗୀ ନାରାୟଣୀ ନାମ ବହିଂ ।
ଇନ୍ଦ୍ରାୟଣୀ ରୁଦ୍ରାୟଣୀ ତାରେଣୀ ତାହାଙ୍କ କାୟା
ଯମାୟେଣୀ ମାହେଶ୍ୱରୀ ମହାମାୟା ।
ମାଗୋ ଅରୁଣାଇ ଅଭୟା ବାସେଲୀ ଉଗ୍ରତାରା
ମାତରସ କାତ୍ୟାନୀ ଭବାନୀ ତ୍ରିପୁରା ।
ଅନନ୍ତ ବିଜୟା ଅମ୍ବିକା ମାଧବୀ ।
କଙ୍କାଳ ବେତାଳ ତୁ କାଳିକା ଭଇରେବୀ ।
ଚଣ୍ଡୀ ଚାମୁଣ୍ଡି ଗୋ ଚଣ୍ଡ ପ୍ରଚଣ୍ଡା
ବାରାହୀ ବିକରାଳୀ ଗୋ କାମଧେଣୀ ଚାମୁଣ୍ଡା ।

ମାଗୋ କୃତାନ୍ତେକ ନାଗେଶ୍ୱ ସୁନ୍ଦରୀ କାମାକ୍ଷୀ
ସିଦ୍ଧି ସାଧେଶ୍ୱୀ ଗୋ ଶମଶାନ ପିଙ୍ଗଳାକ୍ଷୀ ।
ଆଦ୍ୟତ୍ୟାଶ୍ୱୀ ବାରାହ୍ମୀ ଇନ୍ଦ୍ରାଏଣୀ ମରୁତାଇ
ଦକ୍ଷିଣାଇ ଉତ୍ତରାଏଣୀ ପଶ୍ଚିମାଇ କରତାଇ ।
ଗ୍ରସ୍ତା ମାୟା ଅନ୍ନପୂର୍ଣ୍ଣା କୁମାରୀ
ଏକଟାଇ ଘୋରରୂପାଇ ମାତାଙ୍ଗୀ ମାହେଶ୍ୱରୀ ।
ମାତ ଗୋ ସହସ୍ରେକ ଭୁଜରୁ ସହସ୍ରେକ ହେଉ କାଏ
ଯେତେକ ବୋଲି ପ୍ରଣପତ୍ୟ ହୋଇଲେ ଦେବତାଏ ।
ଭଗତ ଦେଖି ପ୍ରସନ ହୋଇଲେ ମହାଦେବୀ
ଶ୍ରୀ ଦୁର୍ଗାର ଚରଣେ ସେବା ସାରୋଳ ଦାସ କବି ।

—o—

**ଆହେ ପରୀକ୍ଷ** ଦେବତାଙ୍କ ବିକଳ ଦେଖି ପ୍ରସନ ହୋଇଲେ କାତ୍ୟାନୀ

ଅମୃତ ଦୃଷ୍ଟିରେ ବୋଇଲେ ବର ମାଗ ପଦ୍ମଯୋନି ।
ପୁଣ ପୁଣ ପ୍ରଣପତ୍ୟ ହୋଇଣ ବଦସ୍ୟନ୍ତି ଦେବ ବ୍ରହ୍ମା
ମାଗିବି ବର ଏବେ ଦୋଷ କର କ୍ଷେମା ।
ମାଗୋ ତେତିଶ କୋଟି ଦେବତା ତବ ଚରଣେ ଲାଗୁ
ମହିଷାସୁର ବଧ୍ୟ ହୋଇବ ବର ତୋତେ ମାଗୁଂ ।
ଆହେ ପରୀକ୍ଷ ଦେବତାଙ୍କର ମୁଖରୁ ଏସନକ ବାକ୍ୟ ଶୁଣି
ହୃଦଏ ସମାସ୍ୟା ଦେଲେ ଦୁର୍ଗତି ତାରେଣୀ ।
ଦୁର୍ଗାଏ ବୋଇଲେ ଦେବ ନିଶ୍ଚିନ୍ତେ ଥାଅ ସ୍ୱର୍ଗେ
ମାରିବି ନିଶାଚର ବଳ କଉତୁକ ରଣ ରଙ୍ଗେ ।
କର ପ୍ରସାରିଲେ ଅନାଦି ଶତଶ୍ରୀଆ
ଶଙ୍ଖ ଚକ୍ର ଗଦା ନେଇଣ ଦେଲେ ଜଗନାହା ।
କୋମଣ୍ଡଳ ଜପାମାଳି ବ୍ରହ୍ମଣର ଶକତି
ଦୁର୍ଗାର ହସ୍ତେ ନେଇଣ ଦେଲେକ ବେଦପତି ।
ତ୍ରିଶୂଳ ଡମ୍ବୁରୁ ପିନାକୀ ପଶୁପତି ଧନୁ
ଦୁର୍ଗାର କରେ ନେଇଣ ଦେଲେ ଶମ୍ଭୁମନୁ ।
ଅଜଗବ ଧନୁ ସେ ବ୍ରହ୍ମଶକତି
ଦୁର୍ଗାର ହସ୍ତେ ନେଇଣ ଦେଲେ ସୁରପତି ।
ସୂର୍ଯ୍ୟବ୍ରତେକ ଚକ୍ର ଅମୃତ କୁଣ୍ଡଳ
ଆଦିତ ଦେବତାଏ ନେଇ ଦେଲେ ଜୟମାଳ ।

କ୍ଷୀର ଦ୍ୱାଦଶ ତମିର ବଦାରଣ ମଣି
ବଶ୍ୱ ଦେବାଏ ଖଡ଼ଗ ଦୁର୍ଗାକୁ ଦେଲେ ଆଣି ।
ଅମୃତାଶର ଯେ ହେମଚନ୍ଦ୍ର ଫାଶ
ଚନ୍ଦ୍ର ଦେବତାଏ ଦେଲେ ମାତ ଅସୁର ଦର ନାଶ
ଅନଳେକ ରୁଦ୍ର ଶୂଳଚକ୍ର ଦେଲ
କାଳଦଣ୍ଡ ଚକ୍ର ଆଣି ଯମ ସମ୍ପାଦଲ ।
ସ୍ତମ୍ଭନ ମୋହନ ବଶ ଉଚ୍ଚାଟଣ
ଦୁର୍ଗାର ହସ୍ତେ କାମ ଦେଲା ପଞ୍ଚବାଣ ।
ମୋହୋନା ଶର ସେ ଯେ କାମ ଆନ୍ଦ୍ରାବଳୀ
ଭୁସୁହ ପୃଷ୍ଠପାଟେ ଦୁର୍ଗା କରେ ଦେଲେ ଆଣି ।
ପ୍ରଶୁ ମୁଦ୍ଗର ଦେଲେ କଏଚଣ୍ଡ
ବହ୍ନା ପୁରୁଷ ଦେଲେ ସିପାକ୍ରେକ ଚକ୍ରଦଣ୍ଡ ।
ଅଶ୍ୱତ୍ଥାମ ଚକ୍ର ଦେଲା ମରୁତ
ଫଟତା ଶରେକ ଦେଲ ହେମବନ୍ତ । ୧୫୭୦ ।
ବରୁଣ ଦେବତା ଦେଲା ତାଳଫାଶୀ
ମନଭେଦୀ ଶର ଦେଲେକ ସୁରକେଶୀ ।
ନାଗଫାଶ ଶର ଦେଲେକ ଗଣପତ
ଅମୃତ ଲଡ଼ୁ ଦେଲେ କାର୍ତ୍ତିକ ମହାପତ ।
ବଜ୍ର ବାଣ ନର୍ଘାତ ବାଣ ଆବର ଅମୃତ ବାଣ
ମେଘା ଅଗ୍ନି ଶର ଦେଲେ ସୁରଗଣ ।
କଦ୍ରାଶର ଯେ ଅଷ୍ଟାଷ୍ଟମ ବାଣ
ମହୁଦ୍ର ପୁରୁଷ ଦେଲେ ଅକ୍ଷୟ ତୋଣ ।
ଶୂଳ ଭୁଜବାଣ ଆବର ବଜ୍ର ବାଣ
ଈଶାନ୍ୟ ଦେବତା ଦେଲେ ଦୁର୍ଗାଙ୍କର ହସ୍ତେଣ ।
ରତ୍ନମୁକୁଟ ଭୂଷଣ ହୃଦସ୍ଥ ସରଳ
ଶତମନୁ ଦେଲେକ ଅଳପା କଏମାଳ ।
ଅପର ଶାସ୍ତ୍ରକ ଅଜଂନ ମଉଷୋଧି
ଅଶ୍ୱିନୀକୁମାରେ କହିଲେ ବୁଦ୍ଧି ବୁଧି ବ୍ୟାଧି
ଅନନ୍ତ ବାସୁକୀ ତକ୍ଷେକ ଅଷ୍ଟକୁଳନାଗେ
ନାଗଫାଶ ବାଣ ଦେଲେ ଦୁର୍ଗାର ଅଗେଂ ।
ମଦନ ମାର୍ଦ୍ଦନ ମୋହୋନ ଶୋଷନ ଆଗ ପବନ
ଏମାନ ସମର୍ପିଲେ ଅନାଦ୍ୟ ଗ୍ରହଗଣ ।

ଆଙ୍ଗିର କୋଡରୁ ଧନୁ ଶିଶୁମୁନି
ଜପା ଅଜପା ଯୋଗ ଲଏ ସିନା । ୧୫୯୦ ।
ଋକ ସାମ ଯଜୁ ଅଥର୍ବ ବେଦମତ
ବିଦ୍ୟା ଗୁରୁ ଯେ ନେଇ ଦେଲେ ଜଗତ ମାତ
ଅଃରଧିତ ଦେବୀ ଯେ କହିଲେ ବୁଧି ସିଧି
ଗଉଣୀ ସଉଣୀ ରନ୍ଧନ ନବବିଧି ।
ସୁମନ୍ତ୍ରେକ ତମିର ବିଦାରଣ ବଇଡୂଜ ମଣି
ସୂର୍ଯ୍ୟ ଦେବତାଏ କରେ ଦେଲେ ଆଣି ।
ଅନଳ ଉଜ୍ଜଳ ମହାମତ ସାର
ଦୁର୍ଗାଙ୍କୁଂ ଗ୍ୟାଂନ ଯେ କହିଲେ ବଶ୍ୟାନର ।
ବିଜୁଳି ଆଡ୍ରାବଳୀ ଅମରକୋଷ ଧନୁ
ଦୁର୍ଗାର ହସ୍ତେ ନେଇଂ ଦେଲେ ଶତମନୁ ।
ଅମଳାଣ ପଟେଣୀ ଆଭରଣ ଦେବୀର ଅଙ୍ଗଂ
ଗିରିରାଜ ହେମବନ୍ତ ସମର୍ପିଲେ ସିଂହ ।
ମନପବନ ଦଣ୍ଡ ନାରଦ ମୁନି ଦେଲେ
ଖେଚରୀ ବିବାନ ନେଇଂ ଅନନ୍ତ ସମର୍ପିଲେ ।
ମୟୂର ବାହାନ ଯେ ସମର୍ପିଲେ ପିତା
ଜଟାଇସ ସିମର୍ପିଲି ନେଇଂ ବନ୍ତ୍ର ଯେନ୍ତ୍ରା କପତା
ସନ୍ତୋଷ ମନେ ଦେବ ଈଶାନ
ଦୁର୍ଗାଙ୍କୁ ସମର୍ପିଲେ ବଇଲ ବାହାନ ।
ଅନେକ ହରଷେ ଦେବ ଧଇଡାର
ଦୁର୍ଗାଙ୍କୁ ସମର୍ପିଲେ ଗରୁଡ଼ ନାଗ ଅଇଶ । ୧୬୦୦ ।
ଦେବଙ୍କର ରାଜା ଯେ ଦେବଙ୍କର ପୁରୁହୂତ
ସେ ଇନ୍ଦ୍ର ସମର୍ପିଲା ନାଗ ଅଇରାବତ ।
ଶାର୍ଦ୍ଦୋଳ ବାହାନ ସମର୍ପିଲେ ଅନଙ୍ଗଂ
ପବନ ଦେବତା ନେଇ ସମର୍ପିଲି ମୃଗ ।
କାଳାନଳ ଦେବତା ସେ ଦେବ ବୈଶ୍ୟାନର
ମେଷ ବାହାନ ସମର୍ପିଲି ଦୁର୍ଗାର ଆଗର ।
ଅମୋହ ଶକତ ଅତଏ କାଳ ଫାଶୀ
ନାଶକର ଦେବତା ନେଇଂ ସମର୍ପିଲି ମଇଂଷି ।
ଭାଟେଣୀ ନଟଶୋଧନ କଳ୍ପ ଯେବଣ କୁମର
ମୟୂର ସମର୍ପିଲି ନେଇଂ କାର୍ତ୍ତିକେଶ୍ୱର ।

ମଗର ବାହାନ ନେଇଂ ଦେଲକ ବରୁଣ
ଗଣନାଥ ଦେବତା ନେଇଂ ସମର୍ପିଲ ଇନ୍ଦ୍ର ବାହାନ ।
ଅନେକ ସ୍ୱରୂପେ ଦେବ କରତା
ସ୍ୱପଡ ଅଶ୍ୱ ସମର୍ପିଲେ ଦେବ ଦୁର୍ଗା ଆଦ୍ୟମାତା ।
ଦେବଙ୍କ ସମ୍ବଳ ଶମ୍ଭୁ ନାମେ ଦଣ୍ଡପାଳ
ଦୁର୍ଗାର ଛାମୁରେ ସମର୍ପିଲ୍ଲି ଶାର୍ଦ୍ଦୁଳ ।
ଅମୃତ ଦେବତା ଦେଲେ ବାହାନ ବ୍ୟାଘ୍ରର
ରତ୍ନାବଳୀ ବାହାନ ସମର୍ପିଲେ କୁବେର ।
ମାଧୁର୍ଯ୍ୟ ଦେବତା ଦେଲେ ନାଗ୍ରଯ ଘଗାବୃତ
ସନଗାଂ ଅସ୍ତ୍ର ସମର୍ପିଲେ ଯଜ୍ଞସନ୍ତ । ୧୭୧୦ ।
ଅହୋ ସାବଧାନ ହୋଇ ଶୁଣ ପକ୍ଷୀ ଘଏ
ଯେ ଯାହାର ବାହାନ ଭୂଷଣ ଦେଲେ ଦେବତାଏ ।
ଦେବତାଏ ବୋଇଲେ ମାଗୋ ଆମ୍ଭ ସମସ୍ତଙ୍କର ଦେଲୁ ଅସ୍ତ୍ରାକାନ୍ତି
ଆସ ଆସ୍ତା ଯେକଣ ସମୁଦ୍ରେ ଥାଇଂ ବୁଡ଼ି ।
ମାତ ଗୋ ଏ ପାଦ ଗୋଟିର ଜନ୍ମେ ଜନ୍ମେ ଆଉ ସେବା
ମହାଂସୁର ବଧ୍ୟ କର ଗୋ ଅଜଏ ସ୍ୱର୍ଗ ଦେବା ।
ଦୁର୍ଗା ବୋଇଲେ ତୁମ୍ଭକୁ ମୁଂ ହୋଇଲି ପ୍ରସନ
ଆନନ୍ଦଂ ନଶ୍ଚିନ୍ତ ହୋଇ ଭୁଞ୍ଜେ ଆଥ ଗଗନ ।
ଅମର ହୋଇଂ ଯେବେ ଆଣ ବଳ ମୋତେ
ଆଉ ଦାନବ ବଳ ମାରିବି ତୁମ୍ଭ ଅର୍ଥେ ।
ସର୍ଗ୍ଗ ନବାରଣ ମୂର୍ତ୍ତି ବନ୍ତ ହୋଇଲେ
ପ୍ରସନ ହୋଇ ଦେବତାମାନଙ୍କୁ ଅଜଏ ବର ଦେଲେ ।

## ଦୁର୍ଗାଙ୍କର ରହଗିଶରେ ଅବସ୍ଥିତ

**ଆହୋ ପରୀକ୍ଷ** ତାକା ଅନେକ କୋଟି ବ୍ରହ୍ମାଣ୍ଡ ଯୋଟି ଏକ ଦୃଷ୍ଟି
ହଜଏ ମାହେଶ୍ୱରୀ ଗଜବସ୍ତୁ ପିଠି ।
ସହସ୍ରେକ ଭୁଜେ ସହସ୍ରେକ ଆୟୁଧ ଶୋଭା
ବ୍ରହ୍ମାଣ୍ଡେ ଲଗିଲା ଯାଇଂ ସହସ୍ରେ ମୁଣ୍ଡତା ।
ତେତଶ କୋଟି ଦେବତାଏ ଦେଖି କଲେ ଭଏ
ବୋଲନ୍ତ ଆମ୍ଭକୁ ଗୋ ରକ୍ଷାକର ମାଏ ।
ବହୁଳ ମେଘଳା ସେ ରଣାନ ବାହାମା
ମେଦନୀ ବହୁଅହୁ ଯେ ହୋଇଂଣ ମେରୁଗାମୀ । ୧୭୨୦ ।

ତହିଁରୁ ଷଷଠି ଯେ ସହସ୍ରେ ଯୋଜନ
ଋଷିପ୍ରଜ୍ଞା ନଦୀ ତୀରେ ଉଦ୍ଧାନ ନାମେ ବନ ।
ଯେ ଧବଳାଙ୍ଗୀ ନଦୀ ତୀରେ ଈଶାନ ସ୍ୱର୍ଗ ଅଛେ
ତାହାଂର ସନ୍ନିଧ୍ୟେ ପର୍ବତ କୋଣ ଅଛେ ।
ସେ ପର୍ବତ ଉପରେ ନଜଏ ବଇକାଣ
ପଞ୍ଚଦଶ ଯୋଜନ କେନାବନ୍ତ ନଗ୍ରି ।
ତାହାଂର ଉତ୍ତର ଅଟେ ଜଟା ନାମେଣ ବଟ
କୂଳାବନ୍ଧ ପାଟଣା ତାହାଂର ଉତ୍ତର ତଟ ।
ଲାବଣ ନାମେ ସମୋଦ୍ର ତାହାଂର ସମଧ୍ୟେଂ
ଦେଖିଣ ସାନନ୍ଦ ହୋଇଲେ ସକଳ ବିବୁଧେ ।
ସହସ୍ରେକ ଭୁଜ ଦେବୀ ଶରୀରେ ଗୋପ୍ୟ କଲେ
ସମସ୍ତ ଶସ୍ତ୍ରମାନ ଖେଟସ୍ତ ବିବାନେ ଥୋଇଲେ ।
ସମସ୍ତ ଗୋପ୍ୟ କରି ଅନ୍ତସ୍ଥେ କାତ୍ୟାନୀ
ରତ୍ନସିଂହ ପର୍ବତେ ବସିଲେ ଜଗମୋହନ ରୂପ ଘେନ ।
ଅନେକ ରତ୍ନ ଯେ ଆଭରଣ ଦାଏ
ଦିନବସ୍ତ୍ର ପରିଧାରଣ କଲେ ମହାମାୟେ ।
ଏକ ଶରୀର ଅନନ୍ତ ରୂପ ଘୋଟି
ଅସୁର ଭୁବନକୁ କଲେ ଦେବୀ ଦୃଷ୍ଟି ।
ଅମର ଭୁବନ ଜାଣି ଅସୁରଙ୍କର ପୁରୀ
କାଳ ଅନଳ ତେଜ ତହିଁକି ବିକାଶିଲେ ଶାକେମ୍ଭରୀ । ୧୭୩୦ ।
ବହନ ପାନ ଯୋଜନ୍ତ୍ର ବିକାଶି ହୁଂକାର ଦୃଷ୍ଟି
କେନାବନ୍ତ ନଗ୍ରେ ଉପୁଜିଲା ଅନେକ ଅରିଷ୍ଟି ।
ଶୁଣ ହେ ପରୀକ୍ଷ ରାଜା ବଦନ୍ତି ଶୁକ ମୁନି
କୁଣ୍ଡଳ ଆସନେ ବିଜଏ କାତ୍ୟାନୀ ।
ସିଂହଳ ଦ୍ୱୀପର ପାରୁଶେ ଯୋବଣ ନଗର
ନବର ପାରୁଶେ ଅନେକ ରତ୍ନପୁର ।
ତହିଁରୁ ବାହାନୀ ସେ ଲକ୍ଷ୍ମୀ ଭଦ୍ରା ସରସ୍ୱତୀ
ସିଂହଳ ଦ୍ୱୀପକୁ ସେ ଈଶାନ୍ୟ ବହନ୍ତି ।
ସେ ବେଣ୍ଣ ନଦୀର ମଧ୍ୟରେ ସ୍ଥାନ
ବସଇ ପାଞ୍ଚ ନଗ୍ର ଅତିଅ ବିଭପନ ।
କେନାବନ୍ତ ନଗ୍ରି ଚଣ୍ଡପୁର ନଗ୍ର
ଶମ୍ଭୁପୁର ନଗ୍ର ବିରଜାପୁର ନଗ୍ର ଭୃଙ୍ଗାଳପୁର ନଗ୍ର ।

ଏ ପାଞ୍ଚ ପୁର ବେଢି ସେ ବସଇ ଯେ ନଗ୍ର ପାଞ୍ଚସ୍ଥଳୀ
ପଞ୍ଚଶତ ଯୋଜନ ପଞ୍ଚଶତ ଅଗୁଂଳି ।
ଯେ ପଞ୍ଚ ନଗ୍ର ବେଢି ସରସ୍ୱତୀ ଭଦ୍ରା
ଲବଣ ସମୋଦ୍ର ସହିତେ ପଞ୍ଚମୁଦ୍ରା ।
ଏଥିର ମଧ୍ୟେଂ ହର ଉଦ୍ୟାନ ବନ
ଦେବ ଶତେ ନବ ଶତ ଯୋଜନ ସ୍ଥାନ ।
ସେ ବନର ମଧ୍ୟେଂ ଅନେକ ବୃକ୍ଷ ଅଛଇ
ଜାମ୍ବୁ ନଡିକାଳ ଆମ୍ବ ପଣସ ଫଳଇ ।
ଗୁଆ କଦଳୀ ହରିତକୀ ଦାରିକ୍ଷ ଫଳ
ଲେମ୍ବୁ ଓ କଇଥ ଫଳ ବସଇ ସକଳ । ୧୬୪୦ ।
ତେନ୍ତୁଳି ଜାମ୍ବୁ ଆବର ବରକୋଳି
ମଗାଂ ମାତଗାଂ କରଞ୍ଜା ଗଇଂ ଅଁଳା କୋଳି ।
ଭଣ୍ଡ କଣ୍ଟହୋଲ ଯେ ବସନ୍ତ ବୃକ୍ଷ ମାଳ
ଅନେକ ପୁଷ୍ପ ସୁଗନ୍ଧ ତରୁଡାଳ ।
ଏହେବେଷ୍ଟିକ କରି ସେ ସଞ୍ଚିଲ ପୁରସାଇଁ
ଫଳ ବୃକ୍ଷହିଂ ଯେ ଅଛି ଅନ ବୃକ୍ଷ ନାହିଁ ।
ସେ ବନସ୍ତର ଭିତରେ ରତ୍ନଗିରି ପର୍ବତ
ଚୁଂଡଗିରି ପର୍ବତ ଏ ସିଂହଗିରି ପର୍ବତ ।
ଏ ତ୍ରିଣି ପର୍ବତଙ୍କର ମଧ୍ୟେ କର୍ଣ୍ଣଂ ନାମେ ଗିରି
ସେ ପର୍ବତଙ୍କର ମଧ୍ୟେ ବଜଏ ଶାକମ୍ବରୀ ।
ଏହା ଶୁଣି କ୍ଷୁପତି ପରୀକ୍ଷ ବୋଇଲା
ସ୍ୱାମୀ ଶୁକ ବ୍ରହ୍ମଦେବ ଆଶ୍ଚର୍ଯ୍ୟ କଥା ହୋଇଲା ।
ପଞ୍ଚ ନଗ୍ରି କହିଲ ଯେ ଚଣ୍ଡାଳ ନଗ୍ରି ବୋଲି
ତାହା ଶୁଣି ମୁହିଂ ଯେ ଆଶ୍ଚର୍ଯ୍ୟ ହୋଇଲି ।
କିପାଇଂ ସେ ନଗ୍ରି ଚଣ୍ଡାଳ ପୁର ନାମ
ଏହା ମୋତେ କହିବା ମୁନିଙ୍କ ଉତ୍ତମ ।
ଶୁଣ କୁରୁନାଥ ପରୀକ୍ଷିତ ଯାହା
ସାବଧାନେ କହୁଇ ଶୁଣ ହାଦେ ତାହା । ୧୬୫୦ ।
ଏକ ସତ୍ୟ ଯୁଗେ ନଘୋଷ ନାମେ ବଡ ନୃପତି
ତାହାର ରାଜ୍ୟେ ସେ ମେଘେ କଲେ ହୋ ଅନୀତି ।
ଧାର ଦାପର ମଧ୍ୟେଂ ହୋ ଅପାଳକ କଲା
ପଞ୍ଚ ବରଷ ପର୍ଯ୍ୟନ୍ତେ ଜଳ ନ ବର୍ଷିଲା ।

ଆହ୍ମା ପକ୍ଷୀନ୍ଦ୍ର ପୃଷ୍ଠେ ତୋହ୍ମା ସରସ୍ୱତୀ ନଦୀର କୂଳ
ତହିଂ ରହିଅଛୁ ଅମ୍ବିକା ନାମେ ଶୃଗାଳ ।
ନାରଦେ ବୋଇଲେ ଆହ୍ମା ଏ ତୋହ୍ମାର ଅନେକ ଆୟଷ
ଶୃଗାଳ ବୋଇଲା ମୁନି ହେ ଏ ମାନ ସବୁ ଧାନ ।
ଧନ ପୁଣ ମାଣ୍ଡି କୁଦ କୁଦ ହୋଇଅଛୁ
ତବେ ପଟା ଉପରେ ଗ୍ରୁଏଣି ନାହିଁ କଛୁ ।
ମୋହର ଲେଖା ଧାନ ଅଛୁ ପାଞ୍ଚ ମେଘନ୍ତ ବର୍ଷି
ତହିଂର ଉପରେ ହାଦେ ଦେଅ ନ ବରଷି ।
ଖରା ବରଷା ଶୀତରେ ଥାଇ ସେହ୍ମଠାରେ
ଶୃଗାଳ କହିଲ ପୁଣ ନାରଦ ମୁନିବରେ ।
ନାରଦେ ବୋଇଲେ ହେ ଶୁଣ ଶୃଗାଳ
ଏ ଧାନକୁ ସଞ୍ଚିଲୁ ତୁ କେତେ କାଳ ।
ଅମ୍ବିକା ଶୃଗାଳ କହିଲା ନାରଦଙ୍କ ଆଗେ
ଯଦୁର ନାମେ ପୁର ହେ ପ୍ରେକ ସତ୍ୟ ଯୁଗେ ।
ବଡାଇ ପ୍ରତାପୀ ରଜା ଜଳଧର ନେୟାଢ
ସିଂହଳ ଦୀପେ ସେ ଅଟଇ ଚନ୍ଦ୍ରବ୍ରଣ୍ଣ ।
ସେ ରଜାର ତହିଂ ମୋହୋର ବାଶଧର ସେବା ଅଟଇ
ମଲ କଷ୍ଟା ଦେଣେ ମୁ ଦ୍ୱାର ଘରେ ଖଟଇ ।
ତାହାର ମଲ କାଟି ମୁଂ ଖଟଇ ସେବଣ ଭୁଇଂ
ତହିଂରେ ଧାନ ଶୋଟାଏ ପଡ଼ି ଉଠିଲକ ସ୍ୱାମୀ ।
ମୁନି ହେ ସେ ଧାନ ମୁଣ୍ଡାକ ହୋଇଲା ମାଣ ଶନ
ମୁ ସେ ଧାନ ଶନ ମାଣ ଶୁଖାଇଲି ପୁନ ।
ସେ ଶନ ମାଣ ବୁଣିଲି ସେହି ଭୂମିର କଣ
ସେ ଧାନ ହୋଇଲା ଶନ ନଉତ ଉତପତ୍ତି । ୧୬୮୦ ।
ମୁନି ହେ ମୋହୋର ସାହି ଲୋକକୁ ମୁ ଦେଲି କରୋଷ
କୋଡ଼କେ ପାଞ୍ଚ ଶଉଣୀ ଦେନଇଂ ବରୋଧ ।
ସେ ଭୁଇଂରେ ବୁଣଇଂ ତହିଂ ଉପୁଜଇଂ ଏକ କଣି
ତାହାର ସେହିମତେ ବୃଧି ହୋଇ ଦୁଇଗୁଣି ।
ମୁନି ହେ ଜାମ୍ବୁଜ ବାହୁକ ରାଜ୍ୟେ ଅପାଳକ ହୋଇଲା
ମୋହୋର ତହୁଂ ବୃଧି କରି ଧାନ ଲକ୍ଷେ ଭରଣ ନେଲା ।
ବରଷକ ପୂରନ୍ତେଲ୍ଲ ମୋତେ ଲକ୍ଷେ ଭରଣ ପାଣ୍ଡ
ମୁହିଂ ବୋଇଲି ଏମନ୍ତେ ମୋତେ ଧର୍ମ ନଗର୍ଚ୍ଛି ।

ଆହୋ ଜାମ୍ବୁ ଭବାହାନ ମୁନ ହେ ଯେତ୍ତେ ବୃଧ ମୁକ୍ତ
ଲୋକଙ୍କରେ ପାଞ୍ଚ ଗଉଣୀ ଅଧିକ ନମାଗଇ ଭୂମ୍ଭକୁ ।
ଧାନ ଯେତେକେ ମୋତେ ସମସ୍ତେ କଲେ ଧନ୍ୟ ଧନ୍ୟ
ବୋଇଲେ କଳି ଯୁଗରେ ବ୍ରହ୍ମଥାଅ ତୁ ଆମ୍ଭର ଆଶ୍ରୟ ଯେଣ ।
ଏମନ୍ତେ ସତ୍ୟ ଯୁଗେ ବସିଲି ସମସ୍ତଙ୍କ କଲ୍ୟାଣେ
ଆଇଷ ଧନ ବୃଦ୍ଧି ହୋଇଲାକ ତେଣେ ।
ନାରଦେ ବୋଇଲେ ହୋ ଅମ୍ବିକା ଖଣ୍ଡାଳି
ପାଞ୍ଚ ବରଷ ଅପାଲେକ ଭଲ୍ଲ ସେନଘୋଷ ରାଜ୍ୟର
ଜ ଜପୁଛିଲ୍ଲ ନ ଥିଲା ସେ ନ ଥିଲା ପୁଚ୍ଛୁଣା
ସହାର ଗୋଟିକ ଗୃହ ସେ ଜଗଜଣା ।
ଖଣ୍ଡାଳ ବୋଇଲା ମୁନ ହେଂ ମୁ ନ ଜାଣଇଂ ବୃଧ
କଥାଏକ ଅଛୁ ଶୁଣ ତପୋନିଧି । ୧୬୯୦ ।
ମୁନହେ ଦୋହିତା ଗୋଟିଏ ଯେ ଅଛଇ ମୋହର
ତାହା ଭୁଲେ ମୁ ଯେ ନ ପାଇଲି ବର ।
ସେ କନ୍ୟା ଗୋଟିକ ପ୍ରଦାନ କରିବି
ଏ ଧାନ ଗୁଡ଼ାକ ମୁ ଯଉତୁକ ଦେବି ।
ଏମନ୍ତ ଶୁଣି ନାରଦେ ଶବଣେ ହସ୍ତ ଦେଲେ
ପିତାମହ ସମ୍ମୁଖେ ଯାଇଂଣ ଜଣାଇଲେ ।
ଶୁଣ ଦେବ ସାବଧାନେ ବିହନ୍ତା ବିଧାତା
ଚିନ୍ତାମଣି ନାରାୟଣ ତୁ ଜଗତକର୍ତ୍ତା ।
ସ୍ୱାମୀ ଶିବଂକ ପାପେ ଷଣ୍ଠିତୋଷ୍ଟା ସରସ୍ୱତୀ ଜନ୍ମିଲେ
ଅମ୍ବିକା ନାମେ ତହିଂ ଥାଇ ଯେ ଖଣ୍ଡାଳେ ।
ତାହା ତହିଂ ଅଛି ଧାନ ପଞ୍ଚ ମେଦଷ୍ଠ ବହିଂ
ମୁଂ ବୋଇଲି ଏ ଧାନ ନନ୍ଦଘୋଷକୁ ଦେଇ ।
ନାରଦ ବଚନେ ଏହନ ବାଣୀ ଶୁଣି
ନନ୍ଦଘୋଷକୁ ବୋଇଲେ ସେ ସଚରାଚର ମଣି ।
ନାରଦେ ଧାନ କରି ଅଇଲେନ ଠାବ
ଯାଇଂ ତାହା ଯେନ ଆସ ରାଜଦେବ ।
ଯେତେ ଦୂରେ ସେ ହୋଇଲା ଅନାବୃଷ୍ଟି
ସେ ଲୋକଙ୍କୁ ଧାନ ଦିଅ ହାତେ ବାଣ୍ଟି ।
ପିତାର ବଚନେ ଗଲା ସେ ନନ୍ଦଘୋଷ
ଷଣ୍ଠିତୋଷ୍ଟା ନଦୀ ତଟେ ହୋଇଲା ପରବେଶ । ୧୭୦୦ ।

ସନ୍ନିଧ୍ୟଂ ରାଇଂଙ୍କ ସେ ଅମ୍ବିକା ଚଣ୍ଡାଳକୁ
ଏ ଧାନ ଗୁଡ଼ାକ ବୃଦ୍ଧି କର ଦିଅ ଆମ୍ଭକୁଂ ।
ଅମ୍ବିକା ଚଣ୍ଡାଳ ବୋଇଲା ତୁମ୍ଭେ ସୋମବଂଶ ଚନ୍ଦ୍ରବଂଶ
ତୁ ମହାରାଜା ଯେ କରବୁ ଅନନ୍ତ ।
ତୋହର ବାହୁବଳେ ସବୁର ତପ ଧର୍ମ
ନନ୍ଦଘୋଷ ବୋଇଲା ତୋହର ଆଏ କଏ ବଳେ ନେମ ।
ଚଣ୍ଡାଳ ବୋଇଲା ମୋହର ଯୁଗତେ ଅଛୁ ମହାରାଏ
ମୋହର ଅଛୁ ହାଦେ ଅବସର କନ୍ୟା ଗୋଟିଏ ।
ତାହାକୁ ପ୍ରଦାନ ହୁଅସି ମହାପତ
ଏ ଧାନ ଗୁଡ଼ାକ ଯେ ଯଜତୁକ ନତାତେ ଦେବ ନନ୍ଦପନ୍ଦ ।
ଏହେନ୍ତକ ବ୍ରତ କରଅଛୁ ମୋହର
ତୁମ୍ଭେ ଜଗତେଶ୍ୱର ମନରେ ବିଚ୍ଛର ।
ଶୁଣି ନନ୍ଦଘୋଷ ରଜା ଶ୍ରବଣେ ହସ୍ତ ଦେଲା ।
ବ୍ରହ୍ମାଙ୍କର ଅଗ୍ରତେ ସେ ବାରତା କହିଲା ।
ସ୍ୱାମୀ ଅମ୍ବିକା ଚଣ୍ଡାଳର ଧାନ ଅଛୁ ଯେତେ
ଅପାଳକ ରଜ୍ୟକୁ ଅଣ୍ଟିବ ସାତ ବରଷ ପର୍ଯ୍ୟନ୍ତେ ।
ବୋଇଲା ମୋହର ଅଛୁ ଯେ ଦୋହିତା ଗୋଟିଏ
ତାହାକୁ ପ୍ରଦାନ ତୁ ହୁଅସି ମହାରାଏ ।
ମୁହିଂ ମହାରଜା ଅଟଇଂ ସୋମବଂଶୀ
ଏଡ଼େ ବଡ ବଂଶ ମୋର ହୋଇବାକ ଧ୍ୱଂସି । ୭୧୦ ।
ନନ୍ଦଘୋଷର ବଚନେ ବ୍ରହ୍ମାଏ ହୋଇଲେକ ଧ୍ୟାନ
ସନ୍ନିଧ୍ୟେ ହକାରଲେ ବଶିଷ୍ଠ ମହାମୁନ ।
ତୁ ଯାଅନ୍ତ ବଶିଷ୍ଠ ଚଣ୍ଡାଳ ତହିଂକ
ସେ ଧନ ଗୁଡାକ ଦିଅ ନନ୍ଦଘୋଷ ନୃପତକ ।
ଆହୋ ପରୀକ୍ଷ ସ୍ୱାମୀର ଆଗ୍ୟାଂ ନବେଣି ଶିରର
ଚଳଲେ ବଶିଷ୍ଠ ପୃଷ୍ଟିତୋସ୍ୱାର ତୀର ।
ସେ ଅମ୍ବିକା ଚଣ୍ଡାଳ ଦେଖିଲା ମହାମୁନ
ବଶିଷ୍ଠ ପାଦେ ପୂଜାକଲା ଅନେକ ରତ୍ନ ଧେନ ।
ବଶିଷ୍ଠେ ବୋଇଲେ ଶୁଣ ହେ! ଚଣ୍ଡାଳ
ତୋହୋର ତହିଂ ଅଛୁ ସେ ଧର୍ମ ଯେ ଆଚ୍ଛର
ଆହୋ ଦେଖିଲକୁ ଅନ୍ନଗ୍ରାସେ ଦେଲେ ସୁବର୍ଣ୍ଣ ବାହ୍ମଣମାନ୍ଙ୍କ ମୂଲ୍ୟ
ଏତେ ସୁବର୍ଣ୍ଣ ଦାନ ଦେଲେ ସେ ଅନ୍ନ ବେଳକୁ ସମତୁଲ ।

ତୋହର ତହିଂ ଅଛୁ ଧାନ ପାଞ୍ଚ ମେବଷ୍ଠ ଯେ ବସିଂ
ଏହା ଦେଇଂ ତୁ ହୋଅ ବଇକୁଣ୍ଠବାସୀ ।
ଗୃଣ୍ଡାଳ ବୋଲଇ ମୁ ନ ଜାଣଇଂ ତୁମ୍ଭର ନାମ
ଦୋହିତା ଗୋଟି ଯେ ପ୍ରଦାନ ହୋଇବ ସେ ସୁଖେ ନେବ ଧନ ।
ବଶିଷ୍ଟେ କହିଲେ ଯାଇଂ ପିତାମହର ପାଶ ।
କପାଂ ଆନେ ତହୁଂ ଘୁରି ଅଇଲା ନଘୋଷ ।
ସ୍ୱାମୀଚାଣ୍ଡାଳ ବୋଲଇ ମୋହର କୁମାରୀ ଯାହାକୁ ପ୍ରଦାନକରିବ
ଏ ଧାନ ଗୁଡ଼ାକ ତାକୁ ଯଉତୁକ ଦେବ । ୧୭୨୦ ।
ବ୍ରହ୍ମାଏ ବୋଇଲେ ବଶିଷ୍ଟ ପ୍ରଦାନ ହୁଅ ତୁ
ସୃଷ୍ଟି ରକ୍ଷା ହୋଉ ସଚରାଚର ବ୍ରତୁ ।
ପିତାର ବଚନେ ଗଲେ ବଶିଷ୍ଟ ମହାମୁନି
ସଙ୍ଗଂରେ ଗଲେ ମାରକଣ୍ଡ ପଉଲସ୍ତି ଅଗସ୍ତି ମୁନି ।
ବଶିଷ୍ଟ ଚଳନ୍ତେ ବ୍ରହ୍ମ ଋଷିମାନେ ଗଲେ
ଅମ୍ବିକା ଗୃଣ୍ଡାଳର ଦ୍ୱାରେ ମିଳିଲେ ।
ଋଷିମାନେ ବୋଇଲେ ହୋ ଅମ୍ବିକା ଗୃଣ୍ଡାଳ
ନଘୋଷ ନୃପତି ସେ ତଇଲୋକ୍ୟ ଦିଗପାଳ ।
ଧାନ ଗୁଡ଼ାକ ସେ ମାଗିଲା ରାଏ ତୋତେ
ତୁ ତାହା ବଚନ ଲଙ୍ଘିଲୁ କେମନ୍ତେ ।
ସେ ଗୃଣ୍ଡାଳ ବୋଇଲା ଶୁଣିମା ଗୋସାଇଂ
ମୁହିଂ ଯାଚିଲି ଗୋସାଇଂ ସେ କଲା ନାହିଁ ନାହିଂ ।
ଦୋହିତା ଗୋଟି ମୋର ପ୍ରଦାନ କରିବ ଯାହାକୁ
ଏ ଧନ ଗୁଡ଼ାକ ଯଉତୁକ ଦେବଇଂ ତାହାକୁ ।
ବଶିଷ୍ଟେ ବୋଇଲେ ଦେଖିବା ଆଣ ତୋର ଝିଅ
ଯେବେ ମନୋଅର୍ଥ କରିଅଛୁ ସନ୍ଦେହ ।
ଶୁଣି ଗୃଣ୍ଡାଳ ଅନେକ ହୋଇଲା ହରଷ
ମଣ୍ଡିଲା ଭୁବନ ସେ ଅନେକ ରତ୍ନକୋଷ ।
ବଶିଷ୍ଟ ମାରକଣ୍ଡ ଅଗସ୍ତି ମହାମୁନି
ବାରକୁ ଶୁଭ ଅନକୁଳ ସେହୁ ସେ ଦେନି । ୧୭୩୦ ।
ମାର୍ଗଶିର ମାସ ଶୁକଳ ପକ୍ଷ ପ୍ରତିପତା ଦିନ
ଅର୍କବାର ରୋହିଣୀ ନକ୍ଷତ୍ର ବିଦ୍ୟମାନ ।
ଆହୋ ପରୀକ୍ଷ ସେ ଗୃଣ୍ଡାଳର ଦୋହିତା ନାମ ଅରୁନ୍ଧତୀ
ତାହାକୁ ପ୍ରଦାନ ହୋଇଲେ ବଶିଷ୍ଟ ବ୍ରହ୍ମ ମହାଯତି ।

ତାର ବାର ନକ୍ଷତ୍ର ଗ୍ରହ କରଣ ଅଂଶୁ ମାହେନ୍ଦ୍ର ଲଗ୍ନ ଦେଖ
ସ୍ୱସ୍ଥ ହୋଇଲେ ସେ ବଶିଷ୍ଠ ମହାମୁନ ।
ଜଳଧର ଗୋତ୍ର ବଶିଷ୍ଠ ମହାଋଷ
ଅମ୍ବିକା ଗୋତ୍ର ଯେ ଗୃଣ୍ଡାଳ କୁଳ ଋଷି ।
ଆପଣା କାର୍ଯ୍ୟେ ସେ ଅଗସ୍ତି ତପୋବନ୍ତ
ବେଦ କୁଳ ସେ ବସ୍ତ୍ର ସେ କଲେ ଉପଗତ ।
ଜୟ ଜୟ ମଙ୍ଗଳ ଶୁଭଙ୍କ ଧ୍ୱନ
କୁଶ ବନ୍ଧନ ଯେ କରନ୍ତି ହସ୍ତ ବେଦ ।
ବଶିଷ୍ଠଙ୍କର ହସ୍ତ ତଳେ ଗୃଣ୍ଡାଳୁଣୀ ହସ୍ତ ଉପରେ
କୁଶ ଗଣ୍ଠି କଲେ ଯେ ଯଥାବିଧି ବେଦରେ ।
ଶଙ୍ଖେ ଜଳ ଢଳ ଘେନଣ ଅଗସ୍ତି
ଅମ୍ବିକା ଗୃଣ୍ଡାଳ ହସ୍ତରେ ଦେଲେ ତତକ୍ଷଣାତ ।
ଅମ୍ବିକା ଗୃଣ୍ଡାଳ ବୋଇଲା ମୋର ନାହିଁ ଆନ
ପଞ୍ଚ ମେବକ୍ଷ ବର୍ଷିଂ ଅଛୁ ମୋର ଧାନ୍ୟ ।
ତାହା ମୁ ଯଉତୁକ ଦେବ ଯଥାବିଧି
ବଶିଷ୍ଠେ ବୋଇଲେ ଏଣେ ଯେଣେ କାର୍ଯ୍ୟ ହେଉ ଆମ୍ଭ ରାଧି ୧୬୪୦
ଯଉତୁକ ସରିଲା ସେ କୁଶଗଣ୍ଠି ଫେଡ଼ି
ସ୍ୱାହା ସ୍ୱଧ୍ୟା ଉପଗତ ଲଯ୍ୟା ହୋମକର ।
ଅଗ୍ନିର ଜୋତ ଦେଖିଲେ ଅଗସ୍ତି ମୁନ ଦେବ
ଧୂତ ଭୋଗ ଦେଲେ ନେଇ ବଶ୍ୟାନର ଜାଉ ।
ତହୁଁ ସେ ପାରଣା କଲେ ବେଦ
ତହୁଁ ଚଳନ୍ତି ସେ ବଶିଷ୍ଠ କନ୍ୟା ଘେନ ।
ଆହୋ ନଘୋଷ ନୃପତ ମାଗିଲେ ସବୁଧାନ
ଗ୍ରାମ ମୂଳେ ବାଣ୍ଟିଲି ସେ ଦଳକ ରାଜନ ।
ସେ ଧାନର ଅନ୍ନ ଖାଇଂ ସମସ୍ତେ କଲେ ଧନ
ଥାଉ ବ୍ରତୁ କୋଟି କଲ୍ପ ସେ ଆମ୍ଭର ଆଇଷ୍ୟ ଘେନ ।
ବହୁତ କଲ୍ୟାଣ ସେ ବହୁତ ଅନୁରାଗେ
ସେ ଅରୁନ୍ଧତୀ ବସିଲା ବଶିଷ୍ଠଙ୍କର ସଙ୍ଗେ ସ୍ୱର୍ଗେ ।
ବହୁତ ଧୂନ ଉପୁଜିଲା ମହାତ୍ମା ଗୁଣ କଲା
ଗୃଣ୍ଡାଳ କୁଳ ସେ ଦୋଷ ନ ଲାଗିଲା ।
ଶୁଣ ହେ ରାଜା ବ୍ରାହ୍ମଣ ମନ୍ତ୍ରବଳ
ଗୃଣ୍ଡାଳୁଣୀ ଅଦ୍ଧଅଙ୍ଗ ବଶିଷ୍ଠର ସର୍ବକାଳ ।

ସେ ଅରୁନ୍ଧତୀ ଯାହା ବନ୍ଦଇ ସେହୁ ହୁଅଇ ଅମୃତ ପାନ
ଦେବ ଋଷି ରାଜ ଋଷି ତାହା ସମସ୍ତେ କଲେ ଭୋଗ ।
ବଶିଷ୍ଠେ ଯାଗ ଯଗ୍ୟ କଲେନ୍ତି ସେ ଅରୁନ୍ଧତୀଙ୍କ ସେନ ।
ବଶିଷ୍ଠର ସଙ୍ଗତେ ସେ ହୋଇଲେ ସ୍ୱର୍ଗ ଗାମୀ । ୧୭୫୦ ।
ତେଷଠି ଅପର୍ଣ୍ଣା ଭୁଲେ ଯେ ଚଉଷଠି ଅପର୍ଣ୍ଣା
ସେ ବ୍ରହ୍ମ ଦେବସ୍ତି ଶି ପ୍ରଳୟ ଅନ୍ତ ସେହ୍ଲା ।
କାଳେ ଗର୍ଭବାସୀ ହୋଇଲେ ଅରୁନ୍ଧତୀ
ସେ ଚଣ୍ଡାଳୁଣୀ ପୁତ୍ର ଉପୁଜିଲେ ମହାଋଷି ଶକ୍ତି ।
ଶକ୍ତିର ତହୁଁ ଉପୁଜିଲେ ପାରେଶ୍ୱର
ପାରେଶ୍ୱର ନନ୍ଦନ ବ୍ୟାସ ମୁନିଶ୍ୱର ।
ଆହୋ ପରୀକ୍ଷ ବ୍ୟାସଙ୍କର ଆମ୍ଭେ ଷାଠିଏ ଶସ୍ତ୍ର ଶିଷ୍ୟ
ସେତେଲେକେଣ ପାଠେକ ଟଣ୍ଡିଲୁ ସର୍ବ ଋଷି ।
ତୁ ଯେ ପ୍ର ଛାକଲୁ ଚାଣ୍ଡାଳ ନଗ୍ର କଥା
ସେ ଅମ୍ବିକା ଚାଣ୍ଡାଳର ସତ୍ୟ କି ବାରତା ।
ସେ ଅମ୍ବିକା ଚାଣ୍ଡାଳର ଅନ୍ନ ଖାଇ ଯେତେକ ବ୍ରହ୍ମଚଳେ ସଯାତେ
ସୃଷ୍ଟିବାରେ ଶସ୍ୟ ଉପୁଜିଲେ ଅପାରେ ।
ଦେଖି ଆନନ୍ଦ ସେ ନଘୋଷ ନୃପତି
ସ୍ୱର୍ଗେ ସେ ଚଣ୍ଡାଳକୁଳେ ହେଲା ବଡାଇଂ ଖ୍ୟାରତ ।
ସେ ନଗ୍ର ହୋଇଂ ସରସ୍ୱତୀ ନଦୀ ତୀରେ
ସେ ଚଣ୍ଡାଳର ପୁର ବୋଲି ରହିଲା ଚରନାତଳେ ।
ଏହା ଶୁଣି ସାନନ୍ଦ ପରୀକ୍ଷ ନୃପତି
ତବ ମୁଖଂ ଶୁଣିଲି ମୁନି ହେ ମିଟିଲ ଦୁର୍ଗତି ।
ସେ ରତ୍ନଙ୍କି ପଟଳେ ସେ ବଳସ୍ୱେ କଲେ ଦୁରେ
ଦେବତାଙ୍କର କାର୍ଯ୍ୟ ସିଦ୍ଧ କଲେ କେବଣ ବାଟେ । ୧୭୭୦ ।
ନମୋ ନାରାୟଣ ନରକେଶ୍ୱର ଯାର ନାମ ।
ସର୍ବ ତାରଣ ନାଥ ସୁନ୍ଦର ଅନୁପାମ ।
ଅଦ୍ଭୁତେ ଅମ୍ବୁ ବ୍ୟାପିଲା ଯାର କାଏ
ବ୍ରହ୍ମାଣ୍ଡ ଘୋଟିଲା ଯେ ଅନେକ ତେଜ ଛାଏ ।
ବିଷ୍ଣୁ ଭକତ ସହୁଂ ହୋଇଲା କୁମର ପ୍ରହ୍ଲାଦ
ତାହାକୁ ହିଂସା ସହୁଂ କନକ ଦନୁଜ ।
ଜଗତ ମଙ୍ଗଳ ସେ ପରମ ଯୋଗନାହା
ଖରସ୍ୱର ରଖନ୍ତା ନାଥ ନ ଜାଣଇଂ ଅବା କାହା ।

ପ୍ରଳୟ ଅନ୍ତେକ ସେ ଯାହାର ହାଦେ କାୟା
ଦେବଙ୍କୁ ଅଗୋଚର ଯେବେଣ ସ୍ୱାମୀର ମାୟା
ବଜ୍ର ଦୃଢର ସେ ଦନୁଜ ହିରଣାକ୍ଷ
ଜାନୁରେ ପାଡ଼ି ଦେବ ବିଦାରିଲୁ ଯାହାର ବକ୍ଷ ।
ଏକ ଶ୍ୟାମଳ ଦେବ କୋଟିଏ ଭୁବନ ବ୍ୟାପି
ଏହା ଲେଖିବ କେତେ ମୁ ସଙ୍କ୍ଷେପି ।
ଦଶ ସହସ୍ର ଯୋଜନ ଯେବଣ ଦେବର କାଏ
ସବୁ କାୟା ଯାହାର ନଖ ଭିତରେ ସାନ୍ଧାଏ ।
ହିରଣ୍ୟକୁ ବଦାବ ପ୍ରହଲାଦକୁ ଇନ୍ଦ୍ରପଦ
ଦେବଙ୍କର କଷ୍ଟ ପାରକରି ଛାଡ଼ିଲୁ ଯେ ବିଷାଦ ।
ଘୋର ରୂପେ ଦେଖି ଯେ ଦେବେ କଲେ ଭୟେ
ଲକ୍ଷ୍ମୀ କି ପେଷି ଯେ ଦେଲେ ଦେବତାଏ । ୧୬୭୦ ।
ନିଜ ପ୍ରିୟା ଦେଖି ଶ୍ରୀ ନରସିଂହ ଶାନ୍ତ
ଯୋଗ ରୂପ ବିକାଶିଲ ଅନନ୍ତ ମୂରତ ।
ଶ୍ରୀ ନରସିଂହର ସ୍ତବ ଗୋଟି ଥାଉ ମୋର ହୃଦେ
ଲଭଇ ପରମ ଗତ ଶ୍ରୀ ନରସିଂହ ପ୍ରସାଦେ ।
ଶ୍ରୀ ନରସିଂହ ସ୍ମରଣ କରେ ଖଣ୍ଡଣ ହୋଇ ବ୍ୟାଧି
ଶ୍ରୀ ନରସିଂହ ସ୍ମରଣ କରେ କଳା ହୋଇ ସିଦ୍ଧି ।
ଶ୍ରୀ ନରସିଂହ ସ୍ମରଣ କରେ ଆରୋଗ୍ୟ ହୋଇ ବର୍ଣ୍ଣ
ଶ୍ରୀ ନରସିଂହ ସ୍ମରଣ କରେ ସନ୍ତାନ ଉପୁଜେ ।
ଶ୍ରୀ ନରସିଂହ ସ୍ମରଣ କରେ ଅମୃତ ହୋଇ ବୃଷ୍ଟି
ଶ୍ରୀ ନରସିଂହ ସ୍ମରଣ କରେ ମୁକ୍ଷ ଯେ ମୁକତ
ଶ୍ରୀ ନରସିଂହ ସ୍ମରଣ କରେ ଖଣ୍ଡଣ ହୋଇ ପାପ
ଶ୍ରୀ ନରସିଂହ ସ୍ମରଣ କରେ ସିଦ୍ଧ୍ୟ ହୋଇ ତପ ।
ଶ୍ରୀ ନରସିଂହ ସ୍ମରଣ କରେ ହୋଏ କ୍ଷୟ
ଶ୍ରୀ ନରସିଂହ ସ୍ମରଣ କରେ ନିର୍ମଳ ହୋଇ କାଏ ।
ଶ୍ରୀ ଅଭୟ ନରସିଂହର ଜନ୍ମେ ଜନ୍ମେ ମୁହି ଦାସ
ଶୁଦ୍ରମୁନି ସାରଳା ଦାସ ଜନ୍ମେ ଜନ୍ମେ ଅଭ୍ୟାସ ।

—o—

# ମହିଷାସୁରକୁ ଚଣ୍ଡ ମୁଣ୍ଡଙ୍କର ଦୁର୍ଗାଙ୍କ ବାର୍ତ୍ତା ପ୍ରଦାନ

ଏଥୁ ଅନନ୍ତରେ ଶୁଣ ପକ୍ଷୀଙ୍କ ରାଏ
ଶ୍ରୀ ଦୁର୍ଗାର ଚରିତ ଶୁଣି ପାପ କର କ୍ଷଏ ।
ଚନ୍ଦ୍ରଗିରି ଶିଖରେ ବିଜେ କଲେ ଦୁର୍ଗେ
କେନାବନ୍ତ ନଗ୍ରେ ଦୃଷ୍ଟି ପଡ଼ିଲା ଅତି ବେଗେ । ୧୭୦୦ ।
ଅସୁରଙ୍କର ପୁର ହୋଇଲା ସେ ବାମ ଅଙ୍ଗ କଣ
ବକ୍ର ନୟନେ ଚାହିଁଲା ସେ ଭଏ ମୃଢ ।
ଆଶ୍ୱିନ ମାସ କୃଷ୍ଣପକ୍ଷ ନବମୀ
ଚଣ୍ଡ ମୁଣ୍ଡ ବେନି ଭାଇ ସେ ଆସନ୍ତି ବନଭୂମି ।
ଗିରିବର ଗହନ ସେ ଲତାର ଭିତରେ
ଦେଖନ୍ତି ମୃଗାଙ୍କ ବିନୋଦ ଅସୁରେ ।
ନବଲ ମଧ୍ୟାନ ସେ ନଦୀର ଜଳ ଚାହିଁ
ଦେଖିଲେ ନଦୀ ଯାକ ଅସରନ୍ତି ସୁବର୍ଣ୍ଣ ପଦ୍ମ ବହି ।
ଭାଳନ୍ତି ଦାନବେ ସେ ଅପୂର୍ବ କଥା ଦେଖି
ଗୋଡାଇଲେ ନଦୀକି ସେ ସ୍ନାହାନ ଉପେଖି ।
ବିସ୍ମରନ୍ତି ଦାନବେ ଏ ତ ବଡାଇ ଅପୂର୍ବ
ଆନ ବନେ ଦେଖିନ୍ତା ନାହିଁ ତ ଏସନେକ ଭାବ ।
ମଳୟ ପବନ ପେଣ ଗନ୍ଧ ଆମୋଦଇ
ବେଲ ବେଲ ହରଷ ବଢ଼ିଲା ଦୈତ୍ୟଙ୍କର ଦେହେ
ସେ ନଦୀ ଗୋଡାଇଣ ଯାନ୍ତି ବେନି ବୀରେ
କନ୍ୟାଏକ ବସିଅଛି ସେ ଶ୍ୱେତ ଉଦରେ ।
ତାହାର ପଦ୍ମ ପାଦରୁ ସୁବର୍ଣ୍ଣ ପଦ୍ମ ଝରୁଅଇ
ବିସ୍ମରନ୍ତି ଦାନବେ ଏ ତ ଲକ୍ଷ୍ମୀଦେବୀ ଅଟଇ ।
ଚମ୍ପିତ ଗାତ୍ରେ ଏହାକୁ ଦାସବ୍ରତ ଭଜ
ବଇକୁଣ୍ଠ ତେଜି ଅଇଲେ କେବଣ ସେ ବର୍ଗ । ୧୭୧୦ ।
ଅପୂର୍ବ ଦେଖି ବିସ୍ମରନ୍ତି ବେନି
କାହାର ସୁନ୍ଦରୀ ଏ କି ଜଗତ ମୋହିନୀ ।

ଭୂମି ଆକାଶ ମଞ୍ଚ ପାତାଳ ତନ ସ୍ୱର୍ଗ
ଏହନେକ କନ୍ୟା ତ ନ ଦେଖିଲୁ କେବଣ ଠାବ ।
ହେଠ ବଦନ ହୋଇ ସେ ଭୂମିକି କର ଦୃଷ୍ଟି
ଅଞ୍ଚଳ ଓହାଡ଼ି ସେ ନରେପଇ କର୍ମ ଗୋଷ୍ଟି ।
ଚଣ୍ଡାସୁର ଦାନବ କରଇ ସମାସି
ଆଗୋ ମା ତୁ ଯେ କେବଣ ସ୍ୱର୍ଗବାସୀ ।
କାହୁଁ ଅଇଲୁ ଗୋ କେ ତୋହର ପତି
କେ ତୋହର ମାତା ପିତା କେବଣ ଦେଶେ ତୋର ସ୍ଥିତି ।
କାମେମନୀ ବଏସେ ତୁ ମୋହୋନୀ କାମସେଣୀ
କଞ୍ଚିତ ଦୋଷ ତୁ କଲୁ କ ବୋଲଣି ।
କେ ତୋହର ମାତା ପିତା କେ ତୋହର ପ୍ରଭୁ
ତୋତେ ଉହୋ ମା ଗୋ କପାଂ କଲ ସେହୁ ।
ଯହୁଁ ତୁ ପ୍ରାଣ ପ୍ରାଭବ କଲୁ କାଏ
ଅତି ରାଗେ ଉପେକ୍ଷା କଲେ ଯେ ତୋତେ ମାଏ ।
କି ତୁ ରାକ୍ଷସଣୀ ପିଶୃସୁଣୀ ମୂର୍ତ୍ତି
କି ତୁ ଅଟୁରେ ବନସ୍ତର ମୂରତି
ମହିଷାସୁର ରାଜ୍ୟ ନାହିଁ ଉପଦର୍ପ
ରାକ୍ଷସ ପିଶାଚେ ଅଛନ୍ତି ଦୁଷ୍ଟ ଦାନେବ । ୧୮୦୦ ।
ବାଘ ଭାଲୁ ଯେ ଅଛନ୍ତି ଅପାର
ଆଦତର ଅସ୍ତ୍ରେ ଯେ ତୋତେ କରବେ ଆହାର ।
ଆମ୍ଭେ ଏ ବନସ୍ତକୁ ଅଧିକାରୀ
ଅରଣ୍ୟେ ଉତପାତ ହୋଇଲେ ଆମ୍ଭେ ସେ ନବାରି ।
କେବଣ ଦୁଃଖେ ତୁ ଗୃହବାସ କଲୁ ତେଜ୍ୟା
ଅଛୁ କି ମନମତ ଆମ୍ଭର ହୋଇବୁ କି ଭାରିଜା ।
ଅନେକ ଧନ ରତ୍ନ ଅଲଙ୍କାର ଦେବୁ
ପ୍ରାଣୁ ଅଧିକା କରି ପ୍ରତିପାଳି ଥିବୁ ।
ସ୍ୱାମୀ ପଣ ପ୍ରତିଜ୍ଞା ତୋତେ ହୋଇବୁ ଭୃତ୍ୟରେ ଭୃତ
ବିନମ୍ଭ ଭାବ କରି ତୋତେ ହୋଇବୁ ଶିରାଗତ ।
ତ୍ରୈଲୋକ୍ୟ ଠାକୁର ମହିଷାସୁର ଚକ୍ରବର୍ତ୍ତି
ଦେବାଧି ଦେବଙ୍କର ମସ୍ତକମଣି ନୃପତି ।
ସେ ରାଜାର ଆମ୍ଭେ ସେନାପତି ଅଟୁଂ
ଅନେକ ବିଶ୍ୱାସେଣ ସନଧ୍ୟେଣ ଖଟୁଂ ।

ଅହୋ ପରୀକ୍ଷ ତାହାଙ୍କର ବାକ୍ୟ ଶୁଣି ମାହେଶ୍ୱରୀ
ଦ୍ରହସିତ ବାକ୍ୟ କହଇ ମଧୁର କରି ।
କଞ୍ଚିତ ପ୍ରକାରେ ଅବଲୋକନେ ଦୃଷ୍ଟି
ମୋହେଣ ପଡ଼ିଲେ ବୀରେ ହୋଇଣ ଆଶାଷ୍ଟି
ମୁଖରେ ଅଗୁଂଷ୍ଟି ଭରନ୍ତ ବୀରେ ମୋହେ
ବୋଲନ୍ତ କାମ ସାଗରୁ ଉଧରଣ ମାଏ । ୧୮୧୦ ।
ଦୁର୍ଗା ବୋଲନ୍ତ ଶୁଣ ତୁମ୍ଭେ ବେନି ବୀର
ତୁମ୍ଭେ ଯେ ପୁଚ୍ଛା କଲ କୁଳ ଗୋତ୍ର ମୋହର ।
ମାତାର ନାମ ମୋହର ଅଟଇ ବହୁଳ
ଅନ୍ୟାକାର ଦକ୍ଷର ମୁ ଅଟଇଂ ଦୋହିତା ।
ନିସ୍ୱମାଦ ଉତପତ୍ତି ମୋହର ନିରାକାର ଗୋତ୍ର
ସ୍ୱାମୀର ନାମ ମୋହର ପରମ ଦଇବତ ।
ଅତନ୍ତି ଅଭସ୍ଥା ତାହାର ଦୁଃଖର ପ୍ରକୃତ
ଅତ ଅସହଣୀ ମୁ ସ୍ୱାମୀକି ନୋହିଲି ଭଗତ ।
ପୁରୁଷ ରମଣେ ନାହିଁ ମୋହର ବାଞ୍ଛା
ତେଣୁ କରି ସ୍ୱାମୀ ମୋହର କଲେକ ଉପେକ୍ଷା ।
ଏକା ଗ୍ରନ୍ଥକହିଁ ସେ ସ୍ୱାମୀରେ ନାହିଂ ଯୋଗ୍ୟ
ତେଣୁକରି ସ୍ୱାମୀ କଲେକ ପରିତେଜ୍ୟା ।
ଅନାଥ ମୋହେଣ ନୋହିଲି ଘର ବାସୀ
ସମସ୍ତ ଛାଡ଼ିଲି ମୁ ଯେ ହୋଇଲି ବନବାସୀ ।
ଆହୋ ଜୀବନକୁ ଭଏ ନ ଆସିଲା ମୋର କାଏ
ରୃକ୍ଷ ରାକ୍ଷସେଣ ଯେ ନାହୁଁ ମୋର ଭଏ
କହୁଂ କହୁଂ କାନ୍ତାନୀ ହସଇ ପ୍ରଚଣ୍ଡ
ଘୂର୍ଣ୍ଣିଲା ହୋଇ ସେ ରହିଲେ ଚଣ୍ଡ ମୁଣ୍ଡ ।
ମନେ ବସ୍ତୁରଣ ଚନ୍ତିଲେ ହୃଦଗତେ
ଆମ୍ଭକୁଂ ପ୍ରାପତ ନୋହଇ ଜା ଯୁଗତେ । ୧୮୨୦ ।
ଚଣ୍ଡାସୁର ବୋଇଲା ଗୋ ଶୁଣ ମହାସତୀ
ମଏଷାଂସୁର ରାଜାର ତୁ ହେବୁକ ଯୁବତୀ ।
ରାଜାର ଛାମୁରେ ଜଣାଇବୁଂ ତୋହ କଥା
ଦ୍ୱସ୍ତରକୁ ଯୋଗାଇଲେ ଆଗ୍ୟାଂ ଦେବୁ ମାତା ।
ଦୁର୍ଗାଏ ବୋଇଲେ ତୁମ୍ଭେ ଜଣାଅ ଜନା ପାଶେ
ମୁହିଂ ଏଥିକ ଅଇଲି ମହେଷାଂସୁର ଆଶେ ।

ଏସନକ ବାକ୍ୟ ଶୁଣିଲେ ଯହୁଂ ବାଣୀ
ଶ୍ରବଣେ ହସ୍ତ ଦେଇଂ କାତରେ ରଖିଲେ ଧରଣୀ ।
ତୁ ଆମ୍ଭର ଠାକୁରାଣୀ ହୋଇଁକୁ ଅଟେ ମାଏ
ଦଣ୍ଡ ଦୋଷ କ୍ଷେମା କର ଫିଟୁ ଆମ୍ଭର ଭଏ ।
ଶୀବ ଶିଘ୍ର ସୁମର ଚଳନ୍ତି ଚଣ୍ଡ ମୁଣ୍ଡେ
ପବନୁ ବେଗେ ଚଳ ନ ରହନ୍ତି ଦଣ୍ଡେ ।
ମଣୋହ୍ଵ ଯାଣ ରାଏ ଆସ୍ଥାନରେ ବକେ
ଶ୍ରୀମୁଖରେ ଦର୍ଶନ କଲେ ବେନି ଯେ ଦନୁଜେ ।
ଵନସ୍ତୁ ଦେଖି ରାକ୍ଷସ ମହେଷାଂସୁର ପୁଛଇ
କହ ହୋ କେବଣ ଅପୂର୍ବ କାହ୍ନୁଂ କସ ଅଛଇ ।
ଚଣ୍ଡ ମୁଣ୍ଡ ବୋଲନ୍ତି ଅସୁର କୁଳ ନାହା
ତୁ ସର୍ବଗ୍ୟଂ ପୁରୁଷ ନ ଜାଣୁ ଅବା କାହା ।
ସ୍ଵାମି ଆମ୍ଭେ ମୃଗୟାକୁ ବୋଲି ଗଲୁ
ଲକ୍ଷ୍ମୀଭଦ୍ରା ନଦୀରେ ପଶି ସ୍ନାହାନ କଲୁ । ୧୮୩୦ ।
ସୁବର୍ଣ୍ଣ ପଦ୍ମ ଫୁଟି ନଦୀଯାକ ବହୁଂ
ଅଢଅନ୍ତି ବେଷଭରେ ଚଣ୍ଡ ମୁଣ୍ଡ କହୁଂ ।
ଶୁଖିଲ ତରୁବର ପଲ୍ଲବ ହୋଇଅଛୁ ବନେ
ଗନ୍ଧ ଆମୋଦଇ ଦେବ ମଳୟ ବସନ୍ତ ପବନେ ।
ସେ ନଦୀ ଗୋଡ଼ାଇଲୁ ଦେବ ଗଗନ ଆକର୍ଷି
ରତ୍ନଗିରି ଶିଖରେ କନ୍ୟା ଏକ ଅଛୁ ବସି ।
କୁଟିଳ ଚକୁର ଦେବ ଆକୁଞ୍ଚିତ ବହଳ
ଜମ୍ବୁଧର ମେଘ ପ୍ରାଏ ଦଶଇ ଯଶମଳ ।
ରଥାଣ କଣସୁ ପ୍ରାଏକ ଯାହାର ଲଲାଟ ପାଟ ।
ସୁପକ୍ଷ ନର୍ମଳ ବେନି ନୟନ ଗୋଟି ।
ସ୍ଵାମୀ ଆକର୍ଷିତ ତାହାର ଦୃଷ୍ଟି
ବକ୍ର ନୟନେ ବ୍ରହ୍ମାଣ୍ଡେ ପର୍ବତ ଯିବ ଫୁଟି ।
ତରଳିତ ଚଞ୍ଚଳ ଲୋଚନ ବାଲ କୁରଙ୍ଗୀ
ସଙ୍ଗ ବନ୍ଧୁନେ ଯେମନ୍ତେ ବ୍ରହ୍ମାଇଂ ବିଭଙ୍ଗି ।
ସ୍ଵାମି ସୁଦୃଶ୍ୟ କଣସୁ ଘଟଣ ତାହାର ନାସା
ତାହା ଦେଖନ୍ତେ ଆଉନ ନ ବଳଇ ମନଷା ।
ସ୍ଵାମି ବେନି ଶ୍ରବଣ ଯେ ଝଳନ୍ତି ତାର କର୍ଣ୍ଣେ
ପୁଂଷ ନାଶଗଲେ ଦେବତାଏ ଲୁବୁଧେ ।

ସ୍ୱାମୀ ବେନି ଚରଣ ଯେ ପାଣିପଦ୍ମ ଗୋଟି
ଝଲକ ରତ୍ନ ପ୍ରାଏକ ନୀଳା ରତ୍ନ ଘଟି ।
ବନ୍ଧୁଲି ପୁଷ୍ପ ପ୍ରାଏକ ଯେ ଅଧର ସୁରଙ୍ଗ
ଝିଣ୍ଟି ଝଳି ଦନ୍ତ କି ବିରାଜଇ ଶଶାଙ୍କ ।
ସ୍ୱାମି ! ବାଣୀ ସୁଧାଶ୍ଚ ଜ୍ୟାପଇ ଶୀତଳ
ବସନ୍ତ ଋତୁ କି ଭାଷିଲ ଶତଗଳ ।
ତାହାର ବାକ୍ୟ ଯେ ମଧୁର ରହସ୍ୟ ବାଣୀ
ମୁନିମାନେ ତପ ଉପେକ୍ଷିବେ ଶୁଣି ।
କୁମ୍ଭ ଘଟଣ ଜାଣି ସୁବଳିତ କଣ୍ଠ ତଟଇ
ଉଚିତ ସମ୍ଭାଷଣେ ସରୂପେ ଘଟଇ ।
ସ୍ୱାମି ! ପ୍ରଲମ୍ବିତ ବଳିତ ତାହାର ଭୁଜ ବେନି
କୁମୋଦ ନାଳ ପ୍ରାଏକ ସୁଶୀତଳ ଧୁନି ।
ସୁରଭର ତେଜ ପ୍ରାଏ ତାହାର ବକ୍ଷସ୍ଥଳୀ
ସୁଭଙ୍ଗ ସୁଶୀତଳ ମରକତ ଝଳି ।
ସ୍ୱାମି ! କୁପଲ ରତ୍ନ ପ୍ରାଏକ ଅଙ୍ଗୁଷ୍ଠିର ଜୋଡ଼
ନଖେ ବିରାଜନ୍ତ ପାଖୁଡ଼ା ପୁଷ୍ପ କାନ୍ତ ।
ସ୍ୱାମି ! ବସ୍ତ୍ରାର ବକ୍ଷସ୍ଥଳ ଆକର୍ଷଣ ବେନି ବାହୁ
ପୁରୁଷ କୁଳକୁ ସେ ପ୍ରତାପ ଚନ୍ଦ୍ର ରାହୁ ।
ସ୍ୱାମି କୁମ୍ଭ ଘଟଣ କଣସ୍ଥ କୁଚ ବେନି,
ଅଞ୍ଚଳ ଉଡ଼କ୍ରେଣ ଶ୍ୟାମ କି ସୂର୍ଯ୍ୟ ଶଶୀ ଦେନି ।
ସ୍ୱାମି ! ସେହି ଉଦ୍ୟାନ ବନ ଅନ୍ଧାର ଘୋରମଏ
ତାହାର ତେଜ ଲାଗେ ଦିଶଇ ଚନ୍ଦ୍ରମା ଉଦଏ ।
ସ୍ୱାମି ! ବସ୍ତ୍ରାର ବକ୍ଷସ୍ଥଳ ମଝା ତନୁକ୍ଷିନ
ମଝା ସଙ୍କଟକୁ କଣସ୍ଥ ଧର ବେନି ।
କାଳେ ଯେସନେକ ଶିଆଳି ପତ୍ର ତଟ
ତେସନ ସଞ୍ଚ ଅମିଅ ସିନ୍ଧୁ ତାହାର ପେଟ
ସ୍ୱାମି ଶରଦ ଶିଶିର ହେମ ବସନ୍ତ
ଗ୍ରୀଷ୍ମ ବରଷା ଛଅ ଋତୁ ଆତଯାତ ।
ବେନି ଭୁଜ ଆକର୍ଷଣ କରି କରିବ ଯାହାକୁ କୋଳ
ଗ୍ରୀଷ୍ମ କାଳେ ଦେହ ଚନ୍ଦନୁ ଶୀତଳ
ସ୍ୱାମି ! ତାହାର ବକ୍ଷସ୍ଥଳ ଲାଗିବ ଯାହାର କାଏ
ବରଷା ଋତୁକୁ ସେ ହୋଇବ ହେମ ମଏ

ସ୍ୱାମି ବେନି ସ୍ତନ ଲାଗିବ ଯାହାର ବକ୍ଷ ସ୍ଥଳେ
ଶରଦ ଋତୁକୁ ହୋଇବ ଯେସନ୍ତେ କାକର ଶୀତଳେ
ସ୍ୱାମି ତାହାର ସ୍ତନ ଲାଗିବ ଯାହାର ହୃଦେ
ଶିଶିର ଋତୁକୁ ଅମୀୟ ଜଳ ହ୍ରାଦେ
ଯାହାକୁ ଆକର୍ଷନ କରିବ ବେନି ଭୁଜ ଭଙ୍ଗ ।
ହେମ ଋତୁକୁ ଦେବ ଅନଳ ତେଜ ସରି
ସ୍ୱାମି ! ଭୁଜେ ଆକର୍ଷନ କରି କରିବ ଯାହାକୁ କୋଳ
ବସନ୍ତ ଋତୁକୁ ଯେସନ୍ତେ ଗନ୍ଧ ଶୀତଳ ।
ସ୍ୱାମି ! ବରଷା ଋତୁକୁ ଅଟଇ ଷଡ ଋତୁ
ତାହା ସ୍ତନ ଭର କି ସେ ଭରତ କଳପ ତରୁ ।
ଗଭୀର ନାଭି ସଞ୍ଚିତ ମଧ୍ୟ କୁକ୍ଷି
ଗୁଣ କହିବାର ପଟାନ୍ତର ନାହିଁ କରୁ ।
ସ୍ୱାମି ମୃଣାଳ ସୂକ୍ଷ୍ମ ନ ପରିଇ ବେନି କୁଚ ମଧ୍ୟେ
ନଷ୍ଟଏ କାମ ଦେବ ହାରିଲା ତାକୁ ଯୁଦ୍ଧେ ।
ସ୍ୱାମି ! ମଧ୍ୟେଣ ବିରାଜଇ କୃଷ୍ଣ ବର୍ଣ୍ଣ ରୋମାବଳୀ
ରତ୍ନ ପନ୍ତି ମଧ୍ୟେ ଯେସନେକେ ନୀଳା ରେଖାବଳି ।
ବେନି ଫୁଲଣି ସେ ସୁବଳିତ କୃଶାନୁ
ଓଲଟ ରମ୍ଭ କଦଳୀ ଜାଣି ବେନି ଜାନୁ ।
ଜଘନ ସୁବଳିତ ନୋହଇ ଅତି ଉଚ୍ଚ
ତରକ ମଧ୍ୟ ମାନ ଅତି ଘନ ସୁସଞ୍ଚ ।
ସ୍ୱାମି ! ଜଳେ ହଂସ ଗବନୀ ଗ୍ରୀଳନ୍ତେଣ ଠାଣି
ପୃଥିବୀ ଆକର୍ଷଣ କରେପନ୍ତ ଧରଣୀ ।
ସ୍ୱାମି ! ଓଶୋକ ପୁଷ୍ପ ପ୍ରାଏକ ପାଦ ତଳି
କନେକ ଚମ୍ପକ ପ୍ରାୟେକ ଅଗୁଳି ।
ଛରିଟ ପୁଷ୍ପ ପ୍ର ଏକ ଲଖଯନ୍ତି
ବେନି ପାଦତଳି ପାପଦ୍ମ ବିରାଜନ୍ତି ।
ଗ୍ଲଳନ୍ତେ ଅବେଣି ସୁବର୍ଣ୍ଣ ଫୁଲ ଫୁଟଇ
ନୁହଇ ଉଚ୍ଚ ନୀଚ ମଧ୍ୟମାନ ଅଟଇ ।
ସ୍ୱାମି ! ବଦନକୁ ଚନ୍ଦ୍ରମା ନୋହଇ ପଟାନ୍ତର
ଉଦେ କାଳେ ବପୁହୀନ ସେ ଅଟଇ ଶଶୀଧର । ୧୮୭୦
ସ୍ୱାମି ! ପୂର୍ଣ୍ଣିମୀ ଚନ୍ଦ୍ରମାକୁ କରନା ଅବା ସଙ୍ଗ
ଶ୍ୟାମ୍ବରେ କଳଙ୍କ ସେ ବହିଲ ଶଶାଙ୍କ ।

ସ୍ୱାମି ! ମାନ୍ଧାତା ମୃଗ ହ୍ୱାଦେ କହିଁତ ଦ୍ରୁହାଗ୍ନି
ନୁହଇ ଟରଟକୋପୀ କୃପା ଢ଼ଢେଶି ।
କୁଳୀନ ଚୃତୁହଂସୀ ଧର୍ମ ଟାହାନୁବାଦୀ
ଦ୍ରଶନେ ପ୍ରସନ୍ନ ସେ ଚଞ୍ଚଳା ସର୍ବସାଧ୍ୱୀ ।
ସ୍ୱାମି ! କହିଁତ ଚଞ୍ଚଳ ସେ ପରମ ବଇଷ୍ଣବୀ
ଗୁଣନିଧି ସେ କ୍ଷେମାଶୀଳ ସାଧବୀ ।
ଅଚୋବନ୍ତେ ଶୋଭାକର ହସନ୍ତେ ଶୋଭାବନୀ
ସ୍ୱାମି ! ଚଳନ୍ତେ ଶୋଭାରର ତଇଲୋକ ମୋହୋନୀ ।
ତୋତିକୁ ପଟାନ୍ତର କରିବା କି ରୂପ
ରମ୍ଭାଙ୍କ ଶତେ ଗୁଣ ଦେବ ତାହାର ଯେ ରୂପ ।
ସ୍ୱାମି ! ତୋହୋର ପ୍ରସାଦେ ଆମ୍ଭେ ସକଳ କଲୁ ସାଧି
ସ୍ତିରି କର୍ମ ଉତ୍ତମୀ ସେ ହଦଏ ବାରିନିଧି ।
ସ୍ୱାମି ! ନବସୃଷ୍ଟି ତହିଁନ୍ତା ଗୁଣ୍ଡିଣ ପ୍ରଜାପତି
କେତେକାଳ ଗଢ଼ିଲା ଅମୂଲ୍ୟ ରତ୍ନକାନ୍ତି ।
ଅତ୍ୟନ୍ତ ସମ ତ ନୋହଇ ବକ୍ଷସ୍ଥଳ
ତଥି ଉପରେ ଭାର ତାହାର କୁଚ ମଣ୍ଡଳ ।
ଏତେବଡ଼ ଭାର ଅଛଇ କ୍ଷୀଣ ମଝି
ଉଛର୍ଗ ନୋହଇ ସୃଷ୍ଟି ଅଛଇ ସୁଭାଗି । ୧୮୦
ଅନେକ ଯୁଗେ ଘଟଣ କଲା ସ୍ତିରି ରତ୍ନକାନ୍ତି
ଭାଗିଂ କେତେକାଳ ସେ ଗଢ଼ିବ ପ୍ରଜାପତି ।
ତେଣୁକର ବଡ଼ ମଧ୍ୟେ ନ ଚଳେ ପାଦଗତି
ତଇଲୋକେ ନ ଦେଖିଲି ଏସନ ଯୁବତୀ ।
ସ୍ୱାମି ! ତୁ ରାଜାଧିରାଜେଶ୍ୱର ମହାପ୍ରଭୁ
ତୁମ୍ଭଙ୍କ ସେ ଅଭିସାରିକା ଅଛଇ ଦେବ ସେହୁ ।
ସ୍ୱାମି ! ଅନେକ ବଚନ କହିଲୁ ଦେବ ସ୍ତୁତି
ପହରକେ ସମସ୍ୟା ଦେଲା ଶାନ୍ତ ମୂର୍ତ୍ତି ।
ବଚ ନସ୍ୱନେ ସେ ଗୃହ୍ନଂକଲା ପୁଚ୍ଛି
ତାହା ବାକ୍ୟ ଶୁଣି ପଡ଼ିଗଲୁ ମୁର୍ଚ୍ଛା ।
ଆମ୍ଭଙ୍କୁ ବୋଇଲା ମହିଷାସୁର ରାଜାକୁ କହ ତୁମ୍ଭେ ଯାଇଂ
ତାହାର ବର୍ଣ୍ଣି ଚନ୍ଦ୍ର ଦେଖିବଇଂ ମୁହିଂ ।
ତୁ ପୁରୁଷ କୁଳେ ଉତ୍ତମ ସେ ସ୍ତିରି କୁଳେ ଉତ୍ତମୀ
ତାହାର ତୋହର ସେ ପ୍ରୀତି ହୋଇବ ସ୍ୱାମୀ ।

ଆହୋ ପକ୍ଷ ଯେତେକ ଗୁଣ ତାହାର କହିଲେ ଚଣ୍ଡ ମୁଣ୍ଡ ଦୈନେ
କାମ ଜଳେ ବୁଡିଲୁ ହେ ଅମର ମହାଗ୍ୟାନି ।
ଆସ୍ଥାନୁ ଉଠିଲେ ସେ ଅସୁର କହିଲ ସିଂହର ସୁତ
ଚଣ୍ଡମୁଣ୍ଡ ଦୁହିଙ୍କ ସେ କଲାକ କୋଳାଗତ ।
ଆପଣାର ଅଙ୍ଗେ ଥିଲା ଅବଷେକ ରତ୍ନମାଳ
ଅବଷେକ କଲା ସେ ଦୁହିଙ୍କର ବକସ୍ଥଳ । ୧୮୯୦
ତୁମ୍ଭେ ମୋହୋର ବାନ୍ଧବ ଚରଣେ ଲାଗଇ
ସେ ସ୍ତ୍ରି ଆରନୁ କାଢ଼ିକ ପ୍ରତଗଢ ମାଗଇ ।
ବାବୁ ଜଣେକ ଅସି ଜଣେକ ନଥିଲା କାଂପା ରଖି
ନ ପୁଣ ସୁନ୍ଦରୀ ନ ପା ତୁମ୍ଭେ ଦେଖି ।
ଆରେ ବେନ୍ଧ ସୋଦର ତଖ ମୋହୋର ପ୍ରାଣ
ସେ ସ୍ତ୍ରିଗ୍ରି ରତ୍ନକାନ୍ତିକ ସନଧ୍ୟେ ମୋର ଆଣ ।
କନେକ ହାନ୍ଦୋଳାରେ ଝାରା ଜଡିତ କମ
ନେତର ପାତାଙ୍ଗ କରନ୍ତି ଆଳମ୍ବ ।
ତାଳମ୍ବ ନେତର କରନ୍ତି ଉଲଖ ପାଟଛନ୍ଦ
ଉଦଣ୍ଡ ଆଳମ୍ବ ଉଡନ୍ତି ଗଗନଗତ ।
ଲକ୍ଷେକ ରଥ ସେ ପାଞ୍ଚ ଲକ୍ଷ ହାଥୀ
ନବଲକ୍ଷ ତୁରଙ୍ଗ ତିନ ଲକ୍ଷ ପାଦାନ୍ତି ।
ନିଶାଣ ଟମକ ବୀରତୂର ବାଜେ
ଅନେକ ରତ୍ନ ଦେଲେ ମହିଷାସୁର ମହାରାଜେ ।
ଅହୋ ପକ୍ଷ ସେ ସୈନ୍ୟ ଚଳାଇଲା ମହିଷାସୁର ରାଏ
ଆପଣା ରାଜ୍ୟେ ସେ ଅନେକ ଉଛବ କରାଏ ।
ସୁବର୍ଣ୍ଣର କଳସ ନେତ ପାତାଙ୍ଗ ଉଡନ୍ତି
ହାଟ ବାଟେ ଦାଣ୍ଡେ ସେ ଚନ୍ଦନ ଛେରା ଦ୍ୟନ୍ତି ।
ନାରୀଗଣମାନେ ସେ ଘେନିଣ ଅର୍ଘ୍ୟସ୍ଥାଳୀ
ଗଗନେ ଉଭାରନ୍ତି କର୍ପୁର ରଜ ଧୂଳି । ୧୯୦୦ ।
ଉଷ୍ଣ ଶୋଭା ଯୋଣା କଦଳୀ ତରୁ ଦ୍ୱାର
ସୁବର୍ଣ୍ଣର କଳସ ବସନ୍ତି ଘରେଘର ।
ଚନ୍ଦନ କସ୍ତୁରୀ ପନୀର ଜଳେଭର
ମାରନ୍ତି ପିଚକା ଦ୍ୱାରେ ଦ୍ୱାରେ ଉଭାର ।
ନେତ ଚନ୍ଦ୍ରାତପେ ଅମ୍ବରରେ ଝଲା
ମାଣିକ୍ୟ ପୁଞ୍ଜା ପୁଞ୍ଜା ମୁକୁତା ମାଳି ମାଳା ।

ଚମଡ଼ି ମନ୍ତ୍ରୋପ ଯେ ଦେଖିଲେ ଜଗତ୍ତି
ଉଡ଼ନ୍ତି ଚଢ଼ିଲା ଅଶ୍ବରନ୍ତେ କୋଟିକାନ୍ତି ।
ଚଳିଲେଣ ତାହାର ଯେ ଅନେକ ସୈନ୍ୟବଳ ଘେନି
ବନ ଗହନେ ଚଳନ୍ତି ଚଣ୍ଡ ମୁଣ୍ଡ ବେନି ।
ଲକ୍ଷ୍ମୀଭଦ୍ରା ନଦୀକୂଳେ କନ୍ଦୁଗିରି ପର୍ବତ
ତହିଁର ଉପରେ ବିଜେ ଜଗତ ମାତ ।
ସ୍ୱର୍ଣ୍ଣ ତଳ ଜଳ ମଳୟ ପବନ ବହଇ
ଆନନ୍ଦେ ବନ ଗହନ ସମସ୍ତ ଜନ ମୋହଇ ।
ଦେଖିଲେ ବିଜେ କରିଅଛନ୍ତି ଅନାଦି ଶକତି
ସହସ୍ରେକ ଯୋଜନେ ବିରାଜଇ ଜ୍ୟୋତିକାନ୍ତି ।
ବିଜଏ ଅଛନ୍ତି ଯେ ମୋହନୀ ଯୋଗ ସାଧି
ଦେଖିଲେ ଚଣ୍ଡ ମୁଣ୍ଡ ଅମିଅ ପୟୋଧି ।
ସମ୍ମୁଖରେ ଅନେକ ରତ୍ନମାଳା ଥୋଇ
ଚଣ୍ଡ ମୁଣ୍ଡ ଗୁଡ଼ିଲେ ପ୍ରଣିପତ୍ୟ ହୋଇ ୧୯୧୦ ।
ଯେସନେକେ ଆଗ୍ୟାଂ ହୋଇଲେ ଆମ୍ଭଙ୍କୁ
ସମସ୍ତ କହିଲୁ ମହାରାଜା ପ୍ରଭୁଙ୍କୁ ।
ତାହା ଶୁଣି କାମ ଜଳେ ବୁଡ଼ିଲା ନରନାଥ
ଅନେକ ରତ୍ନ ଅଳଙ୍କାର ଦେଲେ ଆମ୍ଭର ହାଥ ।
ମାଗୋ କର୍ମ ତାହାପେ ଯେ ସ୍ତ୍ରି ବିର୍ଙ୍କି ଧନଦଶା
ଯେବଣେ ତୋର ବାଞ୍ଛା ପୂରିଲା ମନଷା ।
ଶୁଣି ନରାଧିପ ଯେ ସମସ୍ତ କଲ୍ଲ ତେଜ୍ୟା
ରୂହି ସେ ଏକାଙ୍ଗ ହୋଇବୁ ଛଟେଯା ।
ମାଗୋ ଶୟ୍ୟାରେ ଅଭରଣ କର ରତ୍ନକୋଷ ।
ବିପୁଳ ହିନ୍ଦୋଳାଏ ବହନ ହୋଇ ବସ ।
ମାଗୋ କାହିଁ ଅଛି କରି କାହିଁ ତୋର ଭେଗ
ସ୍ତ୍ରି ସ୍ତ୍ରି ଦିନ ଦଶା ଏତେକାଳେ ଏହେନ୍ତେ କ ଯୋଗ ।
ମହିଷାସୁର ଦୃଢ଼ନେ ଗୋ କରିବା ଶୁଭବେଳେ
ବିପୁଳ ଲକ୍ଷ୍ମୀ ଗୋ ଭୁଞ୍ଜିବା ସର୍ବକାଳେ ।
ଆମ୍ଭଙ୍କ ଦସ୍ଥା ଗୋ କରିଥିବ କାନ୍ତାନୀ
ଜନ୍ମେ ଜନ୍ମେ ହୁଅ ତୁ ମହିଷାସୁର ଭବାନୀ ।
ଏତେକ ବଚନ ଶୁଣି ପ୍ରତିବାକ୍ୟ ଦେବୀ ଦୁର୍ଗେ
ମହିଷାସୁର ଭବାନୀ ମୁଁ ହୋଇବି କେବଣ ଭାଗେ ।

ଆହେ। ପରୀକ୍ଷ ଚଣ୍ଡ ମୁଣ୍ଡ ତୁମ୍ଭେ ପୁଣିହିଂ ଦୁଃଖପାଅ
ଯାହାର ଚିହ୍ନିକ ବାହୁଡ଼ିଣ ଯାଅ ।୧୯୬୦ ।
ତୁମ୍ଭର ବଚନକୁ ମୋର ପ୍ରତେ ଅଛୁ କାହୁଁ
ମହିଷାସୁର ଆସି ମୋର ସ୍ତମୁଖରେଣ କାହୁଁ ।
ସୈନ୍ୟବଳ ସଖା ସମସ୍ତ ଦେଖିବ ତାହାର
ଯାକାର ତୁଲେ ତାହା ରାଜ୍ୟକୁ ଯିବ ଘର ।
ତାହାଙ୍କ ମୋହୋରେଣ ଉପୁଜିବ ପ୍ରୀତ
ମୁଁହିଂ ତାହାକୁ ଦେଖିବ ସେହି ମୋତେ ଦେଖି ହୋଉ ଚିତ୍ତ ।
ତାହାର ମୋହୋର ଯେ ହୋଇବ ଏକ ଇଚ୍ଛା
ତୁମ୍ଭେ ଅବା ମୋତେ ସ୍ତ୍ରୀଲିଙ୍ଗ ବୋଲି ବାଛୁଅଛ ।
ତୁମ୍ଭର ବୋଲକୁ ମୁ ସମ୍ମତେ ନ ଗଲି
ତୁମ୍ଭେ ମୋହୋର ସ୍ତ୍ରୀମୁକୁ ଦେଖିଅ ସେ ବୋଧ ବୋଲି

## ଚଣ୍ଡ ମୁଣ୍ଡ ବଧ

**ଆହେ। ପରୀକ୍ଷ** ସ୍ତ୍ରୀ ରତ୍ନ ନାଏକା ସେ ପୁରୁଷ ଗର୍ବଲୋଗିଂ
ସୈନ୍ୟ ସଙ୍ଗତ ଚଣ୍ଡ ମୁଣ୍ଡ ବାହୁଡ଼ନ୍ତି ବେଗି ।
ଆସ୍ତାନେ ବିଜେ କରିଅଛି ମହିଷାସୁର ଦୁରିଷ୍ଟ
ଚଣ୍ଡ ମୁଣ୍ଡଙ୍କର ଗତପଥ ଚାହିଁ ରହିଏ ବାଟ ।
ପବନ ଗତି ସେ ଚଂଡ ମୁଂଡ଼ ଗଲେ ବେଗେ
ଯାଇଂ ଦର୍ଶନ ହେଲେ ମହିଷାସୁର ଆଗେଂ ।
ଶୁଣ ଦେବ ରାଜେଶ୍ୱର ମଣ୍ଡଳ ଆଦିପତି
ବଡ଼ ବଇଷ୍ଣବୀ ହେ ସ୍ତ୍ରୀ ରତ୍ନକାନ୍ତି ।
ଆମ୍ଭର ବଚନକୁ ଦେବ ସମ୍ମତେ ନାହିଂ
ବୋଇଲ ମହିଷାସୁର ସମଦଂଡ଼ ଘେନ ଆସୁ ବାହି ।୧୯୭୦।
ପରୀକ୍ଷ କରିଣ ସେ ଘେନିଣ ଯାଉ ମୋତେ
ଦେଖଇଂ ରୂପଗୁଣ ଭଲବ ଏକାନ୍ତେ ।
ମହିଷାସୁର ବୋଇଲେ ନୋହିଇ ଦେବ ସ୍ତ୍ରୀ ।
ଜାଣିଲି ନିଷ୍ଟମ୍ଭେ ସେ ଚଞ୍ଚଳା ନାଗରୀ ।
ପରୀକ୍ଷ କରିବାକୁ ଯେବେ ଲୋଡ଼ଇ ପୁରୁଷକୁ
ନିଷ୍ଟେ ଏ ଅସତୀ ସେ ଜାଣିଲି ତାହାକୁ ।
ମୋହୋର ବଳନ୍ତେ ତିନି ସ୍ୱର୍ଗ ନ ସହଇ
ସ୍ତ୍ରୀ ଜାତିର ପାମେରୀ ଏଡ଼େ ଦର୍ପ ବହଇ ।

ଯାଅରେ ଚଣ୍ଡ ମୁଣ୍ଡ ବେଗେଣ ବାହୁଡ଼ି
ଭଲେ ନଇଲେ ଆଣ ତାକୁ ଧରି ।
ଆଜ୍ଞା ପଞ୍ଚାକ୍ଷ ସ୍ୱାମୀର ଆଗଂ୍ୟା ପାଇଲେ ବୀରବର
ବନ୍ତ୍ର ବୁଲାଇ ଦମ ଧାମନ୍ତ ଖରତର ।
ଆକାଶ କମ୍ପିଲ ତର ରେ କାର ଶବଦେ
ପୃଥ୍ୱୀ ହେଲା ଟଳଲ ଧାମନ୍ତେଣ ପାଦେ ।
ଦୁର୍ଗାର ସମ୍ମୁଖରେ ସେ ହୋଇଲେ ପ୍ରବେଶ
ଆଗୋ ମହାମାୟାଣୀ ବେଗ ଚଳ୍ହାଇଂ ଆସ ।
ତୋହର ବୋଲକ ଶୁଣି କୋପ କଲେ ମହାମାଏ
ମଳିଣ ଶ୍ୟାମର ହୋଇଲା ତେଜ ମସ୍ତେ ।
ଭଲେଣ ଯେବେ ତୁ ନ ଆସିବୁ ନାଶି
ଏହିକ୍ଷଣି ତୋତେ ଆମ୍ଭେ ନେମୁ ବାଳ ଧରି । ୧୯୪୦ ।
ଦୁର୍ଗା ବୋଇଲେ ମୁ ସ୍ତ୍ରିଶି ରହୁ ଧର୍ମଣି
ତୁମ୍ଭେ ବୀରବର କ୍ଷତ୍ରିୟ ଚୂଡ଼ାମଣି ।
ସତମାତ୍ର ଯେବେ ଲଙ୍ଘିବାକ ମନ୍ତ୍ରୀ
କାହାର ଆଗରେ ଆଉ କହିବାକ ଯାଇଂ ।
ରାଜା ହୋଇ ଯେବେ କରିବାକ ଅବିଧି
ପରଜା ମାନଙ୍କ ତହୁଂ କସ କରବ ବୁଧି ।
ମେଘ ମାନେ ଯେବେ ନ କରବେ ବୃଷ୍ଟି
ଫଳ ଦାଏକ ଯେବେ ନ ଦେବ ଏ ସୃଷ୍ଟି
ପୁରୁଷ ମାନେ ଯେବେ ନ ଲଙ୍ଘିବେ ସ୍ତ୍ରିୟାଙ୍କ
ଏତେ କଥାକୁ ହୋ ଧର୍ମ ହିଂ ସାକ୍ଷୀ ।
କୋପେଣ ଦାନେବ ଯେ ଅଧର କଲା ପୃଷ୍ଟ
ଆମ୍ଭେ କେମ୍ଭେ ଜାଣିମା ତୋହୋର ଧର୍ମବାଟ ।
ଋଷି ମାନୁଷି ତପୋଧନ କଲୁ ଭକ୍ଷ
ମଦିରା ପାନ କରି ଆମ୍ଭେ ଧର୍ମ କରୁ ବାଞ୍ଛ ।
ଅଦଭୁତ ହୋଇ ଗୋ କାହୁଂ ତୁ ଅଇଲୁ
ଆପଣା ଦମ୍ଭ ପଣ ଆପଣେ ନାଶ କଲୁ ।
ଦୁର୍ଗା ବୋଇଲେ ତୁମ୍ଭେ ରେ ପାମର ମନ୍ଦ ସୁର
ଧର୍ମ ଲଙ୍ଘିଲେ ମରବ କି ବୃଦ୍ଧି ତୁମ୍ଭର ।
ଏମନ୍ତ ପ୍ରାଏକ ମଣିଲ କରେ ମତେ ବାଇ
ଅସୁର କୁଳ ଭକ୍ଷାନ୍ତ ଅଟଇରେ ମୁହିଂ । ୧୯୫୦ ।

ଏହା ଶୁଣି ଚଣ୍ଡ ମୁଣ୍ଡଙ୍କର ବସିଲା ମହାରାଗ
ପର୍ବତ ଉପରେ ଉଠିଲେ ବୀରେ ବେଗେ ।
ପ୍ରଦକ୍ଷିଣା କରଣ ସେ ଅସୁର ମହାମତ
କେଶ ଧରିବାକୁ ବଢାଇଲେ ହାଥ ।
କାଳାନଳ ନୟନେ ଦେବୀ ଚାହିଁଲେ ହୁଂକାର ଶବଦେ
ଚଣ୍ଡମୁଣ୍ଡ ବେନି ପଡିଲେ ଘୋର ନାଦେ ।
କ୍ଷଣକେ ବିସ୍ତାରଲେ ଦେବୀ ଘୋର ରୂପ କାୟା
ଗର୍ଭରୁ ବାହାର ହୋଇଲେ ରୁଦ୍ରା ମାୟା ।
ଆକାଶେଣ ଓଷ୍ଟ ପାତାଳେଣ ଜଭ
ଏକ ଶରୀର ସେ ଯୋଡିଲା ଉନ୍ନ ସ୍ୱର୍ଗ ।
କଟରେଣ କରବାଳ ବଜ୍ରେ କର୍ତ୍ତି କାତି
ଅଷ୍ଟଅଷ୍ଟ ଭୁଜେ ମୋହେ ଯେସନ୍ତ କାଳ ରାତ୍ରି ।
ଦୁର୍ଗା ବୋଇଲେ ଗୋ ଧାଅଂ କନା ବେଗ
ଅସୁର ସଇନ୍ୟ ବେଗେ କର ଭୋଗ ।
ଦୁର୍ଗାର ଆଜ୍ଞା ପାଇଂଣ ମହାମାଏ
ମହାଭୀଷ୍ମ ରୂପ ସେ ବଳାଗିଲେ ମହାକାଏ ।
ଶେଣା ପକ୍ଷୀ ଯେସନେ ପଡଇ ଗଗନୁ
ଦଇତ ବଳ ସଇନ୍ୟ ପଡ଼ିଲେ କୋପ ମନୁ ।
ବିକରାଳ ଘୋର ରୂପ ବିକଟାଳ ଦେଖି
ଭାଜିଲେ ଦାନେବ ବଳ ସମର ଉପେକ୍ଷି । ୧୯୭୦ ।
ବଜ୍ରେ କର୍ତ୍ତି କଟାର ଯେ କରନ୍ତି ପ୍ରହାର
ବେନି ଖଂଡ ହୋଇଂ ପଡନ୍ତି ଅସୁର ।
ରକତ ଦେଖି ଦେବୀ ଧାମନ୍ତି ଗଜଗାଜ
କଉତୁକ କ୍ରୀଡାଏ ରକ୍ତ ମାଂସ ଭୋଜ ।
ଯେସନେକ ରାହୁ ବିସ୍ତାର କରଇ ଗର୍ଭ
ଗଜ ଅଶ୍ୱ ପାହାନ୍ତି ନ ରୁଣ୍ଡନ୍ତି ସର୍ବ ।
ମହାବଳବନ୍ତ ସେ ରହିଲାକ ଲେଉଟି
ଅବଗଛନେ ଦାନବେ ସେ ନାରାଜ କଲେ ବୃଷ୍ଟି ।
ତୁଂଡ଼ ବିସ୍ତାରଣ କଲେ ରଣ କୁତୋହଳୀ
କହୁଂ କହୁଂ ଦାନେବ ବଳ ସର୍ବ ଗିଳି ।
ନାରାଯମାନ ଯହୁଂ ନ ବହିଲା କାଏ
ଭାଗିଂଲେ ଦାନେବ ବଳ ବାସଭଗ୍ନ ପକ୍ଷୀ ପ୍ରାଏ ।

ରଣଭଗ୍ନଂ ହୋଇ ଯେ ପଳାଇ ଯାନ୍ତି ବନେ
ଝୁଳ ବସ୍ତ୍ରାରଲେ ଯୋଜନେ ଯୋଜନେ ।
ରଥ ଗଜ ଅଶ୍ୱ ପଦାନ୍ତ ଯେତେ ଗଲ
ଦେବନ ଙ୍କର ମଧ୍ୟରେ ସେ ସମସ୍ତ ଗଡ଼ିଲ ।
ସମସ୍ତ ସଇନ ଯେ ପଡ଼ିଲେକ ରଣେ
ବାହୁଡ଼ି ବାରତା ନବାକୁ ନ ରହିଲେ ଏକ ଜଣେ ।
ଆହେ। ପରୀକ୍ଷ ପୁରୁଷ ଅଭିସାରକା ହୋଇଂ ଜାନେବ ମନୋ
ଚଣ୍ଡ ମୁଣ୍ଡ ଆସିବାକୁ କରଅଛୁ ଭରସା । ୧୯୭୦ ।
କାଳେ ଚଂଡ଼ ମୁଂଡ଼ ହୋଇଲେ ଖଂଡ଼ ଖଂଡ଼
ପଡ଼ିଲେ କାଳରାତ୍ରୀ ମୁଖେଣ ବଖଂଡ ।
ଜୟ ତୁ କାତ୍ୟାମା ଗୋ ରନୃଗିର ବାସୀ
ଅସୁର କୁଳକୁ ଗୋ ନାମ ମୋହ ଫାଶି ।
ନମସ୍ତେ କାତ୍ୟାମା ଗ୍ରୟା ପାସ୍ବା ବେଜ ଦେବୀ
ତବ ପାଦ କମଳ ମାମ ହୃଦେ ଭାବ ।
ଚଂଡ଼ ମୁଂଡ଼ ନାଶେନୀ ଗୋ ଅସୁର କୁଳ ଖେଦ
ଅକାଳି ତ ଗ୍ରଂଡାଳ ବଳ କଲୁ କଉତୁକେ ପ୍ରସାଦ ।
ସେ ମହାମାୟା ଚରଣେ ଶରଣ ମାଗଇଂ ଅନୁବ୍ରତେ
ବଦସ୍ତନ୍ତ ଶୁଦ୍ରମୁନ ସାରୋଳ ଦାସ ବନସ୍ତ ଯୁଗତେ ।



## ଶୁମ୍ଭ ନିଶୁମ୍ଭ ବଧ

**ଶୁଣ ହୋ ପରୀକ୍ଷ** ରାଜା ବଦସ୍ତନ୍ତ ଶୁକ ବ୍ରହ୍ମା
ଶ୍ରୀ ଦୁରଗ ତାରଣୀର ଏସନ ମହିମା ।
ଅସଂଖ ଚରିତ୍ର ଏ ଚଂଡ଼ୀ ଯୁଧ୍ୟର କଥା
ମନୁଷ୍ୟ ଜନ୍ମ ଦେ କରବ ଲେଖନ୍ତା ।
ପଥ ଉପଟଲସନ୍ତେ ମଏଷାଂ ସୁର ନୃପତ
ଏକେଣ ନବତନ ସବର ଗୁଣାବନ୍ତୀ ।
ଏକେଣ ନବତନ ଆବର ଗୁଣବନ୍ତୀ
ତାହାର ତୁଲେଣ ନା କହିବ ପିରତ । ୧୯. ୦ ।
ରଥ ରଙ୍ଗ ଇନ୍ଦ୍ରଏ ମୋହୋର ମତ

କ୍ଷଣକେ ଆକ୍ରନ୍ଦଇ କ୍ଷଣକେ ଉଠି ବସଇ
କ୍ଷଣକେ ଭିତରେ କ୍ଷଣକେ ବାହାରକୁ ଆସଇ ।
ମନ ଉଦ୍‌ବେଗେ ସେ ଅସ୍ଥିର ହୋଇଛି କାଏ
ଅଶେଷେ ଲାଗଇ ଶରୀରକୁ ମଳୟ ବସନ୍ତ ପ୍ରାଏ ।
ଏମନ୍ତ ଅସ୍ୱାସ୍ଥ୍ୟ ହୋଇ ପ୍ରବେଶ ହୋଇଲେ ତହିଁ
ମିଳିଲା ଦାନବ ବୀର ଶମ୍ଭୁ ନିଶମ୍ଭୁଙ୍କର କତି ।
ଅନର୍ଥୀପ ଶରୀର ବାତୁଳ ଭାବ ତେଜ
ସମସ୍ୟା ଦେଇ ନ ପାରଇ ହୋଇଣ ହୀନବର୍ଣ୍ଣ ।
ଦେଖିଣ କୋଳ କରି ଧଇଲେ ଶମ୍ଭୁ ନିଶମ୍ଭୁ
କିମ୍ଭୂତ କାରଣେ ବିସ୍ମୟ ହୋଇଲ କି ବାବୁ ।
ମହିଷାସୁର ବୋଇଲା ଶୁଣ ହେ ବାନ୍ଧବ
ଚଣ୍ଡମୁଣ୍ଡ କହିଲେ ମୋତେ ବଡ଼ାଇ ସନ୍ଦେହେ
ଅଦ୍ଭୁତେ କନ୍ୟାଏ ରହନ୍ତି ଗିରିରେ ଭେଟି
କହିଲେ ନ ସରଇ ତାହାର ଗୁଣ ଗୋଟି ।
ସେ କନ୍ୟାକୁ ଆଣିମାକୁ ଗଲେ ବେଦଭ୍ରାଥ
ଅବସନ୍ନେ ସରିଲା ରଜନୀ ହୋଇଲା ପ୍ରଭାତ ।
କନ୍ୟାକୁ ଘେନି ନଇଲେ ମୋର ପ୍ରାଣ
ସେ ଅବା ତାହାକୁ ହରଣ କଲେ ନାଶ ।
ମନକୁ ଉଦବେଗ ମୋହୋର ବଡ଼ ଭ୍ରାନ୍ତ
କ୍ରୋଧେଣ ଗଦ ଗଦ ନିଦ୍ରା ନାହିଁ ରାତ୍ରି । ୧୨୯୦ ।
ଶମ୍ଭୁ ନିଶମ୍ଭୁ ବୋଇଲେ ରାଜା ହୋଇଲୁଁ ବାଇ
ପରସ୍ତ୍ରୀ ଲୁବୁଧେ ହୋ ବହୁତ କଷ୍ଟପାଇ ।
ଜଗତେଶ୍ୱର ଠାକୁର ତୁ ଅଟୁ ମହାପ୍ରଭୁ
ସ୍ତ୍ରୀ ମାନ ସ୍ତ୍ରୀର ବଧ କରିବାକୁ ନୋହୁ ।
ତେଜ କର ସ୍ୱାମୀ ଅନ୍ତେପୁର ଆସ୍ଥାନେ
ଆମ୍ଭେ ଦେଖିଯାଉଁ ହର ଉଦ୍ୟାନ ବନେ ।
ରାଜାକୁ ବାହୁଡ଼ାଇଂ ଶମ୍ଭୁ ନିଶମ୍ଭୁ ବେନି
ଚଳିଲେ ବୀର ସଙ୍ଗେ ଘେନିଣ ସଇନ ।
ମନ୍ଦର ଗିରି ସମାନେ ସେ ଘେନିଣ ବେନି ଦେହା
ବିସ୍ତରନ୍ତ କାହୁଂ ଆଗତ ପ୍ରମଦା ।
ନଷ୍ଟଏ ରାଜାର ତୁଟିଲା ଶ୍ରୀ ଆଇଷ୍ୟଇଂ
ସ୍ତ୍ରୀ ସ୍ତ୍ରୀର ପରଯୋଗେ ଆମ୍ଭକୁ ପେଷଇ ।

ଆହ୍ମା ଯେତେ କୋଟ୍ୟେଣ ବେନ ଆମ୍ଭେ ଋଷ୍ଟିଙ୍କ ଏହ୍ନିବଙ୍କ ନିଜ
ନାନ୍ଦିଏ ସେ ପ୍ରେଷିତ ବଳ ହୋଇନ୍ତି ସ୍ନାନବାର୍ଯେ ।
ନୈମିତେକ ବସ୍ତୁର ଚଳିଲେ ବେନ ବୀରେ
ଦୁଇ ହଙ୍ଗ ଚଳନ୍ତି ସେ ବଡ଼ାଇ ସମ୍ଭ୍ରମେ ।
ଶୁଣ ହେ ମହର୍ଷି ଦୁର୍ଗାଙ୍କର ଚରିତ
ଅନ୍ତର୍ଭୁକ୍ତ ଶତେ ଯୋଜନେ କେନାବତୀ ନଗରକୁ ଋଜୁଟିର ଯାଇଁ
କେନାବତୀ ନଗରେ ଦୁର୍ଗାଙ୍କର ପଡ଼ିଲାକ ଦୃଷ୍ଟି
ସିଂହଦ୍ୱାର କଗଣ ପଡ଼ିଲାକ ଛୁଟି । ୨୦୦୦ ।
ଦୋହୋର ଦରକୁ ଅଦଭୁତେ ଉଠିଲା ହସ୍ତୀ
ମଏତାଂସ୍ତୁର ନବର ଯାକ ହୋଇନକ ଦାହାଙ୍କ ।
ଅନ୍ତମତେ ବର୍ଷିଲା ହୋଇଲା ଅରିଷ୍ଟି
ଭାଙ୍ଗିଲା ପର ଗ୍ରାମ ସବୁ ଗଲା ଛୁଟି
ଆସ୍ଥାନ କଗଣ ଉପରୁ ଉଠିଲାକ ସମ୍ବାଦ
ଉଁଓରକୁ ମୁଣ୍ଡ କର ସେ ରକତ ମାଂସ ଖାଦ ।
ଘ୍ରାଣୀହଂସ ନବର ଉପରେଣ ଉଠି
ପେଲ୍ଲୁକ ଗୋଡ଼ାଇଂ ସେ ଗବନ୍ତି ଅରଣ୍ଟି ।
ନଗ୍ରେ ଉଲୁକାପାତ ହୋଇଲା ବହୁତ
ସେ ତାହା କେମନ୍ତେ ଜାଣିବ ଦୁରାପଦ ।
ବିକଟାଳ ଫେରଣ୍ଡା ବୁବ ଦଅଇ ନଗ୍ର ବେଢ଼ି
ଥାପିତ ଦ୍ରବ୍ୟ ଯେ ନ ପାବନ୍ତି ଲୋଡ଼ି ।
ମଭୁଁତେକ ବଳ ଯେ ପଡ଼ିଲେ ଚଣ୍ଡମୁଣ୍ଡଙ୍କର ତୁଲେ
ଅସ୍ଥି ଚର୍ମ ମାଂସ କିଛୁ ନ ରଖିଲେ ।
ଦେଖନ୍ତି ବନ ଗହନ ଯେ ସବୁହିଂ ଅପରୂବ
ଭ୍ରମନ୍ତି କୋକିଳ ମଉଭାବେ ଜବ ।
ଗନ୍ଧ ଆମୋଦଇ ମଳୟ ଶୀତଳ
ସମସ୍ତ ଅଶୁଭ ଦେଖନ୍ତି ଅସୁର ମହାବଳ ।
ଚଳନ୍ତି ବେନ ବୀରେ ସମସ୍ତ ଭଜେସି
ଦେଖିଲେ ପର୍ବତ ଉପରେ ଅଭୟା ଅଛନ୍ତି ବସି ।୨୦୦୦।
ଆଶିର୍ଯେ ଟମ୍ଭୁ ନଟମ୍ଭୁ ସେ କନ୍ୟାର ରୂପ ଗୃହି
ନିବେଦନ୍ତି ସନଧ୍ୟେଂ ଦଖା ସୋଦର କେହି ନାହିଂ ।
ଲାଜ ଭୟ ସଙ୍କୋଚ ଛାଡ଼ି ବେନ ବୀରେ
ଧାଇଁକାରେ ଉଠିଲେ ହାଁଇ ପର୍ବତ ଉପରେ ।

ଦେଖିଲେ କୁମ୍ଭାଙ୍କ ଅଲଙ୍କାର ଅମୂଲ୍ୟ ରତ୍ନ କାନ୍ତି
ଯେର ମୃତ ଚିନ୍ତି ଦୁହେଁ ହୋଇଲେ ବଶ୍ୟାକୃତ ।
ଜିନ ବସନ୍ତ ପଶହରଣ ଦେହଠବଦନ ବାଳୀ
ସମ୍ପ୍ରମନ ଦର୍ଶ୍ୱସଂସୀ ସେ ନ ଗୃହ୍ଣଂଲ୍ଲ ଡୋଳା ।
ମଙ୍ଗଂନବ୍ରତ ହୋଇ ସେ ନ ଦଅଇ ସମାପ୍ତି
ଅସୁର କୁଳକୁ ସେ କାଳବନ୍ଧନ ଫାଶି ।
ଶମ୍ଭୁ ନିଶମ୍ଭୁ ସେ ପଗ୍ଭରନ୍ତି ବାଣୀ
କେବଣ ଭୁବନୁ ସେ ଗୋ ଅଇଲୁ ଗୋସାମଣି ।
ଦୁର୍ଗା ବୋଇଲେ ମୁ ପରମ ନବାକୁଳ
ଆଦ୍ୟ ଜନ୍ମ ସ୍ଥାନ ମୋର ଅଟଇ ମେରୁସ୍ଥଳୀ ।
କର୍ମ ବିପାକେ ମୋର ନାହିଂ ଗୃହବାସ
କେଶୁକଣ ବନବାସ ହୋଇଲି ସ୍ୱାମୀରେ ନିରାଶ ।
ବ୍ୟାଘ୍ର ଭଲ୍ଲୁକେଂ ରାକ୍ଷସେ ମୋତେ ଭକ୍ଷିବେ ବୋଲି
ଜୀବନ ନଆଶି ମୁ ପର୍ବତେ ବସିଲି ।
ସ୍ୱାମୀଙ୍କ ମୋହୋର ମୁ ହୋଇଲି ମନ୍ଦଭାଗୀ
କ୍ଷଣେକ୍ଷଣକେ ଅସହଣୀ ମୁ କାହାକୁହିଂ ନୋହିଲି ଲାଗି ।୧୦୨୦
ଶମ୍ଭୁ ନିଶମ୍ଭୁ ବୋଇଲେ ଗୋ ଅଇଲେ ଚଣ୍ଡ ମୁଣ୍ଡ
ଏଡ଼େ ବଡ଼ ରାଜାଙ୍କୁ କପାଂ ତୁମ୍ଭେ ଭଣ୍ଡ ।
ଦୁର୍ଗା ବୋଇଲେ ହେ ମିଛରୁ ପାପ ନାହିଁ
ସତ୍ତ୍ୱେଣ ସାଗର ହୋ ଜଳଧିଂଇ ମଥି ।
ମସ୍ତ୍ରୈଷାଂସୁର ରାଜାର ଯେବେ ମୋହୋରେ କାର୍ଯ୍ୟ ହୁଅନ୍ତା
ଅନ୍ୟ ବଳ ଘେନି ଆପଣେ ଆସନ୍ତା ।
ମୁହିଂ କାହିଂକ ଯିବ ଘର ପୁରୁଷେକ ଯୋଗେ
ଶୁଣି ସ୍ୱରୂପ ଦେଖି କହିବେ ସର୍ବଆଗେ ।
ଦୁର୍ଗା ବୋଇଲେ ମୁ ନ ଜାଣଇ ତୁମ୍ଭଂଙ୍କର ନାମ
ଆଶା ହୀନ ଲୋକର ଲଙ୍ଘିଂଲେ ସତ୍ୟ ଧର୍ମ ।
କେଶ ଧରିବାକୁ ବଢ଼ାଇଲେ ଯହିଂ କର
ଅଦ୍ଭୁତ ହୋଇକଣ ମୁଣ୍ଡ ଛୁଟିଲା ତାହାଙ୍କର ।
ଆହୋ ଧର୍ମ ଆତ୍ମା ପୁରୁଷ ସେ ନବକାର ଜୋଡ଼ି
ଧର୍ମ ଯେ ଲଘଂନ୍ତି ସେ ହରନ୍ତି ଜୀବତ ।
ତୁମ୍ଭେ ତ କ୍ଷେମାଶୀଳ ପଣ୍ଡିତ ଦୟାବନ୍ତ
ତୁମ୍ଭନ୍ତ ଦେଖି ଆମ୍ଭେ ଅନେକ ଉପଜ ।

ଶମ୍ଭୁ ନିଶମ୍ଭୁ ବୋଇଲେ ଆମ୍ଭେ ତ ବଡ ଭାଗି
ତୁମ୍ଭ ବଗୁରକୁ ହୋଇଲୁ ଆମ୍ଭେ ଲାଗି ।
ଦୁର୍ଗାଏ ବୋଇଲେ ତୁମ୍ଭେ କହୁକିନା ଏମନ୍ତ
ଏବେ ତ ଭଲ କହୁଅଛ ଜାଣିମା ତୁମ୍ଭର ପ୍ରତକ୍ଷ ।୧୦୩୭।
ଶମ୍ଭୁ ନିଶମ୍ଭୁ ବୋଇଲେ ଗୋ ଶୁଣ ଆମ୍ଭର ମହିମା
ତୁ ମାହେଶ୍ୱରୀ ସ୍ତ୍ରୀ କୁଳରେ ଉତ୍ତମା ।
ସୁ ସ୍ତ୍ରୀ ସୁ ଦେବତା ସୁ ଜନ ସୁ ବ୍ରାହ୍ମଣ
ସ୍ୱରୂପ କହିବାନା ଆମ୍ଭର ଯେ ଗ୍ୟାଂନ ।
ଆମ୍ଭର ପିଅର ଗୋ ମହୀ ଦାସ ନୃପତି
ତାଡକା ଅସୁରର ଗୋ ଅଷ୍ଟ ପଣ ନାତି ।
ପ୍ରାକର୍ମେ ଜିଣି ଗୋ ପାରୁ ଦେବତାଏ
ଯାବତ ଜନ୍ମେ ଆମ୍ଭର ବିଷ୍ଣୁକୁ ବଡ଼ ଭଏ ।
ଏକୋନ୍ମେ ବହିଲୁ ଗୋ ସାଗର ସଙ୍ଗମେ
ଶୂନ୍ୟ ପବନ ଭକ୍ଷିଲୁଂ ଗୋ ତୋଷିଲୁ ବେଦ ବ୍ରହ୍ମେ ।
ଏକ ଆସନ ହୋଇ ଗୋ ବସିଲୁ ଦିବାରାଏ
ଏକାନ୍ତେ ନବ ସହସ୍ର ପରଯନ୍ତେ ।
ମାତା ଗୋ ଶ୍ୟାଙ୍ଗର ମିଳାଇଲ ଉତପତି ପୁଣ କାଏ
ବାହୁଡ଼ି ନଙ୍ଗ ମୁଖ ନାସିକା ଚରଣ ହୋଇଯାଏ ।
ଏମନ୍ତେ ନବଲକ୍ଷ ବରଷ କଲୁଂ ଘୋର ତପ
ନୈମ୍ଭତେ କଷ୍ଟେ ତପେ ହେ ଦେଖିଲୁ ବ୍ରହ୍ମରୂପ ।
ମାଗୋ ମଙ୍ଗୁଳ ବାହାନ ବିଜେ କଲେ ଧାତା
ବର ମାଗ ବୋଲି ବୋଇଲେ ନବ ସୃଷ୍ଟି କରତା ।
ଆମ୍ଭେ ବୋଇଲୁ ବ୍ରହ୍ମା ଯେବେ ଦେବୁ ବର
ପୁରୁଷର ହାତେଂ ଆମ୍ଭେ ହୋଇବୁ ଅମର । ୧୦୪୦ ।
କୃଷ୍ଣ ଯେବେ ପୁରୁଷ ରୂପେ ଅବତରି
ତେଣୁକରି ପୁରୁଷେ ଆମ୍ଭକୁଂ ନୋହିବେ ହରି ।
ବ୍ରହ୍ମାଏ ବୋଇଲେ ବିଷ୍ଣୁର ଅନେକ ଅଟଇ ମାୟା
ସ୍ତ୍ରୀ ପୁରୁଷନର ବିନାଶେ ତାର କାୟା
ବଇଲୋଚନ ଅସୁର ଯେ ନାନେ ଗଲା ପୁରୁଷେ
ମାଳତୀ କନ୍ୟା ଯେକ ହୋଇ ଝଟିଲେ ତାର ପାଶେ ।
ମାଗୋ ଦେଖିଲା ହୋଇକରି ବୋଇଲେ ସେ ଗୁରୁଁ
ସ୍ତ୍ରୀ ପୁରୁଷଙ୍କେ ସେ ତୁମ୍ଭର ନିନ୍ଦା ନ ହରୁ ।

ଦୁର୍ଗା ବୋଇଲେ ତୁମ୍ଭେ ଏହି ଦେହ ଘେନ
ଅନେକ କାଳ ତୁମ୍ଭେ ଥିବ ଏ ମେଦନୀ ।
ତୁମ୍ଭର ସଙ୍ଗରେ ଯେ ହୋଇବ ମେଳ ଭଦ
ଅନେକ ଭାରଯାରେ ତୁମ୍ଭେ ଅନେକ ବଳସିବ ।
ଶମ୍ଭୁ ନିଶମ୍ଭୁ ବୋଇଲେ ତୁମ୍ଭେ ଶୁଣ ଗୋସାମିଣି
ବ୍ରହ୍ମାଙ୍କଇ ରୁହାଇ ପୁଚ୍ଛା କଲୁ ପୁଣି
ଯେବେ ପିତା ଯେବେ ସେ ଦେଲୁ କୋଟି କଲ୍ପ ପଦ
ଜାଣିଥିବୁ ନା ଆମ୍ଭେ କେମନ୍ତେ ହୋଇବୁ ମୃତ୍ୟୁଭେଦ ।
ମା ଗୋ ତୁ କାହାଂ ନକହିବୁ ତୋତେ କହୁଂଛୁଂ ପ୍ରୀତି ଭାବେ
ଏ ଶତ୍ରୁ ଭେଦ ଗୋପ୍ୟ ଥିବ ତୋହୋର ହୃଦେ ।
ଶମ୍ଭୁ ନିଶମ୍ଭୁ ବୋଇଲେ ଗୋ ମ୍ଲେଚ୍ଛର ଶିରରେ ଯେବେ ଆରୋହଣ କରିବ ହସ୍ତ
ତେବେ ସେ ଆମ୍ଭେ ମରିବୁ ସତ୍ୟବ୍ରତ । ୨୦୫୦ ।
ମା ଗୋ ସିଂହଳ ଦ୍ୱୀପରେ ଯେ ଆମ୍ଭର ଚକ୍ରବର୍ତ୍ତୀ
ଆକାଶେଣ ଠାକୁର ଅମର ବୀରସ୍ୱର୍ଗ ।
ଆମ୍ଭ ବାହୁବଳେ ସେ ମହିଷାଂସୁର ରାଜା
ଆମ୍ଭର ପ୍ରସନ୍ନେ ତ୍ରୈଲୋକରେ ପୂଜା ।
ଆମ୍ଭେ ସ୍ୱର୍ଗ ମର୍ତ୍ତ୍ୟ ପାତାଳ କଲୁ ସାଧି
ବରୁଣପୁରେ ପଶି ସାଧିଲୁ ବାରାନିଧି ।
କୁବେର ଭଣ୍ଡାରୁ ଆଣିଲୁ ଜୁର କରି
ବ୍ରହ୍ମା ବିଷ୍ଣୁ ମହେଶ୍ୱର କେହି ନୋହନ୍ତି ସେ ସରି ।
ଯେବେଣ ଇଚ୍ଛା ଗୋ ବସିଲା ତବ ହୃଦେ ଏ
ଆମ୍ଭର ରାଜ୍ୟେ ଗୋ ରହିବ କି ମାଏ
ଦୁର୍ଗା ବୋଇଲେ ହୋ ଅସୁର କୁଳ ଭଲ
କେତେକ ଦମାଇଁ ତୁମ୍ଭେ ମୋତେ ବନ୍ଦୀ କଲ ।
ମହିଷାଂସୁର ରାଜାର ତହିଂକ ଅଇଲି
ତୁମ୍ଭଙ୍କୁ ଦେଖି ମୁ ସମସ୍ତ ପାଶୋରିଲି ।
ବନ୍ଧୁ ବାନ୍ଧବ ମୁ ସମସ୍ତ କଲି ତେଜ୍ୟା
ତୁମ୍ଭର ସେ ଯୁଗଳେ ହୋଇବି ଭାରଯା ।
ଆହୋ ଇଚ୍ଛାମତ ବର ନ ବଳଇ ଧନ ଦ୍ରବ୍ୟେଂ
ନୃତ୍ୟ ଗୀତକୁ ଶ୍ରଦ୍ଧା ମୋର ହାବେ ।
ଆହୋ ଦକ୍ଷ ! ଶୁଣି ଉତ୍ତର ଦିଅନ୍ତି ଶମ୍ଭୁ ନିଶମ୍ଭୁ
ଆମ୍ଭେ ଏକଇଶ ମୂର୍ଚ୍ଛନା ପଞ୍ଚ ତାଳୀ ଜାଣି ଅଛୁ । ୨୦୬୦ ।

ଏ ଗୋ ଭରହ୍ନ ରସ ନାଏକ ଆମ୍ଭେ ତାଣ୍ଡେବ ନୃତ୍ୟକାରୀ
ନୃତ୍ୟ ଗୀତେ ତୋଷିଲୁ ବେଦ ଗୃଷୀ ।
ଦୁର୍ଗା ବୋଇଲେ ତୁମ୍ଭେ ସମସ୍ତ କହୁଅଛ
ଏତେଣ୍ଡେକ ନୃତ୍ୟ କର ମୁ ଦେଖଇ ପ୍ରତକ୍ଷ ।
ମଦନେ ଅସାଷ୍ଟମେ ବୁଡ଼ିଲେ ବେଣ୍ଣ ବୀରେ
ପୂର୍ବ କଥା ପାଶୋରଲେ ସେ କାମ ଅଗୋଚରେ ।
ଏକେ କାମ ସମୋନ୍ତ୍ର ଅଚେତ ତହୁଂ ଦୁଗାର ବନ୍ଦନା
କହୁଂ କହୁଂ ପାଶୋରଲେ ବୁଡ଼ାଇଲେ କାୟା ।
ପ୍ରେତଗଣ ଯାହା କହନ୍ତ ଗୋସାମଣି
ଦୁହିଂଙ୍କ ରୁଚଇ ସେ ଅମୃତ ପାନ ଜାଣି ।
ବିଶେଷେ ବନସ୍ତ ଏକାନ୍ତ ଠାବ ମେଳେ
ନୃତ୍ୟକୁ ଆରମ୍ଭ କଲେ କୁତୁହଳେ ।
ହୁଂକାର ଶବଦେଣ ମଧୁର ସଙ୍ଗୀତ
ଆକ୍ରମଣ ଆରମ୍ଭ ସୁସର ରଙ୍ଗିତା ॥
ତାହାଙ୍କର କଉତୁକ ସୁରଙ୍ଗ ନୃତ୍ୟ ଦେଖି
କରତାଳ ଦେଇଂ ସେ ହସନ୍ତ ଚନ୍ଦ୍ରମୁଖି ।
ଚଞ୍ଚପୁଟ ଗୃଞ୍ଚପୁଟ ଭରହ୍ନ ରସ କଳା
ତାରଣା ଭକ୍ଷଣା ମୁଚ୍ଛନା ସଙ୍ଗୀତ ଶାଳା
ଢୋଆ ମଠା ପଡ଼ିତାଳ ଝୁମ୍ପା ଯେ ପ୍ରବନ୍ଧ
ସୁଗଢ ଆଡ଼ତାଳ ସୁସର ସୁଛନ୍ଦ । ୧୦୭୦ ।
ଶୃଙ୍ଗାର କାରୁଣ୍ୟ ମାନ ତାଳ ଯନ୍ତ୍ର
ନୃତ୍ୟ ଦେଖି କର ହସନ୍ତ ଭାରେଣୀ ଦୁରନ୍ତ ।
ତାହାଙ୍କର ହସନ୍ତେ ଦୁଗୁଣେ ନୃତ୍ୟେ ବାଇଂ
ଯେସନେକେ ମଞ୍ଜଗଜ ନ ମଣଇ ଖାଇ ।
ସୁବେଳେ ଭେଟ ଯେ ପାଇଲ ତୁମ୍ଭନ୍ତ
ଏମନ୍ତ ସୁଧଞ୍ଜ ଯେ ତୁମ୍ଭର ନୃତ୍ୟ ଗୀତ ।
ତୁମ୍ଭେ ସେ ମୋହୋର ପ୍ରାଣ ଅଟ ସଖା
ଗୁଡ଼ିଲ ସକଳ ଆଶା ସର୍ବ କଲ ଉପେକ୍ଷା ।
ଆହ୍ମା ସମସ୍ତ ନୃତ୍ୟ ମୁ ଦେଖିଲି ତୁମ୍ଭର
ଏକର ହସ୍ତ ଦଅ ନେଇଂ ଆରେକ ଶିରର
ଆହ୍ମେ ପରୀକ୍ଷ ପୂର୍ବେ ଯାହା ବ୍ରହ୍ମାବର ଦେଇଂଅଛୁ
କାମଅର୍ଥ ବରହେ ସେ ନ ଜାଣିଲେ କଛୁ ।

ଦୁର୍ଗାର ବଚନ ଶୁଣି ଅପାର ହରଷତ
ଏକର ଶିରେ ଆରେକ ନେଇଂ ଦେଲେ ହସ୍ତ
ଶିରସ୍ତ ରଙ୍ଗ କଉତୁକ କରନ୍ତି କରତାଳି
ମଦନ ଭେବଲେ ସେ କିଛୁ ନ ପାରିଲେ ବାଣ ।
ଅବଶେଷ କାଳ ଯେବେ ହୋଇବାକ ପ୍ରାଣୀ
କର୍ମଣି ଗୃହ ହସ୍ତେକ ମୃତ୍ୟୁଟାବ ନ ଜାଣି ।
ଏଇଟି ଲଙ୍କାରେ ଯେଉଂ ବୀରଙ୍କୁ ନାହିଂ ମୃତ୍ୟୁ
କାମ ଲୁବ୍ଧ ଷୀରେ ବୁଡାଇଲେ ହେତୁ । ୨୮୦ ।

ଶୁମ୍ଭ ନିଶୁମ୍ଭ ଯେ ଦାନବ ବଧ ଦେଖି
ତେତିଶ କୋଟି ଦେବତାଏ ଅଇଲେ ଗଗନ ଉପେକ୍ଷି ।
ନିଶ୍ୱାସ ଫନ୍ଦିଲ ଗୋ ଦଶିଲ ସ୍ୱର୍ଗବାଟ
ନିଶ୍ଚିନ୍ତେ ବସିବୁ ଯେ ଯାହାର ରାଜ୍ୟ ।
ମାତା ଗୋ ତୋହୋର ପ୍ରସନ୍ନେ ପାଇଲୁ ଆମ୍ଭେ ଗତି
ତୁହି ସେ ତିନ ଭୁବନର ଫେଡ଼ିବୁ ଦୁର୍ଗତି ।
ମହିଷାସୁର ସାର୍ଥକ୍ୟ ଯେ ଚଣ୍ଡ ମୁଣ୍ଡ ଶୁମ୍ଭ ନିଶୁମ୍ଭ
ଏ ସେ ବ୍ରହ୍ମା ବର ଦେଇ ନାଶ କଲେ ସବୁ ।
ଶୁମ୍ଭ ନିଶୁମ୍ଭ ବଧ୍ୟ ଶୁଣି ସମସ୍ତ ଲୋକ
ଅନେକ ସାନନ୍ଦ ହୋଇ ଫିଟିଲା ସର୍ବ ଦୁଃଖ ।
ଦେବତାଙ୍କର ଆପଦ ଯେ ଖଣ୍ଡିଲେ ଉପାଏ
ସବୁଙ୍କର ଆପଦ ଖଣ୍ଡସି ମହାମାଏ ।
ଦୁର୍ଗା ଲକ୍ଷ୍ମୀ କର ନରେ ହୃଦେ ଥାଅ ଭାବ
ଯାବତ କଳୁଷ ଏ ଖଣ୍ଡୁ ମହାଦେବୀ ।
ଶ୍ରୀ ଦୁର୍ଗାର ଚରଣେ ଶରଣ ପଶ ନିତ୍ୟ
ମନ ବଚନ କର୍ତ୍ତବ୍ୟ ବୁଝ ପଞ୍ଚଭୂତେ ।
ସହସ୍ରେକ କରେ ଯେ ସହସ୍ରେକ ଆୟୁଧ ଧରି
ଜଗତ ଜନ ନିବେଶି ଦୁଷ୍ଟ ନିବାରି
ଯାହାର ନାମ ସଙ୍କେତେ ଖଣ୍ଡଇ ଯମଦଣ୍ଡ
ଯାହାର ନାମ ସଙ୍କେତେ ବନ୍ଧ ହୋଏ ଛିଣ୍ଡ । ୨୯୦ ।
ଯାହାର ନାମ ସଙ୍କେତେ ଅରିଷ୍ଟ ହୋଏ ଶାନ୍ତ
ଯାହାର ନାମ ସଙ୍କେତେ ଫିଟଇ ଦୁର୍ଗତି ।
ଯାହାର ନାମ ସଙ୍କେତେ ନ ପଶଇ ଦୁରାରୋଗ୍ୟ ବ୍ୟାଧି
ଯାହାର ନାମ ସଙ୍କେତେ ନଷ୍ଟଇ ନାନା ବୁଦ୍ଧି ।

ଯାହାର ନାମ ସଙ୍କେତନେ ଆଇଷ୍ୟ ହୋଏ ଚିଖ୍ୟାତ
ଯାହାର ନାମ ସଙ୍କେତଣେ ଲକ୍ଷ୍ମୀ ହୋଏ ପ୍ରାପତ ।
ଯାହାର ନାମ ସଙ୍କେତନେ ଅପୁର୍ବିକ ପୁତରୁ ପାର ଯାଇ ।
ସ୍ଥାନ ମୋକ୍ଷ ଗଢ ବିପୁଳ ଭୋଗ ପାଇ ।
ଆହୋ ବିପତ୍ତି କାଳେ ଯାହାର ବେଲ ନ ହୁଟଇ
ଯେବଣ ଦେବୀଙ୍କ ସୁମରିବା ମାତ୍ରକେ ଫାଶ ବନ୍ଧନ ଫିଟଇ ।
ମୁନି ଜନମାନେ ଅଭ୍ୟାସ କରନ୍ତି ଯାହା
ହେ ପଣ୍ଡିତ ଜନମାନେ ଦୁର୍ଗା ଯେ ବନ୍ଦିଅନ୍ତି ତାହା ।
ଶୁଣନ୍ତେ ଗୁଣନ୍ତେଣ ଘୋଷନ୍ତେଣ ପ୍ରସନ୍ନ ହୋଅନ୍ତି
ସେ ମହାମାୟାଙ୍କୁ ଯେହୁ ହୃଦରେ ଘୋଷନ୍ତି ।
ଶ୍ରୀ ଭାଗବତ ସାର ଏ ଯେ ବିଷ୍ଣୁ ପୁରାଣେ
ସଂସାର ଜନଙ୍କୁ ମୁ କରି ବାଟ ଯେଣେ ।
ଶ୍ରୀ ଦୁର୍ଗାଙ୍କ ଚରଣେ ଶତଦଣ୍ଡ ପ୍ରଣିପତ୍ୟ ନିତ୍ୟେ
ବଦନ୍ତି ସାରଳା ଦାସ ପ୍ରଣିପତ୍ୟ ସଂସାର ଜନଙ୍କର ହିତେ ।

—o—

## ଚାମର ବେମାଳ ବଧ

**ଶୁଣ ହୋ ପରୀକ୍ଷ** ବଦନ୍ତି ଶୁକ ବ୍ରହ୍ମା
ଶ୍ରୀ ଦୁର୍ଗାଙ୍କ ଚରିତ ହାଡ଼େ ଏସନେକ ମହିମା । ୨୧୦୦ ।
ତ୍ରୈଲୋକ୍ୟ ଯେବଣ ଶୁମ୍ଭ ନିଶୁମ୍ଭ ସାଧି
ସେ ନାଶ ଗଲେ ଯେ ସ୍ଥିତି ରହୁ ବୁଦ୍ଧି ।
ହେ ପଣ୍ଡିତ ଜନେ ବିଚାର କର ହୃଦେ
ଚିର ଆୟୁଷ୍ୟ କ୍ଷୟ ଯାଇଟି ପର ମୃତ୍ତିକା ଲୁବ୍ଧେ ।
ଏହା ଶୁଣି ପୁଚ୍ଛାକଲା ପରୀକ୍ଷ ନୃପତି
ଏ କାଳ ବିଧାତୁ ମୁ ପାଇବି ମୁକ୍ତି ଗତି ।
ମୁନି ହେ ଚଣ୍ଡ ମୁଣ୍ଡ ଶୁମ୍ଭ ନିଶୁମ୍ଭ ବଧ୍ୟ ଶୁଣି
ଶୁଣି କିସ କଲା ସେ ମହିଷାସୁର ନୃପମଣି
ବଦନ୍ତି ଶୁକ ମୁନି ଶୁଣ ହେ ପରୀକ୍ଷି
ଅଭିସାରିକା ହୋଇ ମହିଷାସୁର ବସିଅଛି ।
ଯାଇଂଣ ଅଛନ୍ତି ବାଟେ ଆଣିବେ ଯୁବତୀ
ମୋହର ମନ ଇଚ୍ଛାଏ କରିବ ସୁରତ ।

ଯାହାର ଦ୍ୱାର ପ୍ରବାଳ ଜଗତି ଉପରେ
ଯେଥ ଉପନେସଇ ସେ ମଏଷାଂସୁର ଦ୍ୱାରେ ।
କାଳି ନକାଳ ବୋଲି ସେ ବେନି ସେନାପତି
କିହ୍ଂଗିଣ ପଣ୍ଡିତ ସେ ଅଛିଲେ ସେହ୍ନ ଘାଣ୍ଡ ।
ଯେ ଯାଇ ପ୍ରବେଶ ହୋଇଲେ ମଏଂଷାସୁର ଛାଟେ
ସ୍ୱାମି ! ଏଡ଼େ ସମ୍ପଦ ରୁଡ଼ାଇଲୁ ସ୍ତିରି ଲୀଗ ଅଙ୍କେ
ସ୍ୱାମି ! ପ୍ରଥମେ ଗଲେ ରାକ୍ଷସ ବଳ ଦଣ୍ଡ
ଯାଠଯାକ ଯେନ ଗଲେ ଚଣ୍ଡ ମୁଣ୍ଡ । ୬୧୦ ।
ନୃତ୍ୟ ଗୀତ କରି ନାଶ ଗଲେ ଶମ୍ଭୁ ନିଶମ୍ଭୁ
ଏବ୍ରହ୍ମମନ୍ତ୍ର ନାଶ ଗଲେ ବଳ ତୋର ସବୁ ।
ଉଗର ମୁଖରୁ ଏମନେକ ବଚନ ଶୁଣି
ଯନ୍ତ୍ରୀଭୂତ ହୋଇକରି ବସିଲା ନୃପମଣି ।
ରେ ରେ କାଳି ବିକଳ କହିଲ କେମନ୍ତ
ଭୃତ୍ୟର ବଚନରେ ନ କଲଇଂ ମୁଁ ସତ ।
ଦେବଙ୍କୁ ଅଗୋଚର ଯାହାର ବଳ ବୀର୍ଯ୍ୟ
ମାନବ ଜନ୍ମେକେ ତାଙ୍କୁ କରିବ ପ୍ରାଣ ତେଜ୍ୟ ।
ସ୍ୱାମି ! ଅଦଭୂତ ସ୍ତିରି ସେ ଅଟଇ ରାକ୍ଷସୀ
ବିଶ୍ୱାସ କର୍ଣ୍ଣରେ ସେ ତୋର ସନ୍ୟ ବଳ ନାଶି ।
ଶୁଣି ବିଷାଦ ସେ ମଏଷାଂସୁର ମହୀପାଳ
ନଧୀରେ ହକାରିଲା ତାର ସମର ସେନାଳ ।
ଆରେ ସହସ୍ରେକ ଯୋଧ୍ୟା ଯେନ ଯାଅ ଏବ୍ରହ୍ମକ୍ଷଣୀ
ଚଣ୍ଡ ମୁଣ୍ଡ ଶମ୍ଭୁ ନିଶମ୍ଭୁଙ୍କ କଥା ତଥ୍ୟ କର ଜାଣି ।
କେମନ୍ତ ଯୁବତୀ ତାର ଚରିତ୍ର କେମନ୍ତ
ଅଛଇ କି ଏମନ୍ତ ଶକ୍ତ ଯେ ଆଗତ ।
ମର୍ତ୍ତ୍ୟ ଯୁଗ ତ ଶେଷ କଲି ମୋହୋର ବାହୁ ବଳେ
ଏବ୍ରହ୍ମତ୍ତ୍ୱିକ ଦୁର୍ଗପଦ ତ ନାହିଂ କେହୁଣିସି କାଳେ ।
ଶ୍ରୀ ହସ୍ତେ ରାଜା ସେ ଆପଣେ ଦେଲେ ଶାଢ଼ୀ
କେମନ୍ତ ନାରୀଗଣ ସେ ଆଣ ବାଲ ଧରି । ୬୨୦ ।
ରାଜାର ଆଜ୍ଞା ପାଇଁ ସମର ସେନାଳ
ରଥ ଗଜ ପାଦାନ୍ତ ନବ ମଭୂତ ବଳ ।
ଚଳନ୍ତି ବଳ ପ୍ରତାପ ମଏଷାଂସୁର ସେନାପତି
ଆକାଶ କମ୍ପଇଂ ହେଲ ଯେନଇ ବସୁମତୀ

ଲୋକଙ୍କୁ ଚଇ କର ଆରେକ ହୁଅନ୍ତୁ ଥାଗେ
ସ୍ୱର ଉଦ୍ୟାନ ବନେ ପଶିଲେ ଯାଇଂ ବେଗେ ।
ଅନେକ ଗିର ତରୁ ନଦୀ ଣ ବନ ବଢ଼
ଅନ୍ତେ ଲଭେ ଶ୍ରୀବିନ୍ଧ୍ୟ ପର୍ବତ ଯାଇଂ ବେଢ଼ି ।
ସେ ବିନ୍ଧ୍ୟଗିରି ଶିଖରେ ବଳେକର ବସିଅଛନ୍ତି ଶ୍ରୀ ଦୁର୍ଗେ
ଚମର ବେମାଳ ଦୁହେଂ ଯାଇଂ ହେଲେ ବେଗେ ।
ଚନ୍ଦ୍ରବଦନୀ ହୋଇଂ ଦେବୀର ମାନେ ଅବସ୍ଥା
ତାଳିକାଡ଼ି ଦୃଷ୍ଟି କରି ସେ ନ ଟେକଇ ମଥା ।
ଚମର ବେମାଳ ଦୁର୍ଗାଙ୍କୁ ପଚାରେ
କେଉଁଣ ଦେଶରୁ ରେ ଅଇଲୁ ରେ ନାରୀ
ଚଣ୍ଡ ମୁଣ୍ଡ ଶୁମ୍ଭ ନିଶୁମ୍ଭ ଯେ ଅଇଲେ
ସେ ତ ଅମ୍ଭ ପୁରକୁ ବାହୁଡ଼ି ଯେ ନ ଗଲେ ।
ଦୁର୍ଗା ବୋଇଲେ ହୋ ଅଛ ଉତକର୍ମେ
ବହୁତ କାଳଯାଏ କି ଥୋଅନ୍ତି ଦେବ ଧର୍ମେ
ଅହୋ ସଂସାର ଯାକ ସେ ଅଦଭୁତେ ରଞ୍ଜନା
ପାପ ପୁଣ୍ୟ ଯାହା କରଇ ସେହି ରହଇ ସିନା । ।୨୯୩୦ ।
ଯେତେ ଆସିଥିଲେ ତାହାଂଙ୍କ ବୋଲି ଗଲେ
ଜଳ ବମ୍ବୁପ୍ରାଏକ ମଧ୍ୟେଂ ରୂପ ଦେଖାଇଲେ ।
କେ ଏଥେଂ ଅମର ହୋଇବାକ ଜନ
ତୁମ୍ଭେହେଂ ଆଜ କାଲି ହୋଇବ ନିଧନ ।
ବୋଇଲ ଯେ ମହିଷାସୁରକୁ ବ୍ରହ୍ମା ଦେଲେ ବର
ସେ ବ୍ରହ୍ମା ଏଥେଂ ହୋଇବ କି ଅମର ।
ଚମର ବେମାଳ କହିଲେ ନ କହନ୍ତ ବାଣୀ
ମହିଷାସୁର ରଜାର ହୋଇବୁ କି ଘରଣୀ ।
ଏବେହେଂ ଆସ ତୋତେ ପୁରୁଷାର୍ଥ କର ନେମା
ଯେଣ ଦୋଷ ଅପରାଧ କରିବେ ତୋର କ୍ଷେମା ।
ଅଥବା ରଜାକୁ ଯେବେ ନାହିଁ ତୋର ଚିତ୍ତ
ଆମ୍ଭର ଭାରିଯା ହୋଇବୁ କି ସଘାଂତ ।
ଆହୋ ମୁ ଯେ ବିମ୍ବ ରାଜାକୁ ବେଳହୁଂ କରଇଂ ଇଚ୍ଛା
ତାହା ବିନୁ ଆନେ ମୋର ନ ବଳଇ ମନ ବାଞ୍ଛା
ଆହୋ ଅମ୍ଭର ଅଛନ୍ତି ଯେ ଦୋହିତା ବେନି ଗୋଟି
ସେ ଯେ ତୁମ୍ଭର ରୂପରୂପେ ଦୁଲଭ ଭେଟି ।

ଆଗୋ ଗ୍ରୁମ୍ଭା ମାମ୍ଭା ବେନି ବାଳୀ
ତୁମ୍ଭେ ତୁଟିଲେ ବର ପାଇଲି ମନର ଭୁଆଳି ।
ଦୁର୍ଗାର ବଚନେ ଯେ ବାହାର ବେନି ସତୀ
ଅଦଭୁତେ ବିକାଶିଲେ ସେ ବେନି ଯୁବତୀ । ୨୧୪୦ ।

ତ୍ରଇଲୋକ୍ୟ ମୋହୋନୀ ସେ କାମେଣ କାମାକ୍ଷୀ
ଦେଖିଣ ଗ୍ରୃମର ବେମାଳଙ୍କର ନ ଫୁରଇ କାନ୍ତି ।
ଅନେକ ଅଳଙ୍କାର ଅଗେଂଣ ଆଭରଣ
ନାନା ବର୍ଣ୍ଣେ କୁସୁମେ ଖୋପା ପରିହରଣ ।
କାମେନୀ କାମବନ୍ତୀ ହୋଇଛନ୍ତି ଗୋପ୍ୟ
ବେଶ ସ୍ଥାନେ ସଂସାର ମୋହି ପାରନ୍ତି ସରୂପ ।
ଦୁର୍ଗା ବୋଇଲେ ହୋ ଗ୍ରୃମର ବେମାଳ
ଏ ମୋହୋର ଦୋହିତାଙ୍କୁ ତୁମ୍ଭେ ଯନ୍ତ୍ରେ କର ପ୍ରତିପାଳି ।
ଶୁଣିଣ ସାନନ୍ଦ ହୋଇଲେ ବୀର ବେନି
ଗ୍ରୃମର ବେମାଳ ଗଲେ ଗ୍ରୁମ୍ଭା ମାମ୍ଭାଙ୍କୁ ଘେନି ।
ଲକ୍ଷ୍ମୀ ଭଦ୍ରା ନଦୀ କୂଳେ ଅଛନ୍ତି ଥାଠ
ନାମ ଗିରି ଜାଣି ସେ ରହିଲେ ପାପିଷ୍ଟ ।
ଅନେକ ସାନନ୍ଦ ସେ ହୋଇଣ ମହାଭେଳେ
ଲାଗିଲେ ମଦିରାପାନେ ରଙ୍ଗ କୁତୋହୋଳେ ।
ନାନା କଉତୁକେ ସେ ମତ୍ତ ରସ ରଙ୍ଗେ ଖେଳେ
ଅନେକ ପରିହାସ ମଦନ ରସ ଖେଳେ ।
ସ୍ୱାନ କାଳେ ଯେ ଶୋଇଲେ ସର୍ବ ସଇନି
ବେନି କୁମାରୀ କି ଗ୍ରୃମର ବେମାଳ ଗଲେ ଘେନି ।
କାଦେମ୍ବିନୀ ଘାନେ ଦର୍ତ୍ୟଙ୍କ ଦେହ ଅସାଷ୍ଟାମ ବେଳେ
ରଥ ଆଣି ଦେଖାଇଂ ସେ ମାତ୍ତି ବସିଲେ ବକ ଛଳେ । ୨୧୫୦

ଆରେ ପ୍ରାଣ ବଲ୍ଲଭୀ କୋଳାଗ୍ରତ କର ଆମ୍ଭଙ୍କୁ
ଲହେ କିଦାରିଲେ ଯେ ତହାଙ୍କର ବୁକୁ ।
ମଦିରା ପାନେ ଯେ ପଡ଼ି ଅଛନ୍ତି ଦୁରାପାତେ
କିଛୁ ହିଂ ନୁହନ୍ତି ସେ ନୁଆରିଲେ ଦଇତେ ।
ଗ୍ରୃମର ବେମାଳ ବଧ କରି ସେ ମାଇଲେ ସଇନ
କାଳ ବିକାଳ ଦୁହେଂ ପଳାଇଲେ ମିଶି ବେନି ।
ବ୍ରହ୍ମାଣ୍ଡ କମ୍ପିଲା ସେ ଦେବାଙ୍କର ରଡ଼ି
ଅସୁର ବଳ ମାରି ସେ ରକ୍ତ ପାନେ ଖେଳନ୍ତି ।

କାଳି ବିକାଳି ଦୁହେଁ ପଳାଇଲେ ବେଗେ
ଯାଇଁ ଜଣାଇଲେ ମହିଷାସୁରର ଆଗେ ।

## କାଳ୍ପମାଳା, ବିଡ଼ାଳାକ୍ଷ, ରକ୍ତବୀଜ, ବୀରଘଣ୍ଟ ଏବଂ କାଳଦଣ୍ଡ ପ୍ରଭୃତିର ଯୁଦ୍ଧ ଓ ମୃତ୍ୟୁ

ଶୁଣ ଦେବ ଅବଧାର ଭ୍ରମର ବେମାଳଙ୍କର କଥା
ଦଣ୍ଡ ଦେଇ ଗଲେ ଶୁମ୍ଭର ବେନି ସାମରଥା ।
ଦେଖିଲୁ ଯୁବତୀ ବସିଅଛୁ ଏକସରେ
ଭ୍ରମର ବେମାଳ ଯାଇ କହିଲେ ବଚନ ମଧୁରେ ।
ତାହାଙ୍କର ରୂପ ଦେଖି ମୋହିତ ବେନି ଭାଇ
ବୋଇଲେ ଅସୁର ଭାରଯା ହୋଇବୁ କି ଗୋ ଆଇ ।
ବୋଇଲା ମହିଷାସୁରର ବଳବାର୍ତ୍ତା ଶୁଣି
ମୁହିଁ ଆସିଅଛୁ ତାର ହୋଇବି ଘରଣୀ ।
ସ୍ୱାମୀଙ୍କର ଭଗିନୀ ଶୁମ୍ଭର ଗୁରୁ ପତ୍ନୀ
ମହାଗୁରୁ ହର ଲୋଡ଼ି ଏତେକ ଅଗ୍ୟାନୀ । ୨୧୬୦ ।
ଶୁଣିଲେ ଏହିମନ୍ତ ସେ ଧର୍ମ ଲଙ୍ଘିଲେ
ଏଥିର ପାପେ ଶୁମ୍ଭ ନିଶୁମ୍ଭ ଚଣ୍ଡ ମୁଣ୍ଡ ମଲେ ।
ଦୋହିତା ବେନି ଗୋଟି ଯେ ଥିଲେ ତାହାର କୂଳେ
ଭ୍ରମର ବେମାଳନ୍ତ ସେ ବେନି କନ୍ୟା ଦେଲେ ।
ସେ ଦୁହିଁଙ୍କି ଘେନି ଦେବ ଅଇଲେ ବେନି ବାରେ
ନଗ୍ନାଙ୍ଗେ ପକାଇଲେ ନାମ ଗିରି ପର୍ବତ ଉପରେ ।
ସ୍ୱାମି ! ପ୍ରଭାତେ ଦେଖିଲୁ ଭ୍ରମର ବେମାଳଙ୍କୁ
ଉତ୍ଥାନଶକ୍ତି ହୋଇଁ ପଡ଼ିଛନ୍ତି ବିଦାରିଛନ୍ତି ବୁକୁ ।
ସ୍ୱାମି ! ପଞ୍ଚ ଯୋଜନ ମାଡ଼ି ଯେ ରହିଥିଲେ ବଳ
ସବୁଙ୍କର ଛେଦିଲା ଦେବ ଅଛୁ ବଳ ସ୍ଥଳ ।
ସ୍ୱାମି ! ରଥ ଗଜ ପାଦାନ୍ତ ଅନେକ ସଇନ
ଜଣେକଇ ନ ରହିଲେ ଦେହ ଘେନ ।
ଆହୋ ପକ୍ଷୀ ସେନାଙ୍କର ଯହୁଁ ବିଯୋଗ ଶୁଣି ନାଶା
ନିର୍ଘାତ ପ୍ରାଏକ ପଡ଼ିଲା ମହିଷା ।
ଆରେ ମୋହୋର ପ୍ରାଣର ସାଙ୍ଗା
ମମ କାର୍ଯ୍ୟେ ପେଷିଲି ମୁଁ ହୋଇଲି ନିରେଖା ।

ବ୍ରହ୍ମାଣ୍ଡ ସାଧ୍ୟ କଲି ଯାହାର ବୃଦ୍ଧି ବଳେ
ଜନ୍ମିତେ ନାଶ ଗଲେ ମୋହୋର କର୍ମର ଅବଳେ ।
ସଙ୍ଗରେ ମନ୍ତ୍ର ଲୋଟଇ ମହିଷାସୁର ଘାଏ
ସାଷ୍ଟାମ ହୋଇ ଉଠିଲା କାଳ ସର୍ପ ପ୍ରାଏ । ୨୧୬୦ ।
ଅଦଭୁତ ପ୍ରମାଣ ଶୁଣି ସମସ୍ତ ସେନାପତି
ସଭିଏ ରୁଣ୍ଡ ହୋଇଲେ ମହିଷାସୁରର କତି ।
ରକ୍ତବୀର୍ଯ୍ୟ ବୀରଘଣ୍ଟ କାନ୍ତମାଳା ବିଡ଼ାଳାକ୍ଷ
ସଖା ସୋଦର ହୋଇଣ ତୁମ୍ଭେ ମାନ ଅଛ ।
ତୁମ୍ଭେ ତହୁଁଜ୍ଞ ତ ଯାଅ ଦଣ୍ଡ ଚଳି
ସେ ମୋହୀ ନାଗେନ୍ଦ୍ରକ ଆଣ ବାଳ ଧରି ।
କନ୍ୟା ରୂପ ଧରି ଗିରି ଶିଖରେ ଥାଇ ବସି
ବଶ୍ୱାସ କୃଟରେଣ ସଖାନ୍ତ ମୋର ନାଶି ।
ଆରେ ଭୂମିରେ ପାଦ ନ ପଡିବ ବହନ ଘେନ ଆସ
ତିଳ ପ୍ରମାଣେ କରି କାଟିବ ତାର ମାଂସ ।
ସେହି ରକତ ମିଶାଇ ତାହା ଭୁଞ୍ଜି
ପୁଣି ବେଗେଣ ସେ ଛଡ଼ଇ ଗଜଗାଜ ।
ରକ୍ତବୀର୍ଯ୍ୟ ବୋଇଲା ଦେବ ଏ ଭଲ ଆସଇ
ତୋହୋର ବୋଲ ଶୁଣି ମୋହୋର ଶରୀର ରୁମାଞ୍ଚଇ
ସ୍ୱାମି ! ଆମ୍ଭେ ଗୁରହେଂ ଅଟୁଂ ତୁମ୍ଭର ସେନାହା
ଦେବେ ଦାନବେ ଆମ୍ଭେ ନ ଯାଉ ଗଣନା ।
ଆମ୍ଭେ କାହ୍ନଂକ ହାକବୁ ଯେ ଦଣ୍ଡ
ଯାହାର ଗୁଳନ୍ତେ କମ୍ପଇ ବ୍ରହ୍ମାଣ୍ଡ ।
ଇନ୍ଦ୍ର ଈଶ୍ୱରଙ୍କ ଆମ୍ଭର ଯେ ଧାଡ଼ି
ସେ ଗୁରୁ ପାମ୍ଭେଙ୍କ ଅଟଇ ଦେଶାନ୍ତରୀ । ୨୧ ।
ମାରନ୍ତେଣ ସ୍ତ୍ରୀ ହତ୍ୟା ଜାବନ୍ତେ ନାହିଂ ଯଶ
ତୁ ସର୍ବଗ୍ୟଂ ନାଥ ବସୁର ଏ ଭରସ ।
ତାହା ଶୁଣିଣ ସେ କାଳ ଯେ ବିକାଳ
ସ୍ତ୍ରୀ ଲୀଙ୍ଗ ବୋଲି ତୁମ୍ଭେ ନକର ଯେ ହେଳ ।
ଚଂଡ ମୁଂଡ଼ ଜଣି ମାକୁ ହୋଇଲେ ସାମରଥା
କ୍ରୁଟେଣ ପାଞ୍ଚିଲେ ସେ ଶମ୍ଭୁ ନିଶମ୍ଭୁ ମହାରଥା ।
ଆହେ ତଇଲୋକ୍ୟେଣ ଅଛୁ ଏ ଗୁମର ବେମାଳ
ତାହାକୁ ସେ ବିଦାରଣ କଲସେ ବକ୍ଷସ୍ଥଳେ ।

ହିରଣ୍ୟ ବଦାରବଣ ଯୋଜନ ନରସିଂହ
ତାହାକୁ କେମନ୍ତେ ତୁମ୍ଭେ ବୋଇଲ ତ୍ରିଷ୍ଣି ଲିଙ୍ଗ ।
ମାନସୀ ଅବସ୍ଥା ମୋହୋନୀ କାମସେଣା
ଭଣ ନଗାଳ ଧନ୍ୱୋଳ ଯେ ଜଗତ ଜଗଜନା ।
ତ୍ରିଶୀ ଲିଙ୍ଗ ବୋଲି ହୋ ତୁମ୍ଭେ ତାହାକୁ ନ ବୋଲି
ଯେତେ ପାର ତୁମ୍ଭେ ଦଣ୍ଡ ଘେନି ଚଳ ।
କାନ୍ତମାଳା ବୋଇଲା ତାହା ସ୍ତୁରକୁ କସ ଶଙ୍କା
ଏହ୍ୱକ୍ଷଣି ଘେନ ଆସିବ ନାଏକା ।
ଏତେ ବୋଲି ଲୁହାର ମୁଦୁଗର ବୁଲାଇଂ
ଆସ୍ଥାନ ଉପରୁ ସେ ପଡ଼ିଲେକ ଡେଇଂ ।
ଆହୋ ପକ୍ଷୀକ୍ଷ ! କାନ୍ତମାଳା ଡେଇଂ ପଡ଼ନ୍ତେ ବାହାର ରକ୍ତବର୍ଣ୍ଣି
ବୀରଘଣ୍ଟ ବିଡ଼ୁଲାକ୍ଷ ବୀର ହୋଇଲେକ ସଜ । ୧୯୦ ।
ରକ୍ତବୀର୍ଯ୍ୟ ତୁଲେ ସେ ବାର ମର୍ଭୂତ ସେନା
ସମସ୍ତେ ବାହାର ହୋଇଲେ ଏକାବେଳକେ ସିନା
ତାହାର ରକ୍ତବୀର୍ଯ୍ୟ ଉଭର ମୂରତ
କାନ୍ତମାଳା ତୁଲେ ଅଠର ମର୍ଭୂତ ସେନାପତି ।
ଛତିଶି ମର୍ଭୂତ ଯୋଧ୍ୟା ପାଞ୍ଚ ମର୍ଭୂତ ପାଦାନ୍ତ
ଦଣ୍ଡ ଚଳାବନ୍ତେ ଯେ କମ୍ପିଲା ବସୁମତୀ ।
ବିଡ଼ୁଲାକ୍ଷର ତୁଲେଂ ସେନା କୋଟିଏ ମର୍ଭୂତି
ବୀର ଅସୁରଏ ଗୁଳିଗି ଅନ୍ଧବ୍ରତ ।
ସତୁରି ମର୍ଭୂତ ସେନା ପାଦାନ୍ତ ବଳ ତଳେ
କାମରୂପୀ ଅସୁର ସେ ବ୍ରହ୍ମାଣ୍ଡ ଢୋଟିଲେ ।
ବୀରଘଣ୍ଟର ତୁଲେ ସେନା ବାଉଣି ମର୍ଭୂତ
ହାମଳା ଅଖଳା ଷାଠିଏ ମର୍ଭୂତ ।
ଅଶୀ ମର୍ଭୂତ ପାଦାନ୍ତ କାନ୍ତମାଳାର ତୁଲେ
ଧାମନ୍ତେ ପୃଥିବୀ ଯେ ହେଲ ଦେନଇଟି ଓରେ ।
ଚଳନ୍ତେ ସୂର ବୀରେ ନଦାର୍ଗ ବଳ ଘେନ
ଦେବତାଏ ନାସିଲେ ଭଏ ପଦ୍ମଯୋନୀ ।
ପଣ୍ଡତେଜକ ରଥ ଥାଉଂ ପଡ଼ିଲେକ ଅସୁରଙ୍କର ଧାଡ଼ି
ଅଚମ୍ଭିତେ ଯାଇଂ ବେଢ଼ିଲେ ରତ୍ନଗିରି । ୨୦୦ ।
ଧର ଧର ମାର ମାର ପଡ଼ୁଅଛି ବୋବ
ଗିରିବରର ଉପରେ ଥାଇଂ ସେ ଦେଖୁଛନ୍ତି ଦେବୀ ।

ସିଂହରଡ଼ି ଦେଇଂ ଦାନେବ କହନ୍ତି ବଚନ
ତାହାଂ ପଶିବ ଟେ ଯେ କରନ୍ତୁ ଲଣ୍ଡଭଣ୍ଡ ।
ଲଲାଟରୁ ଦେବୀଙ୍କର ଗଳଇ ଯେ ମହାଘର୍ମ
ଲଲାଟରୁ ଦେବୀ ପୋଛି ପକାଇଲେ ଘର୍ମ ।
ଆହେ। ପରୀକ୍ଷ ରାଜା! ଦୁର୍ଗା ଝାଳ ଯେ ପଡ଼ିଲା ଧରଣୀ
ପ୍ରଥମହିଂ ସମ୍ଭୂତ ତହିଂ ହୋଇଲେ ନାରାୟଣୀ ।
ନୀଳେନ୍ଦ୍ରୀବର ତନୁ ଚନ୍ଦ୍ରମୁଖ ପଙ୍କଜ
ଶଙ୍ଖ ଚକ୍ର ଗଦା ପଦ୍ମ ଧାରନ୍ତି ଚତୁର୍ଭୁଜ ।
କିରୀଟି କୁଣ୍ଡଳ କଣ୍ଠେ ବିରାଜନ୍ତି ମାଳା
ନାରାୟଣୀ ନାମ ତେଜ ପ୍ରସନ୍ନ ମତଭୋଳା ।
ହୁଂକାର ଶବଦେ କଲେ ଘୋର ବିକରାଳ
ହୁଙ୍କାରୁ ଜାତ ହୋଇଲେକ ବାଶେଲୀ ।
ପାଦେକ ମର୍ତ୍ତ୍ୟେଣ ଆର ପାଦ ଗଗନରେ ଖେପେ
ମୁକୁଳିତ କେଶ ଲୋହିତ ବର୍ଣ୍ଣ ଅଭଏ କାମରୂପୀ ।
ନବ ନାଗି କୋନ୍ତ ଦକ୍ଷିଣ ଭୁଜର
ବାମ ଭାଗେ ଶୋଭି ଯେ ରୁଧିର ଖପର ।
ନୟନ କଟାକ୍ଷି ଯେ ଚାହିଂଲେ ମହାଦେବୀ
ନୟନରୁ ଜାତ ଯେ ହୋଇଲେ ମହା ଭଇରବୀ ।୨।୧୦
ଏକ ଚରଣ ମୁକଳ କେଶ ଚତୁର୍ଭୁଜ
ତ୍ରିଶୂଳ ଡମ୍ବରୁ ଖଟ୍ୱାଙ୍ଗ ଧନୁ ମହାତେଜ ।
ଶୁକ୍ଳାମ୍ବର ତେଜ ଶରୀର ଶୁଭ୍ର ସ୍ଫଟିକର କାଏ
ମହା ଭଇରବୀ ଯେ ଈଶ୍ୱର ତେଜ ପ୍ରାଏ ।
ଘନ ଘନ ନିଶ୍ୱାସ ଯେ ଛାଡ଼ଇ ଗୋସାମଣି
ନାସିକାରୁ ବାହାର ଯେ ହୋଇଲେ ବ୍ରହ୍ମାଣୀ ।
କୁଙ୍କୁମ ବର୍ଣ୍ଣ ଅଷ୍ଟଭୁଜ ଚୂରଶିର
ବଦନ ଚରଣ ଅଷ୍ଟଭୁଜ ଅଟଇ ତାହାର ।
ଶ୍ରୀ କରେ ଅଜଙ୍ଗମ ଧନୁ ବ୍ରହ୍ମ ଦଣ୍ଡ
ବ୍ରହ୍ମ ଜପାମାଳ ବେନି କରେ ଖପର କାଣ୍ଡ ।
ଊର୍ଦ୍ଧ୍ୱବାହୁ କରି ଯେ ଉଚଂସ୍ୱରେ ବାଣୀ
ଖଣ୍ଡା ମୁଣ୍ଡରୁ ଜାତ ହୋଇଲେ ଇନ୍ଦ୍ରାଏଣୀ ।
ସୁସଜ୍ଜ ଶରୀର ଅନର୍ଘ ମଣି ମୁକୁଟ
ବଇଜୟନ୍ତୀ ମାଳା ବିରାଜଇ କଣ୍ଠ ତଟ ।

ତିନ ଶୀର ଦଶ ଭୁଜ ନି ଅପାଦ କାପାଳୀ
ଜଟରୁ ଜାତ ସେ ହୋଇଲେ ଭଦ୍ରକାଳୀ । ୧
ନେତ୍ରାର ବାହୁ ଯେ ତେଜ ମହାବଳ
ନାଭିରୁ ଜାତ ସେ ହୋଇଲେ ଉଗ୍ରତାର ।
ପାଦ ଗଢ କରି ଦେବୀ ତାଡ଼ିଲେ ଧରଣୀ
ଶବ୍ଦୁଂ ଜାତ ହୋଇଲେ ଦେବୀ ତାରଣୀ ।
ଏକ ପାଦ ଚତୁର୍ଭୁଜ ଚତୁଶିର ତାହାଙ୍କର
ବିକଟ ପଦ୍ମ ସତେଜ ମହା ଯାତନ ଅଙ୍ଗର ।
ସିଂହବାହାନ ମହାକ୍ଷିନ ଅଷ୍ଟଭୁଜ
ସହସ୍ରା ଶର ଅଗ୍ନି ଶର ତେଜ ।
ଶୁଣ ହେ ପକ୍ଷୀ ବଦନ୍ତି ଶୁକ ମୁନି
ଏକ ଶ୍ୱାସରୁ ଜାତ ହୋଇଲେ ଚଉଷଠି ଯୋଗିନୀ ।
ସେ ସକଳୁ ଆଉରେକ ଜୟ ଅଧିକ ମହାତେଜଇ
ଗଗନ ମାର୍ଗେଣ ସବୁଙ୍କର ତେଜ ବଖାଣଇ । ୧୪୦ ।
ମହା ଘୋର ରୂପ ଅଭିଏ ବିକଟ ପିଙ୍ଗଳା
କ୍ଷଣକେ ମୋହୋନୀ କ୍ଷଣକେ ଭୟଙ୍କର ମହା ଜ୍ୱାଳା ।
ଅସୁର ଅନ୍ତେଣ ଜାତ ହୋଇଲେ ମହାମାୟା
କ୍ଷଣକେ ଗୋପ୍ୟ କ୍ଷଣକେ ଦିଶୁଛ ଜାଣି କାୟା ।
ଖପର କଟାର କରେ ଲହ ଲହ ଜିହ୍ୱା
ମହା ତେଜ କାନ୍ତି ଯେ ଦେବଙ୍କୁ ଦୁର୍ଲଭ ।
ଆହୋ ପକ୍ଷୀ ଆଶ୍ୱିନ୍ୟ ମାସ ଶୁକଳ ପକ୍ଷ ଅଷ୍ଟମୀର ତିଥି
ଭୃଗୁବାର ନକ୍ଷତ୍ର ପୂର୍ବ ଆଷାଢ଼ ଇତି
ବାଳବ ନାମେ କରଣ ଧୃତି ନାମେ ଯୋଗ
ବରଷା ଅନ୍ତେ ଶରଦ ବସନ୍ତ ଋତୁ ଭୋଗ ।
ସେ ଦିନ ଜାତ ହୋଇଲେ ଗୋ ମାହେଶ୍ୱରୀ
ଏଙ୍କେ ଅନେକ କାୟା ବିସ୍ତାରିଲେ ତନପୁରୀ ।
ଜୟତୁ ପ୍ରସନ୍ନ ଗୋ ପରମ ମାହେଶ୍ୱରୀ
ଯୋଗିନୀ ବୃନ୍ଦ ଯେଣ ସେ ସ୍ୱୟଂ ଅବତରି ।
ଜୟ କାତ୍ୟାୟନୀ ଗୋ ପରମ ଜଗକୁଳି
ଅସୁର ବଳ ଧଂସଂନ ଗୋ ମର୍ଦ୍ଦନ ରସକେଳି ।

---

୧ । କୁକ୍ଷିରୁ ଯାହାର ଜନ୍ମ ହୋଇଲେ କାଙ୍କାଳି ।

ପରମ ପରମାର୍ଥ ଗୋ ପରମ ଗତି ଅନନ୍ତ
ପରମ ଛତ୍ରିକୁଳ ଗୋ ଅସୁର ବଳ ଧୂମକେତୁ ।
ପ୍ରସନ୍ନ କାମାକ୍ଷି ଗୋ ସୁଜନ ଜନ ଚନ୍ଦ୍ରା
କୃତ୍ତିକେ ମେଦନି ଗୋ ରୁଦ୍ର ସେ ଉଧରନ୍ତା । ୨୫୦ ।
ଏକ୍କେଣ ଅନେକ ବକାଣିଲୁ କାୟା
ଦେବଙ୍କୁ ଦୁଲଭ ଯେବଣ ଦେବୀ ମାୟା
ନମୋ ନମୋ ଚଉଷଠି ଯୋଗ୍ନୀ ଯାହାର ପାଦ ତଳେ
ଜନ୍ମେ ଜନ୍ମେ ଶିବର ନମଇଁ ସର୍ବକାଳେ ।
ଯାବତ ଜୀବଙ୍କୁ ରୁଦ୍ର ସେ କାରେଣୀ
ଭବ ଲଏ ଖାବ ମୁ ରକ୍ଷିବ ଠାକୁରାଣୀ ।
ଶ୍ରୀ ଚଉଷଠି ଯୋଗ୍ନୀଙ୍କର ଚରଣେ ଲମ୍ବନ୍ତେ
ସର୍ବପଦେଁ ମନେ ଶିବର ହୃଦଗତେ
ଶିର ଜଟାବଳ ଗୋ କଙ୍କାଳୀ ବେତାଳୀ
ଅସ୍ଥି ଚର୍ମ ଭୂଷଣ ଗୋ ଗଳାର ମୁଣ୍ଡ ମାଳ ।
ଶ୍ରୀ କରେ ଶୋଭବନ ଗୋ କାତି ଖପର ଖଣ୍ଡି
ଦେଖିରେ ବଟଲୋପନ ଗୋ ଜୟ ରୁ ରାମ ଚଣ୍ଡୀ ।
ମରାଳ ବାହାନେ ଗୋ ବ୍ରହ୍ମାଣୀ ମୁଡ଼ ।
ଖଗେନ୍ଦ୍ର ବାହାନେ ଯେ ନାରାୟଣୀ ଚଳନ୍ତି ।
ଇନ୍ଦ୍ରାଣୀ ବସେ ମଞ୍ଜନାଗ ପିଠି
ବୃଷଭ ବାହାନେ ରୁଦ୍ରାଣୀ ଘୋଟି ।
ଭୈରବୀ ବସେ ସମାଧି ବାହାନେ
ବ୍ୟାଘ୍ରେକେ ଭଦ୍ରକାଳୀ ଚଳନ୍ତି ବିଦ୍ୟାମାନେ ।
ମୃତକା ବାହାନ ଯେ ମୃତ୍ୟୁ ପିଣ୍ଡ ଗୋଟି
ଉଗ୍ରତାରା ବସେ ବଳଦ୍ୱାର ପିଠି । ୨୬୦ ।
ଶକରସୁ ବାହାନେ ଯେ ପ୍ରସନ୍ନ ମହାମାଏ
ବାଘ ବାହାନେ ସେ ବରଛାଏ ଚଳସାଏ ।
ଶ୍ରୀ ଭୁଜେ ଶୋଭବନ କାତି ଖପର ଖଣ୍ଡା
ଉଲୁକ ବାହାନେ ଦେବୀ ଚଳିଲେ ଚାମୁଣ୍ଡା ।
କାଙ୍କାଳୀ ବାହାନ ଯେ ମୟୁରର ପିଠି
ଛାଗ ବାହାନେ ସେ କଳଏ ସମଷ୍ଟି ।
ମାତାଙ୍ଗୀ ବଜଏ ଗର୍ଦ୍ଧଭ ବାହାନେ
ମହାମାୟା ଚଳନ୍ତି ସେ ହରିଣ ବାହାନେ ।

ଶ୍ୱାନ ବାହାନେ ଯେ ଚଳଇ ବାରାହୀ
ଚକାକ୍ଷୀ ଗୃଧ୍ର ବାହାନେ ଅବଗାହ୍ନୀ ।
ମେଷ ଆସନେ ଯେ ଚଳଇ ବହ୍ନିଶା
ଛାଗଳ ବାହାନେ ଯେ ଚଳଇ ଚନ୍ଦ୍ରକାନ୍ତ ।
ମହା ବିକରାଳ କୃତାନ୍ତେକ ବାହାନେ ଯୋଗିନୀ
ମହାନାଗ ଆସନେ ଚଳଇ ଅରଷ୍ଟି ।
ମର୍କଟ ଆସନେ ଚଳଇ କାମାକ୍ଷ
ବାଗ୍ଘୁଟିଆ ବାହାନେ ଚଳଇ ଭାର୍ଗଷି ।
ଶୃଗାଳ ବାହାନେ ଚଳଇ ବେତାଳି
ଶାର୍ଦ୍ଦୂଳ ବାହାନେ ଚଳଏ ଭଦ୍ରକାଳୀ ।
ଚଞ୍ଚଳା ଗମନ ମହିଷିଂର ପିଠି
ଯଏମ୍ଭର ବାହାନେ କାନ୍ତ ମା ଗଗନ ଘୋଟି । ୨୨୭ ।

ବଜେ କର୍ଣ୍ଣ କଠାର ଘେନଣ ଘୋର ଚଣ୍ଡୀ
ମତ୍ତ ରଥ ନାଟେ ମତୁଆଳ ନାଚ ଖଣ୍ଡି ।
ଘଣ୍ଟି ମର୍ଦ୍ଦଳ ସେ କଂସାଳ କରତାଳି
ନାଚନ୍ତି ହରଷେ ବିହରନ୍ତି ମତୁଆଳି ।
କ୍ଷଣକେ ମୋହୋନୀ ସେ କ୍ଷଣକେ ଧର ମତ
କ୍ଷଣକେ ଅଜଏ କ୍ଷଣକେ ନୃତ୍ୟ ଗୀତ ସେ କରନ୍ତି ।
କ୍ଷଣକେ ସାଧବୀ ସେ କ୍ଷଣକେ ଦିବ୍ୟରୂପୀ
କ୍ଷଣକେ ବାଲଭାବ କ୍ଷଣକେ ଗଗନ ବ୍ୟାପି ।
କ୍ଷଣକେ ଜପ ତପ କ୍ଷଣକେ ଦୁଷ୍ଟ ପ୍ରକୃତ
ବିଶ୍ୱ ବିକଟାଳ ସେ କ୍ଷଣକେ ଶାନ୍ତମୂର୍ତ୍ତି ।
ଖେଚରୀ ଭୂଚରୀ ଯେ ନାଦ କଲ କଲ
ମୃତ୍ୟୁ ପିଣ୍ଡ ଆସନୀ ମଧୁର ରସ ଖେଳ ।
ଆହେ। ପରୀକ୍ଷ ଏସନେକ ବିକଟାଳ ଘୋର ଧୂନ ଚଉଷଠି ଯୋଗିନୀ
ଶରଣ ଉଦ୍ଧାରଣ ବାନା ବୋଲନ୍ତି ସାରେଳ ଦାସ ଶୂଦ୍ରମୁନି ।
ହେ ବୁଧଜନେ ମୁ ନୁହଇ ପଣ୍ଡିତ
ମୂରୁଖ ଅପାଠେକ ଜନ ମୁ ଅଭଗତ ।
ଜନମହୁଁ କୃଷିକାରୀ ମୁ ନ ଜାଣଇଂ ଶାସ୍ତ୍ର ବିଧି
ପଣ୍ଡିତ ଜନ ବୋଧିବାକୁ ମୋହୋର କସ ବୁଦ୍ଧି ।
ଅଗାଦ ସାଗର ବିଷ୍ଣୁ ପୁରାଣ ଯାହା ବୋଲି
ଶୁଣିଲେ ଅନ୍ତ ହୋଇବ କି କୃପାର କୁଳ ବାଲି । ୨୨୮ ।

ବୃନ୍ଦାବନ ନନ୍ଦନ ନର୍ମଦା ସରସ୍ୱତୀ ।
ଜଳିଜାଳ ସ୍ଥାନ ସେ ସାଗର ଚଣ୍ଡୀମୂର୍ତ୍ତି ।
ସନ୍ଧ୍ୟା ବ୍ରହ୍ମ ଭବ ବ୍ରିଗୁ ପରମ ହେଙ୍ଗୁଳା
ଅନ୍ତିହା ସ୍ଥୂଳ ଜନ ତାରିବା ନିମନ୍ତେ ନାମ ସର୍ବ ମଙ୍ଗଳା ।
ଅଟନ୍ତି ମୁହିଁ କେମନ୍ତେ ଜାଣିମି ଗହନ ସାଗର ବାଣ୍ଟ
ଅନେହେବାଏ ଭଗତ ପାଇଲି ମୁହିଁ ଭେଟ ।
ମୋତେ ଆଜ୍ଞା ସେ ଦେଇଛନ୍ତି ଯାହା
ଦୁର୍ଗା ଚରଣେ ମୁ ଲେଖନ କରଇଂ ତାହା
ହେ ପଣ୍ଡିତ ଜନେ ନ ଦେଖିମା ମୋର ଦୋଷ
ଅଶ୍ୱମେଧ ଯଜ୍ଞଂ ଏ ଶୁଣନ୍ତେ ହରିବଂଶ ।
ଭେଦ ହରିବଂଶ ଏ ଚଣ୍ଡୀଯୁଦ୍ଧର କଥା
ସଂସାର ଜନ ହିତ କାରଣେ ମୁ ଅବଏ ବକତା ।
ସଙ୍ଗର ପୁରବାଦେଶୀ ସାଙ୍ଗେଲା ଚଣ୍ଡୀ ଦେବୀ
ମୁହିଂ ତାର ଦାସ ସାହେଲ ଦାସ କବି ।
ସେବକ ଲାଏ କର ଯେ ପାରଇ ଏହା ଶୁଣି
ଅନେକ ଆପଦୁ ପାର କରିବେ ଗୋସାମଣି ।
ଶୁଣ ହେ ବୁଧଜନେ ଚଉଷଠି ଯୋଗ୍ନୀଙ୍କର କଥା
ଅଶ୍ୱ ଧନ ପୁତ୍ର ପରମଗତ ହିଅନ୍ତା ।



**ଆହେ ପରୀକ୍ଷ** ଶୁଣ ବଦନ୍ତି ଶୁକ ବ୍ରହ୍ମା
ସଞ୍ଚପି ଶୁଣ ହୋ ଚଉଷଠି ଯୋଗ୍ନୀଙ୍କର ମହିମା । ୨୨୯୦ ।
ଛାୟା ମାୟା ନାରାୟଣୀ ବ୍ରହ୍ମାୟେଣୀ
ରୁଦ୍ରାଏଣି ଭଇରୋବି ଭଦ୍ରାଏଣି ।
ନାହେଶ୍ୱରୀ ବାଟେଲି ଉଗ୍ରତାରା ତାରେଣି
ସ୍ତୁତିକା ଅମ୍ବିକା ଚେତନ ଭଗବତୀ ବିଳାହସି ।
କମଳା କାନ୍ତି କାନ୍ତାନ ମାଧବ ଅମ୍ବିକା ଗୃମଂଡ୍ରା
ମାହେଶ୍ୱରୀ ଆନନ୍ଦୀ ମଦାନନ୍ଦୀ ସ୍ୱରୂପା ବରାହ ଫେଟ୍କାରୀ
ନାଗେଶ ଖେଚରୀ ଖେଚରୀ ଭୂତରୀ
କରାଳି ବେତାଳି ଭଦ୍ରକାଳି କେଟେଶ୍ୱରୀ ।
କଙ୍କାଳି ବେତାଳି କାଳିକା ପିଙ୍ଗାମୁଣି ଭଲୁକା
ବାଟେଳି ଭଦ୍ରକାଳୀ କାଙ୍କମୁଖି ଭଲୁକା ।

ସ୍ୱର୍ଣ୍ଣ ତ ଚାମୁଣ୍ଡା ଯେ ମେଖଳା
ଉଗ୍ରଚଣ୍ଡା ବରାହ୍ମୀ ଅନୁଗ୍ରହସ୍ଥା ମହାବଳା ।
ଗୋପାଳୀ ବନ ଦେବତା ମୋହୋନୀ କାମଧେଣୀ
ଅତ୍ୟବଳ ଅନନ୍ତ କୋଟି ବ୍ରହ୍ମାଣ୍ଡକୁ ଧାରେଣୀ ।
କାମରୂପୀ କାମାକ୍ଷୀ ଚଣ୍ଡୀ ଚତୁରାନନୀ
ରୁଦ୍ରାୟଣୀ କାପାଳୀ କ୍ରୁଦ୍ଧ କ୍ରୁଦ୍ଧ ବଦନ ଭୀଷଣୀ ।
ରୁଦ୍ର ଶ୍ୟାମା ଗଉରୀ ଭଦ୍ରାକ୍ଷୀ ଚତୁରାଇ
ତ୍ରିଲୋକ୍ୟନ ଡାକେଶ୍ୱରୀ ନମଜାଇ ।
ଊର୍ଦ୍ଧ୍ୱନେତ୍ରା ବିମଳା ନିର୍ମଳ ପିଙ୍ଗଳାଶୁଶ୍ରୀ
ଶ୍ରିକାଙ୍ଗୀ ଯୋଏଲଣୀ ମାଧବୀ ସୁରେଶ୍ୱରୀ ।
ଶୁଣ ହେ ପରୀକ୍ଷ ରାଏ ବଦନ୍ତି ଶୁକମୁନି
ଏହେଣ୍ଟିକ ନାମ ସେ ଚଉଷଠି ଯୋଗିନୀ ।
ଅସ୍ଥି ଚର୍ମ ମାଂସ ନର ଗଜ ତୁରଙ୍ଗମ ରୋଧିର
ଭକ୍ଷିଲେ ନ ତୃପ୍ତନ୍ତି ଏହାଙ୍କର ଆହାର ।
ଲକ୍ଷ ଲକ୍ଷ ଜିଭ ସେ ଅସୁର ବଳ ଦେଖି
ଦୁର୍ଗାଙ୍କୁ ଭେଟିଲେ ଯାଇଂ ରୁଦ୍ରା ପଦ୍ମା ଆଖି ।
ବକ୍ରାକ୍ଷୀ ଘୋରରୂପା ବ୍ୟକଳୀ ମାହେଶ୍ୱରୀ
କଙ୍କାଳ ବେତାଳ ଆକାଶେଣ ଶିର ଚାଳିଣ ।
ମର୍ତ୍ତ୍ୟପୁରୁ ଆକାଶପୁର ଉଦରନ୍ତେ ତୁଣ୍ଡ ବିସ୍ତାର
ଦୁର୍ଗାର ମୁଖ ଚାହିଂ ସେ ମାଗନ୍ତି ଆହାର ।
ଦେବମାନେ ବୋଇଲେ ଗୋ ଜାତ କଲୁ ଭବ ଦେହିଂ
ଆହାର ନ ଦେଲେ ବ୍ରହ୍ମକୁ ଆଉ ଖାଇଂ ।
ଦୁର୍ଗାଏ ବୋଇଲେ ଅତ୍ୟବଳ ସଇନ
ଏହାନ୍ତ ବାଣ୍ଟି ଭୁଞ୍ଜିଲେ ଚଉଷଠି ଯୋଗିନୀ ।
ଅସ୍ଥି ଚର୍ମ ମାଂସ କିଛିହିଂ ନ ଥୁଅ
ନ ଅଣ୍ଟିବ ବୋଲନ୍ତିକ ଏନାଥନ ହୁଅ ।
ଏଥକୁ ଭ୍ରାନ୍ତି ତୁମ୍ଭେ ନ କର ଯେ ଜାଣ
ଆହୁରି ହିଂ ଆହାର ଅପାର ତୁମ୍ଭକୁ ହିଂ ଅଛୁ ।
ଏସନେକ ଆଜ୍ଞାଂ ଯହୁଂ ଦେଲେ ଦେବୀ ଦୁର୍ଗେ
ସେଣା ପକ୍ଷୀ ପ୍ରାଏକ ଖେପିଲେ ଏନ୍ତ ବେଗେ ।
ନାଗଲ ବାରଯୋଣ୍ଡ ବୀର ମର୍ଦ୍ଦଳ
ଧାଇଂଲେ ଶ୍ରୋଣେହ୍ନା ତୁଣ୍ଡେ କଙ୍କାଳ ବେତାଳ ।

ଗଗନ ମେଖଳା ଛୁଇଁଲେ କାମରୂପୀ
ଆକାଶ ବାହାନ୍ତି ଦେବୀ ସେ ବ୍ରହ୍ମାଣ୍ଡଯାକ ବେଢ଼ି ।
ଅନେକ ରୂପ ସଙ୍ଗ ହୋଇଲେ ମାହାମାଏ
ଯୋଟିଲେ ରାକ୍ଷସ ବଳ ବିକଟାଳ ଘୋର କାଏ ।
ତିନିଲୋକ ବ୍ୟାପିଲ ସେ ମହାଘୋର ରଣ
ଅସୁରବଳ ଆଠକୁ ପଡ଼ିଲେ ଦେବୀ ମାଡ଼ି ।
ଦାନବ ବଳ ସଇନିକ ପଡ଼ିଲେ ଆକ୍ରେଶି
ଧରି ଦାନେବ ବଳ କ୍ଷଣ କ୍ଷଣକେ ଗ୍ରାସି ।
ରଥ ଗଜ ଅଶ୍ୱ ନ ଜାଣନ୍ତି କିଛି
ଯେ ଯାହାର ଇଚ୍ଛାଏ ସେ ଧରୁଛନ୍ତି ବାଛି ।
ଜେମାବଳମାନେ ଯେ ହୋଅନ୍ତି ବଳ ସେନହା
ଖଟ୍ଟାଙ୍ଗ କୋନ୍ତ ଗଦା ଯୁଧ୍ୟ ନ ଯାଇ ଗଣନା ।
ବିନ୍ଧନ୍ତି ଦାନେବବଳ ଅବିଚ୍ଛନେ ବାଣ
ପାଡ଼ନ୍ତି ଗଦା ଯେ ଭୁଷଣ୍ଡି କୋନ୍ତ ପୁଣ ।
କ୍ଷଣକେ ଉଭା ସେ କ୍ଷଣକେ ଅଦୃଶ୍ୟ
ଉଡ଼ିଅନ୍ତି ଧରନ୍ତି ଜଣେ ଜଣେ ଗ୍ରାସ ।
ଆହେ। ଏକା ରାକ୍ଷସକେ ପର୍ବତ ପାରନ୍ତି ଗିଳି
ତାହାନ୍ତ ଧରଣ ସେ ଦେଖି ଚରଣେ ମଳି ।
ମହା ମହା ଅସୁର ସେ ପ୍ରବଳ ମହାଯୋଧ
ସହସ୍ରେକ ଅର୍ବୁଦକେ ଲକ୍ଷେକ ନାଗସ ବିଧ ।  ୮୨
କକଡ଼ା ବୃଷ୍ଟି ପ୍ରାଏ ଅସୁରେ ବିନ୍ଧନ୍ତି କାଣ୍ଡ
ନାରାଯମାନଙ୍କୁ ଦେବୀ ପାତୁଛନ୍ତି ତୁଣ୍ଡ ।
ମହା ବାତ ଅନଳ ପ୍ରାଏକ ଗର୍ଭେ ଯାନ୍ତି ଜଳି
ଯେତେ ଶସ୍ତ୍ର ବିନ୍ଧନ୍ତି ସମସ୍ତ ଧରି ଗିଳି ।
ମହା ଅନଳ ଗର୍ଭେ ପଡ଼ି ହୋଅନ୍ତି ଦହନ
ସମରେ ନ ଲାଜନ୍ତି ଦୁଷ୍ଟ ଦନୁଜ ।
ଗୁରୁଜ ପ୍ରହାର କରନ୍ତି ଦୂରଘାତେ
ଅନ୍ତରୀକ୍ଷେ ଥାଇଁ ଦେବୀ ପେଷନ୍ତି ଶୂନ୍ୟ ପଥେ ।
ଖାଡକାରେ ବସନ୍ତି ସେ ଅସୁରଙ୍କର ମୁଣ୍ଡେ
ମୁଣ୍ଡ ମାଡ଼ି ଗୁଳନ୍ତି ସେ ଅସୁରଙ୍କର ପିଣ୍ଡେ ।
କେବଣ ଅସୁରଙ୍କୁ କରନ୍ତି ଯାଇ କୋଳ
ଦାନ୍ତେଣ ବିଦାରନ୍ତି ତାହାଙ୍କ ବକ୍ଷ ସ୍ଥଳ ।

ପୁଣ ପୁଣ ଅସୁରକୁ ସେ ଧରନ୍ତି ଦଶାଣ୍ଡି
ଅଧିକ ଗିଳି କରି ମତ୍ତୋଆଳ ନାଟ ଖଂଡି ।
ମୋହୋନୀ ରୂପେ ସେ ହକାରନ୍ତି କତ
ରତି ରସ ଦେଖାଇଂ ବଢ଼ାନ୍ତି ପୀରତି ।
ଅନେକ ଅବସ୍ଥା ଦ୍ରୁପଦ୍ମ ସଙ୍କଟ
ବିଡ଼ୁଲାକ୍ଷ ଭଗବତୀ ଦୁହେଂ ହୋଇଲେ ଭେଟ
ଯନ୍ତ୍ରବନବତୀ ଅଭେଦ ରୂପ ଯୁବା
ଦେଖିଲା ବିଡ଼ୁଲାକ୍ଷ କାମେମନ ନବ ଯୁବା ।
ସହସ୍ର ଟକାଇଂ ଦନ୍ତେଣ ଚରଣ
ରେ ପ୍ରାଣବନ୍ଧୁ ରଖ ମୋର ପ୍ରାଣ ।
ବୁଡ଼ିଲି କାମଜଳେ ତବ ରୂପ ଦେଖି
ତୁ ଅଗାଧ ଜଳୁଂ ରଖ ଚନ୍ଦ୍ରମୁଖୀ ।
ଦନ୍ତରେ ଚରଣ ଧରିଲା ତାର ହସ୍ତ
ମାଧବୀ ଲତା ତଳକୁ ଯିବା ଗୋ ସଙ୍ଘାତ ।
ସଗ୍ରାମ ଛାଡ଼ି ଦୁହେଂ ହାଥ ଧରାଧରି
ପତି ପତ୍ନୀ ପ୍ରାଏକ ହୋଇଗଲେ ଅପସରି ।
ଲକ୍ଷ୍ମୀଭଦ୍ରା ନଦୀ ତୀରେ ଗହଳ ମାଧବୀ ଲତା
ତହୁଂ ଯାଇଂ ପଶିଲେ ହାସ୍ୟ ରସ କଥା ।
ବିଡ଼ୁଲାକ୍ଷ ପଡ଼ିଅଛି ମଦନ ରସ ଭୋଳେ
ନହୁଲି ଭଗବତୀ ଅଙ୍କେ କଲା କୋଳେ ।
ମୁଖେ ଚୁମ୍ବନ ଦେଇ ଭିଡ଼ିଲେ ବାହୁ ଛନ୍ଦା
ଦେନ ପାଟି ଗୃପଣ୍ଡ ମୁଣ୍ଡ ହୋଇଲା ଦେନ ଫାଳ
ମୁଂଡ଼ ଛାଡ଼ନ୍ତେ ଅଯାଷ୍ଟମ ବିଡ଼ୁଲାକ୍ଷ
ପୁଣ ଏକା ଗ୍ରାସକେ ଗିଳିଲା ତାର ବାହୁ ।
ଯେବଣ ବିଡ଼ୁଲାକ୍ଷ ଜାଣିଲା ଯମଦଂଡ଼
ଶୃଙ୍ଗାର ରସେ ସେ ହୋଇଲା ଖଂଡ଼ ଖଂଡ଼ ।
ଅନେକ ଉଶ୍ୱାସ ହୋଇଲା ମେଦନୀ
ବିଡ଼ୁଲାକ୍ଷ ପଡ଼ିଲାକ ଆକାଶେ ପଡ଼ିଲା ଧୁନି । ୨୩୦ ।
ରକ୍ତବୀର୍ଯ ବୀରଦଣ୍ଡକୁ ବାରତା ନୋହିଲା
ବିଡ଼ୁଲାକ୍ଷ ପଡ଼ିଲା ବୋଲି କେହି ନ ଜାଣିଲା ।
ବିଡ଼ୁଲାକ୍ଷ ମାରି ଭଗବତୀ କଲେ ଜଏ
ବାଞ୍ଛା ସିଧ୍ୟ ହୋଇଲା ସେ କହିଲେ ଦେବତାଏ ।

ମହା ବଳିଷ୍ଠ ଦାନବ ସେ ନାଶ ଗଲା କପଟେ
ବାହୁଡ଼ି ଭଗବତୀ ଯାଇ ମିଳିଲେ ଆପଟେ ।
ଆହୋ ପକ୍ଷୀକ୍ଷ ପ୍ରାକର୍ମେ ଅବା ବଳିଷ୍ଠ ହୁଅନ୍ତି
କାମରସ ଦେଖାଇ ସେ ଲଢ଼ୁଲେ ଭଗବତୀ ।
ବିଶ୍ୱାସେ ଖାଇଲା ସେ ସମସ୍ତ ଦାନବ ବୀର
ଏମନ୍ତେ ହେଂ ମାର ସେ ନ ସରଇ ଦାନବ ଧାଗର !
ଜଳ ଫାଶୀ ନାଗଫାଶୀ କାଳ ଫାଶୀ ଘେନି
ଦେବୀଙ୍କୁ ବାନ୍ଧନ୍ତି ସେ ମୃତ ବାହେନୀ ।
କଟେଣୁଣ ତୋର ଦେଇ ବିଦାରନ୍ତି ବୁକୁ
ସମରେଣ ଭସ୍ମ ନାହିଂ ସେ ନାନା ଶସ୍ତ୍ରମାନଙ୍କୁ ।
ରଣ ରଙ୍ଗେ ପଶନ୍ତି ବାଶେଲୀ ବଜ୍ର ତୁଂଡ଼ୀ
ଅନେକ ବଳ ବିଧଂସିଲେ ରଣ ଗୃମେଂଡୀ ।
ଫିଟନ୍ତେଣ ଶସ୍ତ୍ର ଧରନ୍ତି ଊର୍ଦ୍ଧବାହୁ
କରତାରକୁ ଦେଖି ଘୋଟଇ ଯେସନ୍ତେ ରାହୁ ।
ମାୟା ମୋହନୀ ସେ ଅଭଏ କାମାକ୍ଷୀ
ମୁଂଡ଼ନ୍ତି ଛିଣ୍ଡାଇ ସେ କଳେବରନ୍ତି ଭକ୍ଷି । ୨୩୬୦ ।
ରୁଧିରେ ଫିପଂଡ଼ ସେ ଢଶଇ ବାଶେଲୀ
ବକ୍ଷସ୍ଥଳେ ଲମ୍ବାଇଲେ ଅସୁରଙ୍କର ମୁଣ୍ଡମାଳି ।
ଆହୋ କାଳଦଣ୍ଡ ନାମେ ମଶାଂସୁର ସେନା
ଦେବେ ଦାନବେ ସେ ନ ଯାଇ ଗଣନା !
ନାଗଲୋକ ଜିଣି ସେ ପାତାଳେ ଅଧିପତି
ବାଶେଲୀର ଛୁଲେ ଯୁଧ୍ୟ କଲେକ ଅପ୍ରମିତ ।
ବଜ୍ର ସମାନ୍ୟେ ସେ ବାଣ ଘେନି ପଚୁଂଶର
କୋଦଂଡ଼ ସନ୍ଧି ବିନ୍ଧିଲା ସେ ବାଶେଲୀ ଉପର ।
ପାଞ୍ଚ ନାରାୟକୁ ସେ ପାଡିଲା ପାଞ୍ଚ ଆଙ୍ଗୁଳି
ସେ ବ୍ରହ୍ମଶସ୍ତ୍ର ମାନେ ପଡ଼ି ହୋଇଲେ ଧୂଳି ।
ପୁଣି ଦାନବ ସେ ପାଞ୍ଚ ନାରାଯ ପେଷି
ପୁଣ ତାହାଂର ଉପରେ ବିଷ ବରଷି ।
ଅଷ୍ଟାଦଶ ବାଣ ପୁଣ ମାଇଲା କାଳ ଦଂଡ଼
ବାଶେଲୀ ଉପରେ ପଡ଼ି ହୋଇଲା ଶତ ଖଂଡ ।
ପୁଣ ନାରାଯ ବିନ୍ଧିଲା ଚଉଷଠି
ବାମ କରେ ବାଶେଲୀ ତା ସବୁ କରେ ମୁଠି ।

ବିଶାଶତେ ବାଣ ପୂରାଇଂ କାଳ ଦଂଡ଼
ଗୁଣ ଘୋଷ ଶବଦେଣ କମ୍ପିଲ ବ୍ରହ୍ମାଂଡ ।
ପୁଣ ପୂରାଇଲ୍ଲ ଶହସ୍ରମୁଖ ନାରାଚ
ବାଶେଳୀ ଉପରକୁ ସେ ବିନ୍ଧିଲ ଦନୁଜ । ୨୩୬୦ ।
ହୁଂକାର ଶବଦେକ ସେ କଲକ ବାଶେଳୀ
ଧନୁ ଦ୍ରୋଣ ଗଦା ଖଡଗ ସମସ୍ତ ଗଲା ଜଳି ।
ଶୂନ୍ୟ ହସ୍ତ ହୋଇଂ ସେ ରାକ୍ଷସ ବୀର ଉଠି
ବାଶେଳୀ ବକ୍ଷ ସ୍ଥଳେ ମାଇଲ୍ ବଜ୍ର ମୁଠି ।
ଯେସନେକେ ଗଗନୁ ପଡ଼ଇ ନିର୍ଘାତ
ଆକାଶ କମ୍ପିଲ୍ ଶର୍ଜିଲେ ବଧ'ଛ ।
ଆହୋ ପରବତ ଚୂର ହୋଇଲ ଯାହାର ମୁଠି ଘାତେ
ବାଶେଳୀ ବକ୍ଷସ୍ଥଳେ ପଡ଼ି ବହଇ ରକତେ ।
ମହା ବଜ୍ରସ୍ନେନହାଏ ପଡ଼ଣ ଅଙ୍ଗ ଫୁଟି
ମୋହଗତ ହୋଇଂ ସେ ଦାନେବ ବଳ ଟୁଟି ।
ମୋହଗତ ହୋଇ ଯହୁଂ ଦାନେବ ବୀରମଣି
ଖଡ଼ଗ ବୁଲାଇଂ ସେ ପଡ଼ିଲ୍ ଗୋସାମଣି ।
ଦୈତ୍ୟର ବକ୍ଷ ସ୍ଥଳେ ପଡ଼ିଲ୍ଲ ବାଶେଳୀର ଖଂଡା
କାଳଦଂଡ ହୃଦେ ପଡ଼ି ହୋଇଲା ମରୀଗୁଂଡ଼ା ।
ନବ ନନ୍ଦୀ ଖଡଗ ଗଲ ଯହୁଂ ଭଜି
ବଜେ କର୍ଣ୍ଣି କଟାରେ ହାଣିଲେ ଗଳଗାଜି ।
ବଜେ କର୍ଣ୍ଣି କଟାର ଖଜ ଚୂନା ହୋଇଲ
ଆନ୍ନେଷି ବାଶେଳୀ ତାକୁ ମା ର ଯୁଦ୍ଧ୍ୟ ପାଇଲ୍ଲ ।
ଦଶ ନହ ଘେନି ତାର ବଦାରିଲ ବୁକୁ
ତଦାପି କଛୁ ନୋହିଲା ସେ ଅସୁର ଶ୍ୟାମରକୁ । ୨୩୭୦ ।
ଆହୋ ପରୀକ୍ଷ ମୁଣ୍ଡ ମୋଡ଼ନ୍ତେଣ ନ ଛିଡ଼ିଲ ତାର ଶିର
ଶହସ୍ର ଦେନ ପିଟନ୍ତେ ଶହସ୍ର ହୋଇଲ ଚୂର ।
ଅନେକ ପ୍ରହାର ଯେ ଦେବୀ କଲେ ବେଗେ
ଅସୁର କାୟା ନ ତୁଟିଲ କହଣିସି ବାଗେ ।
ଭାଳଇ ବାଶେଳୀ ଯେ ଗୁଡ଼ିବଇଂ ଏହା
ବଜ୍ରରେ ନିର୍ମାଣ ଏ ଅସୁରର ଦେହା ।
ବାଶେଳୀର ଶ୍ୟାନ୍ତ ଯହୁଂ ହୋଇଲାକ ଭ୍ରମ
ଆକାଶରେ ଥାଇଂ ଡାକନ୍ତି ଦେବ ଧର୍ମ ।

ମାତ ଟଗୋ ଯମ କାଲ ଜାଣି ନାମ ଏହାର କାଳକଣ୍ଡ
ଅଗ୍ନିରେ ଦହନ ନୋହଇ ଏହାର ପିଣ୍ଡ ।
ଯଦ୍ୟପି ଏହାଙ୍କୁ ଗ୍ରହିବୁ ବାସେଲି
ଆମ୍ଭ ପଦ ସରଲଟି ଗୋ ଚଣ୍ଡୀର ମନେ ଭଲ ।
ଆହୋ ପରୀକ୍ଷ କୋପେ ସେ ଦେବତାନ୍ତ ବଚନେ
ମାଡ଼ି ବସିଲା ସେ କାଳଦଣ୍ଡ ବକ୍ଷସ୍ଥଳେ ।
ଶୁଣ ପରୀକ୍ଷ ଶୁକମୁନି କହିଲା
ସେ କାଲ ଦଣ୍ଡ ସେନାପତି ବାସେଲୀର ବାହାନ ହୋଇଲା ।
ବିଜଏ କାନ୍ତାମା ନିଶାଚର ପିଠି
ପୁଣ ସମରେ ପଶିଲା ଗଗନ ଘୋଟି ।
କାଳ ଦଣ୍ଡ ପଡ଼ିବାର ନାଶକର ଦେଖି
ଅନେକ ବିନୟ କଲା ସେ ବାସେଲୀ ଦେବୀଙ୍କି । ୨୩୮୦ ।
ଜୟ ଜୟ ଅଭୟା ଗୋ ପରମ ନିତ୍ୟକୁଳା
ଗଜରିପୁ ବାହାନା ଗୋ ପ୍ରସନ୍ନ କାପାଳୀ ।
ଲୋହିତ ବର୍ଣ୍ଣ ଶରୀର ରକତ ମୁଖ ଗୋଟି
ବିକଟ ଦାନ୍ତ ବଜ୍ରତୁଣ୍ଡ କାଳାନଳ ଦୃଷ୍ଟି ।
ଲହ ଲହ ଜିଭ ଗୋ ବକ୍ଷସ୍ଥଳେ ମୁଣ୍ଡ ମାଳି
ପାଦେକ ମୃତ୍ୟୁପୁରେ ପାଦେକ ଗଗନ ମେଲି ।
ରକତ ମୁଖୀ ଗୋ ରକ୍ତ ବସ୍ତ୍ର ପିନ୍ଧ
ଯୁଗ ଅନ୍ତକାଳେ ଯାହାର କେଶ ବାନ୍ଧ ।
ତ୍ରୈଲୋକ୍ୟ ଭକ୍ଷି ପାରଇ ଯାହାର ଘୋର ମୁଖ
କାମଦେବ ମୋହୋନା ସୁନ୍ଦର ରୂପ ରେଖ ।
ପରମ ନିତ୍ୟକୁଳା ଭୈରବ ଅପର୍ଣ୍ଣା
ଭୁଜଙ୍ଗେନ୍ଦ୍ରଙ୍କ କଲଙ୍କୁ କୃତାନ୍ତେକ ଫାଶ ସିନା ।
ପ୍ରଲମ୍ବ ବକ୍ଷୋଜ ଗୋ କ୍ଷୀଣ କ ପାଲୀ
ଅନୁବ୍ରତେ ଯାହାର ମନ୍ଦାର କୁସୁମ ମାଳ ।
କ୍ଷୁଦ୍ର ଘଣ୍ଟାଳ ନ ଜାଣଇ ସେ କାମଅର୍ଥେ ପୂଜି
ମହିଷ ମେଷ ଛାଗଳ କରେହା ମାଂସ ଭୋଜି ।
ଯୋଧରେ ସ୍ନାହାନ ରକତ ଖର୍ପରୀ
ବିରସ ବିକଟାକ୍ଷୀ କାଙ୍କାଳ ବଜ୍ରତୁଣ୍ଡୀ ।
ଅପାର ମହିମା ଯାର ନ ସରଇ କହନ୍ତେ
ଶୁଦ୍ରମୁନି ସାରଳା ଦାସ ବିନୟ ଭାବ ନିତ୍ୟେ । ୨୩୯୦ ।

ଅହୋ ପରୀକ୍ଷ କାଳଦଣ୍ଡ ବଧ୍ୟ ଶୁଣନ୍ତେ ଏକ ଚିତ୍ତେ
ଯମ ଭୁବନକୁ ସେ ନଗଲା କଦାଚିତେ ।
ଯାହାର ଭଏ ଯମ ଦେବତା ଗୁଣ୍ଡିଲେ ସଂଯବକା
ଯାହାର ଭଏ ପଳାଇଲେ କାଳ ଅକାଳ ବେନି ।
ଆହୋ ପରୀକ୍ଷ ସତ୍ୟ ଯୁଗେ ଚନ୍ଦ୍ର ସହସ୍ର ବରଷ ଚଢିଥିଲା
ସେତେବେଳେ କାଳ ପଶଯନ୍ତେ ଯମର ଆତଯାତ ନଥିଲା ।
କାଳ ଦଂଡ଼ ପଢ଼ିଲା ଜଣତ ଯମରାଜା
ବାଶେଳୀର ଚରଣେ ସେ କଲା ପାଦପୂଜା ।
ମାଗୋ ଆପାଦ ଖଣ୍ଡିଲୁ ମହାମାଈ
ମୁହିଂ ଯେ ତୋହାର ଚରଣେ ଜନ୍ମେ ଜନ୍ମେ ଭାବଇଂ ।
କାଳ ଦଂଡ଼ର ବଧ୍ୟ ଯେହୁ ସେ ଶୁଣନ୍ତି
ପଢ଼ନ୍ତେ ମୁକତ ଶୁଣନ୍ତେ ପରମ ଗତି ।
ମନ ମନ ଅବଳାଙ୍କେ ବାଶେଳୀ ପଦ୍ମ ପାଦେ
ସେ ବାଶେଳୀ ପ୍ରସାଦେ ମମ ଦୁଖ ପାର ମାନ ହାଦେ ।
ଯେବେ ଏକ ମନେ ଶୁଣନ୍ତେ ବିପତ୍ତି ପାପ ଖଂଡ଼ୁ
ଅନେକ କଲୁଷ ଅଥ ଆପାଦ ଦୁରନ୍ତ ଯମ ଦଂଡୁ ।
ସେ ବାଶେଳୀର ଚରଣେ ଶରଣ ମୁ ପଶିଲଇ ନିତ୍ୟେ
ବଦୟନ୍ତି ସାରୋଳ ଦାସ ତୁଳସୀ ହୁଦଶତେ ।

—o—

**ଆହେ ପରୀକ୍ଷ** କାଳଦଂଡ଼ ବଧ୍ୟ ଅନନ୍ତରେଣ ଯେ କଥା
ଶୁଣ ସାବଧାନେ ହୋ ସାଗ୍ରାମର ବାରତା । ୨୦୦ ।
ଅସଂଖ୍ୟଂ ସମର ଯେ କଳଣା ନ ଗଲା
କାଳଦଂଡ଼ ପଢ଼ିଲା ହୋ ବେହୁ ନ ଜାଣିଲା ।
ଅସୁର ବଳ ସହୁଂ ମାଜ୍ଞଣ ପଙ୍କଲେ
ଉଗ୍ରତାରା ଯୁଧ୍ୟ କଲେ ସେ କାନ୍ତମାଳା ତୁଲେ ।
କାନ୍ତମାଳର ତୁଲେ ସଇନ ପାଞ୍ଚ ଲକ୍ଷେ
ଅବଛନ୍ନେ ବାଣ ବନ୍ଧଲେ ଉଗ୍ରତାରାକୁ ସମର କରନ୍ତେ ।
ଲକ୍ଷେ ପୁର କଣ ହେ ଅଛନ୍ତି ଚଢ଼ିଂ ବେଢ଼ି
ଆକାଶ ଉତୁଳା ଅଛୁ ସେ ଅସୁରଙ୍କର ରଣ ।
ମହା ଘୋର ଶବଦ ଶୁଣିଣ ଉଗ୍ରତାରା
ଏ ସେ କାନ୍ତମାଳା ପୃଥିକ ମହାଲୟ ।

ମୁ ତ୍ରି ତୋଷି ଏ ପାଇଅଛୁ ବର
ମନରେ ମୃତୁ ଯେ ନାହିଁ ଏହାଙ୍କର ।
ଅତଏ ସୁନ୍ଦର ବିକାଶିଲା ଦେବୀର କାଏ
ମୋହୋନା କାମସେଣୀ ଯେ ବିଜୁଳି ତେଜ ପ୍ରାଏ ।
ଉଗ୍ରତାରା ରୂପ ଯେ କାନ୍ତମାଳା ଗୃହିଂ
ଆତ୍ମାକୁ ଅଣବତେ ସେ ପଡ଼ିଲକ ମଣ୍ଡି ।
ଚେତନା ପାଇଂଣ ସେ ସାଷ୍ଟାମ ହୋଇ ବସଇ
ରେ ପ୍ରାଣ ବଲ୍ଲଭୀ ବୋଲି ବଚନ ପ୍ରକାଶଇ ।
କାନ୍ତମାଳା ବୋଇଲା ମୋହେଣ ବଶ୍ୟ ମୋହୋର ପଞ୍ଚଆତ୍ମା
ମଦନ ସାଗରୁ ରକ୍ଷାକର ମହାତ୍ମା ।
ମୁହିଂ ତୋହୋର ଚରଣ ପଙ୍କେ ଲାଗଇ
ଦଣ୍ଡ ଲାହ ମୁହେଁ ଭରି ସୁରତ ମାଗଇ ।
ଉଗ୍ରତାରା ବୋଲଲେ ମୁ ବ୍ରତ କରିଅଛି ପୂର୍ବେ
ମମ କାର୍ଯ୍ୟ ଅର୍ଥେ ଯେ ବ୍ରତ ପୂରଇ ପାରଇ ଏବେ ।
ସେ ବ୍ରତ ପୂରାଇଲେ ମୁ ହୋଇବି ତାର ପତ୍ନୀ
ତେବେ ତୁହିବାସ କରିବି ତାହା ଯେନ ।
କାନ୍ତମାଳା ବୋଇଲା ବ୍ରତକ ପୂରାଇବ କୁ ମୁହୂର୍ତ୍ତେ ରହ
ଗୋ ପ୍ରିଏ ମୋତେ ବ୍ରତର ବିଧାନ ଯେ କହ ।
ଉଗ୍ରତାରା ବୋଇଲା ମୋତେ କାନ୍ଧରେ ବସାଇଂ
ଲଜ୍ୟା ଉପେକ୍ଷିଣ ମୋତେ ମନ୍ଦିରକୁ ପାରଇ ନେଇ ।
ପୁରୁଷ କୁଳ ଯେ ଉପେକ୍ଷା କରଇ ଲଜ୍ୟା
ତେବେ ସେ ତାହାର ମୁ ହୋଇବି ଭାରିଯା ।
କାନ୍ତମାଳା ବୋଇଲା ଏ ମୋହୋର ସତ୍ୟ ସତ୍ୟ
ଆସ ଆସ ମମ କାନ୍ଧରେ ବସରେ ସଙ୍ଗାତ ।
ଉଗ୍ରତାରା ବୋଇଲା ଆଦୃଶ୍ୟ ଅସ୍ତ୍ର ହୋଇ
କେହୁ ନ ଦେଖୁ ସେ କାନ୍ଧରେ ବସି ଯାଉଂ ।
ଗୃହ୍ୟ ବଚନ କହୁଂ କହୁଂ ସେ ଆଦୃଶ୍ୟ ଅସ୍ତ୍ର ଗଲା
କାନ୍ତମାଳା ଉଗ୍ରତାରାକୁ କାନ୍ଧରେ ବସାଇଲା ।
ବିଶଂଟିର ତଳେ ସେ ପର୍ବତ ପଛଆଡ଼େ
ଲକ୍ଷ୍ମୀଭଦ୍ରା ଦକ୍ଷିଣ ଭାଗ ଆଡ଼େ ।
କାନ୍ତମାଳା ଉଗ୍ରତାରାକୁ ବହିଅଛି କଣ୍ଡତଟେ
କୁହେଂ ଯାଉଛନ୍ତି ସେ ପର୍ବତ ଗହନ ବାଟେ ।

ଅନେକ କଉତୁକ ଯେ ହରଷ ଆନନ୍ଦେ
କୁଳାବତୀ ପାଟଣା ସେ ଯାଉଛନ୍ତି ହାବେ ।
ଉଗ୍ରତାରା ବୋଇଲେ ବଞ୍ଚି ନ ପାରଇ ହୋ ବୀର
ଦଣ୍ଡେକ ଠିଆ ହୋଇବ ତୋହୋ କାନ୍ଧର ଉପର ।
କାନ୍ତମାଳା ବୋଇଲେ ଯେବେ ନ ସମ୍ଭବ ହୁଅ
ମୁଣ୍ଡର ଉପରେ ଗୋ ହୁଅ ମୋର ଠିଆ ।
ହେ ପଣ୍ଡିତ ଜନମାନେ ବିଗ୍ରହ କର ଏହା
ପୁରୁଷ ବିରହତା ନ କରଇ କାହା !
ଯେତେ ପ୍ରାକର୍ମ ଥିଲେ ବୁଡ଼ଇ ମଦନ କଳେ ପଡ଼ିଲେ
ଦଉଡ଼ି ଲାଗି ଯେହ୍ନେ ଗମଇ ବଇଲେ ।
ଆହୋ କାନ୍ତମାଳା ଅବସ୍ଥା ମଦନ ଲୁବୁଧେ
କର ଘର ମାଡ଼ି ବସିଲେ ଦୁଇ କନ୍ଧେ ।
ଆକାଶମଣ୍ଡଳେ ଉଗ୍ରତାରା ଦଶିଲା ତେଜ ବ୍ୟାପି
ହୁଂକାର ଶବଦ କରି ସେ କାନ୍ତମାଳାକୁ ଚୃପି ।
ମାହା ବଇଷ୍ଣବୀ ସେ ମାହା ଅନର୍ଗଳା
ପାତାଳଗାମୀ ହୋଇଲେ ସେ ଅସୁର କାନ୍ତମାଳା ।
ଆହୋ ପକ୍ଷ୍ୟ କାନ୍ତମାଳା ନିଧନ ଦେଖି ସେ ଦେବତାଏ କରନ୍ତି ତୁଷ୍ଟି
ସନ୍ତୋଷେ ଦେବଗଣେ କଲେକ କନେକ ବୃଷ୍ଟି । ୨୪୩୦ ।
ତେତିଶ କୋଟି ଦେବତାଏ ଯେ ବିନୟ ଭାବେ ସେବି
ଦେବତାଙ୍କର କଲୁଷ ଗୋ ବିନାଶ କଲ ଦେବୀ ।
ଅନେକ ସମର କରୁଅଛନ୍ତି ଦନୁଜ
କାନ୍ତମାଳା ପଡ଼ିଲାକ ନ ଜାଣନ୍ତି ରକ୍ତବୀର୍ଯ୍ୟ ।
ମର୍ଷାଂର ଆଗ୍ୟା ପାଇ ଯେ ଅଇଲେ ପାଞ୍ଚସେନା
ଛଜ ସେନା ପଡ଼ିଲେ ଅଉଲଇ ବୀର ଜେନା ।
ରକ୍ତବୀର୍ଯ୍ୟ ବୀରଘଣ୍ଟ ଅଛନ୍ତି ବୀରବେଳ
ନବ ମର୍ଭୂତ ବଳ ଅଛନ୍ତି ଯେ ରାକ୍ଷସ ବଳ ସଇନ ।
ଦେବଙ୍କୁ ଦୁର୍ଲ୍ଲଭ ଯେ ବୀରଘଣ୍ଟ ବୀର ଦୃଢ଼ ପଣଇ
ଇନ୍ଦ୍ର ଚନ୍ଦ୍ର ରୁଦ୍ର ସେ କାହାକୁ ହୃଂ ନ ଗଣଇ ।
ପଞ୍ଚ ମର୍ଭୂତ ଯୋଧ୍ୟା ଭୁଲେଣ ରକ୍ତବୀର୍ଯ୍ୟ
ନାରାୟେଣୀ ସମ୍ମୁଖରେ ମିଳିଲେ ଦନୁଜ ।
ଲୁହାର ଧନୁ ପ୍ରତ୍ୟେକ କରେ ମୂଷଳୀ ଶର ଆୟୁଧ
ମତ୍ତ ନାଗ ପ୍ରାତ୍ୟେକ ସେ ଆରମ୍ଭିଲେ ଯୁଦ୍ଧ ।

ଯେତେନେକେ ଗିରିବର ଆବୋରଇ ଜଳ
ରକ୍ତବୀର୍ଯ୍ୟର ରୁଦ୍ଧେ ନବ ମର୍ଦ୍ଦିତ ବଳ ।
ଘନ କୋଟି ବଳ ଯେ ଲୋହଶର ଧନୁ
ନାରାଯ ବଶାନ୍ତ ଯେ ଅନଳ ସାମାନ୍ୟ ।
ସହସ୍ରେକ ନାରାଯ ଯେହ୍ନେଣ ରକ୍ତବୀର୍ଯ୍ୟ
ନାରାୟଣୀ ସମ୍ମୁଖେ ମିଳିଲେକ ଦନୁଜ । ୧୪୪୦ ।

ଆଳିହା ପରୀକ୍ଷ ଶ୍ୟାମର ବରାଜଇ ତାଳମ୍ବ ଗୁଚ୍ଛ ପ୍ରାୟେ
ରଙ୍ଗ ପୁଷ୍ପ ପରିହରଣ କଣ୍ଠେ ମନ୍ଦାର ପୁଷ୍ପ ମାଳା ଗୋଟାଏ ।
କଣ୍ଠେ ମନ୍ଦାର ପୁଷ୍ପ ବୃନ୍ଦବନ୍ଧ ମନ୍ଦାରକୁମ୍ଭ ପୁଷ୍ପେ ଜଡ଼ିମ
ବାଳ ଅର୍କ ପ୍ରାୟେ ବିରାଜଇ ଉଦକର୍ମ ।
ସୂର୍ଯ୍ୟ ମଣ୍ଡଳ ରଥେ କୋଟିଏ ସାର୍ଦ୍ଧେ ଟେଳା ବଥ
ବାହୁ ବିସ୍ତାର ସାରଥି ରଥ ବାହୁଅଛୁ ।
ସମର ଆବୋରିଲ ସେ ଅସୁର ସାମରଥ
ସୂର୍ଯ୍ୟମଣ୍ଡଳେ ନେଇଂ କଲ ସୂର୍ଯ୍ୟମଂଡ଼ଳ ରଥ ।
ଝିଙ୍କ ପକ୍ଷୀ ବାହାନୀ ହୋଇଂଣ ନାରାୟଣୀ
ବିଜୟାମାଳା ସେ ଶଙ୍ଖଚକ୍ର ପାଣି ।
ଗାଂଡ଼ିମ ଧନୁ କରେ କଉମୋଦୀ ଗଦା ଧର
ଚତୁର୍ଭୁଜେ ସୁଦ୍ରସେନ ବାହାନେ ନାଗର ଅଙ୍ଗର
ରକ୍ତବୀର୍ଯ୍ୟ ନାରାୟଣୀ ହୋଇଲେ ବେଢ଼ ଭେଟ
ଧାଅଂଲେ ଖାଅଲେ ଅସୁର ବଳ ଥାଟ ।
ନାରାୟଣୀ ଆଗ୍ୟାଂ ପାଇଣ ଦେବୀମାନେ
କ୍ରୋଷ୍ଟେହା ଯୁଥ ପ୍ରାୟେ ସେ ଘୋଟିଲେ ଗଗନେ ।
କେଶରୀ ବାହାନେ କରେଣ ଖପର କାତି
ବ୍ରାଘ ବାହାନେ କେହୁ ଭାଲୁଙ୍କ ଚଢ଼ନ୍ତି ।
ବିକରାଳ ଘୋରରୂପୀ ରଣ ବେତାଳୀ
ଅସୁର ବଳକୁ ଧାଇଂଲେ ସେ ଦେଇଂବଂ ହୁଳହୁଳି । ୧୪୫୦ ।
କେ ବିଭୂତ ବିଲେପନ ଗଳାରେ ଚୀରକୁଟି
କାହାର କଟିରେ କାଛୋଟା କେହୁ ନଗ୍ନଂଟି ।
କରେଣ ତ୍ରିଶୂଳ ବଜେ କଣ୍ଡ କଠାର
ଶେଣା ପକ୍ଷୀ ପ୍ରାୟେ ହୋଇଂ ଦୈତ୍ୟଙ୍କୁ ଆବୋର ।
କରେଣ ଧନୁ ଧର ମିଳିଲେ ଦନୁଜେ
ସହସ୍ରେକ ଶର ଗିଳି ଯାନ୍ତି ସେ ନାରାୟଣୀଙ୍କର ତେଜେ ।

ଅନ୍ତରୀକ୍ଷେ କୋନ୍ତ ବୁଲାଇ ମାଇଲେ ନେଇ ରଥେ
ନବ ନିଶୀକୋନ୍ତ ନ ରହିଲେ ବେନି ହାଥେ ।
ସେ ଗଦା ପଡନ୍ତେଣ ପାତନ୍ତି ଦେବୀଙ୍କର ମୁଣ୍ଡ
ଶିରେ ପଡ଼ି ଗଦା ହୋଅନ୍ତି ମଣୀ ଗୁଣ୍ଡ ।
ଗଦା ଖଣ୍ଡନ୍ତେ ସେ ହୁଅନ୍ତି ଶୂନ୍ୟ ହସ୍ତ
ଧାଇଂ ମାହେଶ୍ୱରୀ ପ୍ରହାର କରନ୍ତି ମୁଥ ।
ହାବୋଡ଼ା ଘାଏଣ ପଡନ୍ତି ଉତ୍ତାନ ଶାୟୀ
ବକ ସ୍ଥଳେ ମାଡି ବସନ୍ତି ବରାହୀ ।
ତୁଣ୍ଡ ବିସ୍ତାରଣ ହଅନ୍ତି ଘୋର ରଡ଼ି
ହୁଆ ବଦାରଣ ସେ ବେନି ଫାଳ କରି ।
ଆଞ୍ଜୁଳା କରି ସେ ଧରନ୍ତି ରୋଧିର
ଏକାଇ ଉଡଇ ଆରେକ ଉପର ।
କେଶ ଧରଣ ସେ ବୁଲାନ୍ତି ଅନ୍ତରୀକ୍ଷ କରି
ମାଂସ ଖାଉଂଛନ୍ତି ସେ ଅନ୍ତରୀକ୍ଷ ଦନ୍ତେଣ ବଦାରି । ୪୬୦ ।
ପୁଣ୍ଡ ବଜ୍ର ମୁଦୁଗର ପିଠଂରେ ଦଇତେ
ପଡ଼ଂତେ ଦେବୀ ମାନେ ଧରନ୍ତି ତାହା ହସ୍ତେ ।
ଭୁଜ ଧରଣ ସେ ମାରନ୍ତି ନେଇ ନାଟେ
ବୁଲାଇ ପିଟନ୍ତି ଗଦାବର ବଘାତେ ।
ନିର୍ଘାତ ଜାଣିଣ ସେ ପଡ଼ନ୍ତି ନିଶାଚରେ
ଧାଇଂଣ ମାଡ଼ି ବସନ୍ତି ସେ ହୃଆ ଭିତରେ ।
ଦାଂତେଣ କାମୋଡ଼ି କାଟନ୍ତି ଜାହାର ବୁକୁ
ଖଂଡେକ କାମୋଡ଼ି ଦଅନ୍ତି ଖଂଡେ ଆରେକକୁ ।
ରକତ ମାଂସ ଖାଇଂଣ ପକାବନ୍ତି ହାଡ଼
ଭୂମି କମ୍ପଇଂ ସେ ଦଅଂତେଣ ରଡ଼ ମଡ଼ ।
ଇଚ୍ଛାଏ ରକ୍ତ ମାଂସ କରନ୍ତି ଦେବୀ ଭୋଜ
କାମ୍ୟେକ ମେଘ ପ୍ରାଏକ ଯେତେ ଯେ ଗଲ ଗାର୍ଜି ।
ଆହୋ ଷୱାଷ ସେ ରକ୍ଷଣ ଭକ୍ଷଣ ତୋଷଣ କରି ଧରିଥାନ୍ତି ତୁଣ୍ଡ
ଅସୁର ଗଦା ଦେଇଂ ଭାଡ଼ଂନ୍ତି ତାର ମୁଂଡ଼ ।
ଚହ୍ନଂକ ତ ଲଏ ସେ ନ କରନ୍ତି ଭୂଜଦାଂଡ଼
ପିଠି ଆଡ଼େଣ ଗଦାଏ ପଡ଼ି ହୋଅନ୍ତି ଖଂଡ଼ଖଂଡ଼ ।
ଲକ୍ଷ ଲକ୍ଷ ନାରାଯ ବନ୍ଧନ୍ତି ଦାନବେ
ନରାଯ ଦେଖି ସେ ଧାମନ୍ତି ଉଦବେଗେଂ ।

ଛିଡ଼ିପଡ଼ିଲା କେଶ ସେ ଦିଶନ୍ତି ରୋମାବଳି
ନାରାୟମାନେ ପଡ଼ି ହୋଉଛନ୍ତି ଯେ ଧୂଳି । ୨୪୭୦ ।
ନାରାଚ ବାଣ ଦାନବେ ହୋଇଲେ ବିମୁଖେ
ଧନୁ ଶହସ୍ର ଛାଡ଼ି ସେ ପଳାନ୍ତି ଅତି ଦୁଃଖେ ।
ପଳାବନ୍ତେ ଘୋଡ଼ାବଂତେ ଅତି ବିକରାଳ
ପଛ କତି ଯାଇଂ ସେ ଧରୁଛଂତି ବାଳ ।
ଉଡ଼ାନ ସାଙ୍ଗ ହୋଇଂ ସେ ଯେ ଡ଼ାକନ୍ତି ଯେତେବେଳେ
ପାଟି ଆକର୍ଷି ଧରଂତି ବକସ୍ଥଳେ ।
ପାଟି ଗୃପଂତି ସେ ହୋଇଣ ବେନି ଖଂଡ଼
ରୋଧିର ବୃଷ୍ଟି ହୁଅଇ ଶରୀର ନିପଣ୍ଡ ।
ମଞ୍ଜୁଳି ପୁଷ୍ପ ପ୍ରାଏ ବିରାଜଇ କାଏ
ବିହଙ୍ଗ ଦାନ୍ତ ଦେଖି କେ ପଳାଂବତି ଭୟେ ।
ସମରେ ଦାନବେ ଭୟ ପାଇଲେ ଅତି ଦୁଃଖ
ଖଗିଂଣ ପଳାବଂତି ସେ ପାଇଣ ବିମୁଖ ।
କ୍ଷଣକେ ମୋହନୀ ସେ କ୍ଷଣକେ କାମସେଣା
ମୋହ ଫାଶ ଲଗାଇ ସେ କରଂତି ଅତି ବଣା ।
ଅସୁର ଦଳ ଯଇନ ସେ ନାନା ଅବସ୍ଥା
କହିଲେ ନ ସରଇ ସେ ଦେବୀଙ୍କର କଥା ।
ପଣ୍ଡୁ ପଞ୍ଚ ବ୍ରହ୍ମଶର ବାବର ଖଣ୍ଡ ମୁନା
ବିନ୍ଧନ୍ତେଣ ନ ଭେଦନ୍ତି ସେ କପଟ ବଜ୍ରସେନ୍ହା ।
ଗଦା ମୁଦୁଗର ଗୁରୁଯ ଶାବେଳି ଲୁହାଳି
ଏମାନେହେଂ ପଡ଼ି ହୋଉଛନ୍ତି ଧୂଳି । ୨୪୮୦ ।
ପ୍ରଷ୍ଟୁ ଢୋଠର ବଜ୍ର ଅସୀପଞ୍ଚ ଯାଠୀ
ହୁ ଣନ୍ତେ ଶ୍ବରୀରେଣ ପଡ଼ି ଗୁଣ୍ଡା ଉଠି ।
ଶରେଣ ଭେଦନ୍ତ ଯହୁଂ ନୋହିଲକ କାଏ
ଖଗିଲେ ଦାନେବ ବଳ ବାହ ଭଗ୍ନ ପକ୍ଷୀ ପ୍ରାଏ ।
ରଣେ କାନେବେ ସେ ପାଇଲେ ଅତି ଦୁଖ
ଖଙ୍ଗିଲେ ଅସୁର ବଳ ସେ ହୋଇଣ ନରେଖି ।
ଘୋଡ଼ାଇ ଭେଟିଲେ ସେ ପଭଏ କାନ୍ତାନୀ
ଧର ଧର ମାର ମାର ବୋଲି ହାକନ୍ତି ବିକଟାଳ ରୂପ ଘେନି ।
ପଳାବନ୍ତେ ଧରି ବିଦାରନ୍ତି ବକସ୍ଥଳ
ରୁଧିର ମାଂସ ରୁନ୍ଧ ସେ କଭନ୍ତି କୁତୋହୋଳ ।

ସହସ୍ରେ କୋଟି ଦାନବେ ସେ ପଡ଼ିଛନ୍ତି ରଣେ
ଭକ୍ଷଣ କରନ୍ତେ ଶ ଦେବୀଙ୍କର ଯେ ନ ରହନ୍ତି ଏକ କଣେ ।
ରକ୍ତ ମାଂସ କିଛିହିଂ ନ ପଡ଼ଇ ତଳେ
କରନ୍ତି ଆହାର ଯେ ଅନେକ କୁତୂହଳେ ।
ମହା ବୈଷ୍ଣବୀ ସେ ରଣ ରଙ୍ଗେ ଚଞ୍ଚଳା
କ୍ଷଣକେ ଯୋଗେଶ୍ୱରୀ ଯେ କ୍ଷଣକେ ଅନର୍ଗଳା ।
ନୂପୁର ମହା ମେଖଳା ସେ ମହା ବୈଷ୍ଣବୀ
ନାଚନ୍ତି କଳ କଳ ମାରନ୍ତି ରଣେ ବୋବ ।
କ୍ଷଣକେ ମୋହନୀ ଯେ କ୍ଷଣକେ ବିକଟାକ୍ଷୀ
ରଣ ରଙ୍ଗ ଧନ୍ଦୋଳ ସେ ମନୁ ମାଂସ ଭକ୍ଷି ।
ରକ୍ତବୀର୍ଯ୍ୟ ନାରାୟଣୀର ଅଦ୍ଭୁତ ସଂଗ୍ରାମ
ନାରାଚ ବନ୍ଧନ୍ତେ କ୍ଷଣକେ ନାହିଂଟି ବିଶ୍ରାମ ।
ଗାଣ୍ଡିମ କୋଦଣ୍ଡ ଧନୁ ନାରାୟଣୀର ହସ୍ତେ
ଆକାଶ ଅନ୍ଧାର ହୋଇଲା ଶର ବନ୍ଧନ୍ତେ ।
ରକ୍ତବୀର୍ଯ୍ୟ ବନ୍ଧଇ ସେ ଅବଛିନ୍ନ ବାଣ
ଶୂନ୍ୟ ଭୁବନ ମଧ୍ୟେ ଘୋଟିଲା ନ ଦିଶଇ ପଞ୍ଚାଣ ।
ରଣରଙ୍ଗେ ନାଚଏ ସେ କଙ୍କାଳୀ ବେତାଳୀ
କ୍ଷଣ କ୍ଷଣକେ ଗିଳନ୍ତି ଦୈତ୍ୟଙ୍କର ଜାଳାବଳୀ ।
ଆହେ। ପରୀକ୍ଷ ବାରୁଣୀ ଶହସ୍ରେକ ମାଇଲା ରକ୍ତବୀର୍ଯ୍ୟ
ଅଗ୍ନିରେ ଦହୁଅ ହେଲା ସେ ରକ୍ତବୀର୍ଯ୍ୟର ତେଜ ।
ଅଗ୍ନିବାଣେକ ଯେ ମାଇଲା ଦାନେକ
ଆକାଶ ଭୁବନ ପରଯନ୍ତେ ଘୋଟିଲାକ ସର୍ବ ।
ଲୁହାର କୋଟିଏକ ଶର ରକ୍ତବୀର୍ଯ୍ୟ ବନ୍ଧ
ଏକା ନାରାଚକେ ତାହା ନାରାୟଣୀ ଛେଦ ।
ପର୍ବତା ଶରେକ ଯେ ବନ୍ଧିଲା ରକ୍ତବୀର୍ଯ୍ୟ
ଉଗ୍ରତାରା ଉପରେ ପଡ଼ି ହୋଇଲା ଦହନ ।
ପୁଣି ବନ୍ଧିଲା ସେ ଦିବ୍ୟ କୋଟି ବାଣ
ଏକା ନାରାୟଣୀ ଯେ ଛେଦିଲେ ତତକ୍ଷଣ ।
କୋପେଣ ମେଘାଶର ଯେ ଅସୁରେଶ୍ୱର ମାର
ତଇନ୍ଦ୍ରେକ୍ୟ କମ୍ପିଲା ସେ ମେଘା ଶହସ୍ର ପ୍ରହାର ।
ଦେଖିଣ ନାରାୟଣୀ ପବନା ଶରେକ ବିନ୍ଧଇ
ପବନ ବିଘାତେ ସେ ମେଘା ବାଣ ଉଡ଼ଇ ।

ବଜ୍ରନ୍ତେ ପବନ ମୃତ୍ତମଣ୍ଡଳ ଘୋଟି
ଦଶ ଦଗେ ମେଘେ ସେ ପଡ଼ିଗଲେ ଫାଟି
ବ୍ରହ୍ମା ଅସ୍ତ୍ରେକ ଯେ ବନ୍ଧିଲା ରକ୍ତବୀର୍ଯ୍ୟ
ନାରାୟଣୀ ଅସ୍ତ୍ରେ ଯେ ନାରାୟଣୀ କଲେ ଦହ୍ନଯ ।
ପୁଣ ରକ୍ତବୀର୍ଯ୍ୟ ନାର୍ଗାଢ ବାଣେକ ବନ୍ଧ
ବଜ୍ରସୂଚୀ ଶରେ ତାହା ନାରାୟଣୀ କରୋଧ ।
ନାରାୟଣୀ ବନ୍ଧଲେ ଅଷ୍ଟ ପଞ୍ଚ ଷାକ୍ଷମୁନା
ନାରାୟ ଭେଦନ୍ତେ ଯେ ରକ୍ତବୀର୍ଯ୍ୟ ସେନହା ।
ସେମନେ ବେନ ଶର ଯେ ହୋଇଲାକ ବୃଷ୍ଟି
ଅକ୍ଷଏ ଶ୍ୟାମରେ ନଯ ରକ୍ତ କର୍ଦ୍ଦନ ଉଠି ।
ଆହୋ ପକ୍ଷୀକ୍ଷ ଘାଏଣ ଘୁମାଇଲା ସେ ଦୁରାର ଆତ୍ମାନ
ଚେତନା ଶଙ୍କରେ ପୁଣ ଉଠିଲେ କାତ୍ୟାମ ।
କ୍ଷାକ୍ଷମୁନା ଶରେକ ଯେ ବନ୍ଧିଲା ଗୋସାମଣି
ରକ୍ତବୀର୍ଯ୍ୟ ଧନୁ ଯେ ପକାଇଲା ହାଣି ।
ଆହୋ ପକ୍ଷୀକ୍ଷ ପୁଣ ପୁଣ ନାରାୟ ବନ୍ଧନ୍ତ ପବନ ବଜ୍ରନ୍ତୁ
ନାରାୟଣୀ ଛେଦଲେ ରକ୍ତବୀର୍ଯ୍ୟ ଧନୁ ।
ହେ ବୁଧ ଜନେ ସଞ୍ଚପି କହିବାକୁ କିସ ମୋହର ଶକତା
ଲେଖନ୍ତେ ନ ସରଇ ଚଣ୍ଡୀ ଯୁଧ୍ୟର କଥା । ୨୫୧୦ ।
ଧନୁ ଛେଦନ୍ତେଣ ଦାନବ ରକ୍ତବୀର୍ଯ୍ୟ
ଖଡ଼ଗ ଫଳା ଘେନ ଯେ ଧାମଇ ଦନୁଯ ।
ଦେବଙ୍କୁ ଦୁର୍ଲଭ ଯାହାର ବିକ୍ରମ ସିଦ୍ଧଗଢ
ରକ୍ତବୀର୍ଯ୍ୟ ମୂର୍ତ୍ତି ଦେଖି ସେ ଧାଇଲେ ଭଗବନ୍ତୀ ।
ଅଜଗବ ଧନୁ ଧରି ସେ ବନ୍ଧଲେ ପଞ୍ଚ ବାଣ
ରକ୍ତବୀର୍ଯ୍ୟ ଛେଦିଲା ସେ ଫଳା ଆଜ୍ଞଣ ।
ଏକ କର ଶୂନ୍ୟ ଆରେକ କରେ ଖଣ୍ଡା
ସମରେ ବୁହରଇ ସେ ଅସୁର କୁଳ ଘଣ୍ଟା
ଖଡ଼ଗ ବୁଲାଇ ସେ ଧାମଇ ରକ୍ତବର୍ଣ୍ଣ
ଆକ୍ଷେପି ହାଣିଲା ନେଇ ସେ ଭଗବନ୍ତୀର ମସ୍ତକ ପାର୍ଶ୍ୱିକ ।
ଆସି ପଡ଼ନ୍ତେ ସେ ଭଗବନ୍ତୀ ଅନ୍ତର୍ଧ୍ୟାଏ
ତଉକଢ ରକ୍ତବୀର୍ଯ୍ୟ ଲୋଡ଼ଇ ମହାମାଏ ।
ଶୂନ୍ୟ ହସ୍ତ ଯନ୍ତ୍ରଂ ରକ୍ତବର୍ଣ୍ଣ ଦେଖି
ଆଲୋ ଧାଅଂଲେ ବୋଲି ସେ ନାରାୟଣୀ ହାକି ।

ନାରାୟଣୀ ହାଙ୍କତେ ଧାମଇଂ ଅସୁର ପ୍ରଚଂଡ଼ା
ଧାଇଂ ପିଟିଲା ସେ ଅସିପତ୍ର ଖଂଡ଼ା ।
ବଜ୍ର ଶକତ୍ତି ଯେ ଘେନି ମାହେଶ୍ୱରୀ
ରକ୍ତବୀର୍ଯ ଉପରେ ନେଇଂ ପ୍ରହାର କରି ।
ପ୍ରଳୟ କାଳେ ଗର୍ଜନ ପ୍ରାଏକ ଶୁଭିଲା
ରକ୍ତବୀର୍ଯ ଖଡ଼ଗ ଉପରେ ସେ ବାଣ ଭେଦିଲା । ୨୫୨୦
ଧାଇଂଣ କୋଠାର ସେ ମାଇଲେ ପ୍ରମଦା
ତତଖଣେ ରକ୍ତବୀର୍ଯ ଘେନଲେକ ଗଦା ।
ଧାଇଂଣ ନାରାୟଣୀ ଉପରେ ନେଇଂଣ ପିଟଇ
ବାହାନ ଖଗଇନ୍ଦ୍ର ପକ୍ଷୀ ପଡ଼ି ସେ ଲୋଟଇ ।
ବାହାନ ବିହୁନେ ନାରାୟଣୀ ରହଇ ସ୍ୱର୍ଗେ
ସିଂଘ ପେଷି ଦେଲେ ଦେବୀ ଦୁର୍ଗେ ।
ବିଜେ କଲେ ନାରାୟଣୀ କେଶରୀ ଆରତେ
ରକତବୀର୍ଯର ଭୁଲେ ସେ ସମର ନାନା ମତେ ।
ସହସ୍ରେ ସହସ୍ରେକ ଭାର ଲୁହାର ଗଦା ଘେନି
ରକ୍ତବୀର୍ଯ ପିଟିଲ ସେ ମେଣ୍ଟିଲେ ବାହାନୀ ।
ଗଦା ବିଘାତେ ନ ପାରନ୍ତେ ଅସୁର ମହାବଳୀ
ବିଜେ କର୍ଣ୍ଣି କୋଠାର ଘେନି ନାରାୟଣୀ ହାଣିଲେ ତୋଳି ।
ଲୁହାଗିରି ପ୍ରାଏକ ଯାହାର ଲୁହା ଦଂଡ଼
ନାରାୟଣୀ ହାଣନ୍ତେ ସେ ହୋଇଲା ଦୁଇଖଣ୍ଡ ।
ଦେବ ଦଳନ ଗଦା ଯହୁଂ ଭାଙ୍ଗିଲା ରକ୍ତବୀର୍ଯ
ବେନି ମୁଥା ଉଞ୍ଚାଇ ସେ ଆସଇ ଦନୁଜ ।
ଆହୋ ପ୍ରଚଂଡ଼ ଖଂଡ଼ା ଘେନି ନାରାୟଣୀ
ରକ୍ତବୀର୍ଯ ଉପରେ ଦୁର୍ଦ୍ଦଣ୍ଡ ଭୁଜେ ହାଣି ।
ଶିରେଣ ପଡ଼ିଲା ସେ ବିଜେ କରବାଲ
ରକ୍ତବୀର୍ଯ ଦାନବ ସେ ହୋଇଲା ବେନି ଫାଳ । ୨୫୩୦
ବେନି ପର୍ବତ ଯେହ୍ନେକେ ଆକାଶୁ ଖସି ପଡ଼ି
ମେରୁ ସିଂଘ ଟିଶିକି ପଡ଼ିଲାକ ଝଡ଼ି ।
ରକତବୀର୍ଯ ଧଂସିଲା ଗୋ ଅଭଏ ସ୍ୱର୍ଗବାସୀ
ବୃନ୍ଦାଅର୍କ ଲୋକେ ସେ ଅନେକ ସନ୍ତୋଷି । ୨
ପୃଥିର ଭାର ଗୋ ହୋଇଲାକ ନାଶ
ଦେବତାଏ ଅଚଳନ୍ତେ ବସିଲେ ସ୍ୱର୍ଗବାସ ।

ଈଦି ଦଶ୍ୟ ଦେବେ ସେ କରନ୍ତ ଅନେକ ସ୍ତୁତ
ନମୋ ନାରାୟଣୀ ଗୋ ଅନାଦି ଶକତି ।
ତୁ ଦେବୀ ଅବତାର ବ୍ରହ୍ମା ବିଷ୍ଣୁ ଯେନ
ଚକ୍ରବର୍ତ୍ତି ସଂହାରୀ ଗୋ ଅଭୟ କାନ୍ତାଙ୍କ ।
ଦିବ୍ୟ ଅବତାର ଗୋ ଶଙ୍ଖ ଚକ୍ର ଧାରୀ
ଗଦା ଗାଣ୍ଡିବ ଗୋ ପ୍ରଶୁ ଅସି ବାଣ ।
ଆହୋ ମୋହ ଶକତି ପ୍ରଶୁ ଫାଶି କୋଣ
କିଞ୍ଚିତ ସମରେ ଯାହାର ନାଶ ଗଲେ ଦାନବ କୃତାନ୍ତ ।
ଦନୁଯ ବଳ ନଶୋଧନ ଗୋ ମତୁଆଳ ନାଟ ଯେତେ
ବଧିଲୁ ଦାନବ ବଳ ମତୁଆଳ ନାଟ ଯେତେ
ଯୋଗିନୀବୃନ୍ଦେ ବାହାର ମତୁଆଳ ନାଟ
ରକତ ମାଂସ ଭୁଞ୍ଜି ମଦୁରସ ନାଟ ନକଟ ।
ଖେଚରୀ ଭୂଚରୀ ଗୋ ଶବଦ କଳି କଳି
ମତୁଆଳ ମାତାଙ୍ଗୀ ଗୋ ମଦରାପାନେ ଖେଳି । ୨୫୪୦ ।
ଜାତ ଅନ୍ତ ମଧ୍ୟେ ଗୋ ଅଦ୍ଭୁତ ଶାନ୍ତ ରୂପୀ
କଙ୍କାଳୀ ବେତାଳୀ ଗୋ ଡାକେଶ୍ୱରୀ ଗଗନ ଚେପି ।
ମେଦନୀ ପୂରିତ ଗୋ କିଳିକିଳା ନାଦେ
ଆକାଶ କମ୍ପିଲା ଗୋ ଡାକ ଡମ୍ବରୁ ଶବଦେ
ରକ୍ତ ବସ୍ତ୍ର ପରିହରଣି ଗୋ ମୁଣ୍ଡ ମାଳା କଣ୍ଠେ
ଚିରଦଶଣୀ ମୁଖୀ ଗୋ ମୋହୋନ ହାସୁଛେ ।
କହନ୍ତେ ନ ସରଇ ଯାହାର ଅନନ୍ତ ମହିମା
ତ୍ରିକୂଟ ଅନ୍ତ କରି ନ ପାରିଲ ବ୍ରହ୍ମା ।
ମୁହିଂ ମାନବ ତାହାକୁ ମୁ କିସ କହିବ ସାମରଥ
ଶରଣେ ଉଦ୍ଧାରଣୀ ଗୋ ନର୍ମଦା ସରସ୍ୱତୀ ।
ଯଜ୍ଞେଶ୍ୱରପୁର ବାସିନୀ ଗୋ ଶ୍ରୀ ସାରୋଳା ଚଣ୍ଡୀ ଦେବୀ
ଧାବେଣ ଖ୍ରବିଲ ନିତ୍ୟେ ସାରୋଳ ଦାସ କବି ।
ଶୁଣ ହେ ଅପୂର୍ବ ରସ ପଞ୍ଚଷ ରାଜା
ଶୁକ ମୁନିଙ୍କ ପାଦେ କଲେ ଛଡ଼ ଅର୍ଘ ପାଦ ପୂଜା ।
ତବ ମୁଖେ ନିର୍ମିତ ଅପୂର୍ବ ରସ ବାଣୀ
ପ୍ରତ୍ୟଗ୍ୟାଂ ସାମରଥା ହୋଇବି ଦୁର୍ଗାର ଚରିତ ଶୁଣି ।
ମୁନି ହେ ଚକ୍ରବର୍ତ୍ତି ସେ ବଧ୍ୟ ହୋଇଲ ସମରେ
ପୁଣି କେବଣ କୃତ୍ୟ ହୋଇଲା କହିବା ମୁନିବରେ ।

ବଦସ୍ୱନ୍ତି ଶୁକ ବ୍ରହ୍ମ ଶୁଣ ପରୀକ୍ଷ ରାଏ
ଦୁର୍ଗାର ଚରିତ୍ର ଶୁଣି ପାପ କରକ୍ଷଏ । ୨୫୫୦ ।
ପଢନ୍ତେ ଶୁଣନ୍ତେଣ ଆପଦ ଦୁଖ ଖଣ୍ଡଇ
ଜରାରୋଗ ମୃତ୍ୟୁ ଖଣ୍ଡଇ ବିପୁଳ ପୁର ମଣ୍ଡଇ ।
ସମରେ ପଡ଼ିଲେ ରକ୍ତବୀର୍ଯ୍ୟ ଦାନବ
ରୋଧିରେ ବୃଷ୍ଟି ଯେ ହୋଇଲେ ସର୍ବଠାବ ।
ଯେତେକ ରୋଧିର ଟୋପା ପଡ଼ିଲାକ ପୃଥି
ଟୋପାକେ ଟେତେକ ସେ ହୋଇଲେ ଉତପତ ।
ଖାଙ୍କର କେଶ ବିକଟ ଲୋହିତ ବର୍ଣ୍ଣ
ପୃଥିବୀ ପୂରିଲ ସେ ପଞ୍ଚ ଯୋଜନ ।
ଗଦା ମୁଦଗର ଯେ ଯାଠୀ ଶକଢ
କୋନ୍ତ ଅସିପତ୍ର ଯେ କୋଦାଳ ଧରିଛନ୍ତି ।
କ୍ରୀଡ଼ନ୍ତି ଗର୍ଜନ୍ତି ରେ ରେ କାର ଶବଦେ
ଦିବ୍ୟ ଅଙ୍ଗ ମୂର୍ଚ୍ଛନା ବିକାଶିଲେ ସର୍ବ ନାଦେ ।
ପୃଥିବୀ ପୂରିଲା ସେ ସଙ୍ଗେ ରକ୍ତବୀର୍ଯ୍ୟ
ସମୋଦ୍ର ପାଏ ସେ ପୂରିଲେ ଦନୁଯ ।
ରକ୍ତଗିରି ଶିଖରେ ଥାଇ ଦୁର୍ଗେ ଦେଲେ ଡାକ
ଧାଅ ଲୋ ମାରଲୋ ବୋଲି ଦିଅନ୍ତି ହାକ ।
ମାର ଲୋ ଦାନବ ବଳ କେମନ୍ତେ ଲୋ ଦେଖ
ସମୋଦ୍ର ପ୍ରାଏକ ଯେ ହୋଇଲେ ଅନେକ ।
ଦୁର୍ଗାର ଆଜ୍ଞା ପାଇ ଚଉଷଠି ଯୋଗିନୀ
ରଣ ରଙ୍ଗ ଯେ କଲେ କଉତୁକେ କାମିନୀ । ୨୫୬୦ ।
ମଧ୍ୟେଣ ଓଷ୍ଟ ଆକାଶେଣ ଦୃଷ୍ଟି
ବିଜଏ ନାରାୟଣୀ ଗଜ ରିପୁ ଛିଠି ।
ବିଶ୍ୱ ରୂପ ବିକାଶି ଯେ ମାରନ୍ତି କରବାଳ
ମୁଣ୍ଡ ଛିଡ଼ି ତାହାର ପଡଇ ବକସ୍ଥଳ ।
ଛିଡ଼ିଲା ଯେତେ ରକତ ପଡଇ ପୃଥି
ପୁଣ ପୁଣ ରକତରୁ ହୁଅନ୍ତି ଉତପତି ।
ପୃଥିବୀ ପୂରିଲ ରକ୍ତବୀର୍ଯ୍ୟ ମଏ
ଆକାଶରେ ଥାଇ ଯେ ବୋଇଲେ ଦେବତାଏ ।
ଖଡଗେ ହାଣନ୍ତେ ତଳେ ପଡଇ ଶିର
ରୁଧିରୁ ଜାତ ହୋଇଅଛନ୍ତି ଅସୁର ।

ଯେମନ୍ତେକି ମୁଣ୍ଡମାନ ନ ପଡ଼ଇ ତଳେ
ତେସନକ ଉପାୟ ଗୋ କଏ ବୁଝିବଟେ ।
ଦେବୀମାନେ ଶୁଣିଲେ ଯେ ଦେବଙ୍କ ଉତ୍ତର
ଯୁଧେ ଆରତ ହୋଇ ସେ ପାତଲେ ଖପର
ମହା ଭୟଙ୍କର ମୂର୍ତ୍ତି ରଣେ କାମାକ୍ଷୀ
ରକ୍ତ ମାଂସ ଅସ୍ଥି ନ ଥୋଅନ୍ତ ଭକ୍ଷି ।
ପୁଣ ଉପୁଜଇ ସେ ନାଚନ୍ତି ରକ୍ତବୀର୍ଯ
ମାରିଲେ ନ ମରଇ ସେ ଦୁଷ୍ଟ ଦନୁଜ ।
ପଞ୍ଚ ଯୋଜନ ସ୍ଥଳୀ ସମସ୍ତେ ରକ୍ତବୀର୍ଯ
ଆକାଶେ ମୃଧୂନା ନାଚୁଅଛନ୍ତି ଦନୁଜ ।
ଦେଖିଣ ବିମୁଖ ଯେ ହୋଇଲେ ମହାମାଏ
ଆକାଶେଣ ଥାଇ ତହୁଂ ବୋଇଲେ ଦେବତାଏ ।
ରୁଧିର ଟୋପାଏ ନ ପଡ଼ୁ ମାତ୍ର ପୃଥୀ
କ୍ଷିତିରେ ପଡ଼ନ୍ତେଣ ପୁଣ ହୁଅନ୍ତି ଉତପତ୍ତି ୨୫୬୦ ।
କୋପେଣ କାଳାନଳ ତେଜେଣ ମହାଭୟ
ସନ୍ଧେୟ ରଚିଲେ ଦେବୀ ତ୍ରିପୁରା ।
ଲକ୍ଷେକ ଡାକେଣୀ ସେ ଶ୍ରୋଣେହା ମୂରତ
ଗୁହୁଂ ଏହାନ୍ତ ଦେବୀ କଲେ ଉତପତ୍ତି ।
ଯାଅ ଲୋ ତୁମ୍ଭେ ହୁଅ ମହାଗାମୀ
ରୁଧିର ପଡ଼ନ୍ତେଣ ଲିହ ଯାଇଂ ଭୂ
ଦୁର୍ଗାର ବଚନ ସେ ଅଲଙ୍ଘିତ ଶିର
ଆବର ବଣେଷେ ଶ୍ରୋଣେହା ଅବତାର ।
ପୃଥିବୀ ଆଚ୍ଛେର୍ଷି ଦେଲେ ଘୋର ରଙ୍ଗ
ଅସୁର ବଳ ସଇନ୍ୟ ପଡ଼ିଲେ ଦେବୀ ମାଡ଼ି ।
ଚଉଷଠି ଯୋଗ୍ନୀ ଯାଉଂଛନ୍ତି ହାଣି
ଲେଇ ଖପର ଦେବୀ ପଡ଼ନ୍ତି ବେଗେ ଆଣି
ଯିସ ରକ୍ତ ପଡ଼ଇ ଖପରେ ତାହା ଧରି
ପିଅନ୍ତି ରକ୍ତ ଯେ ଅମିଅ ପାନ କରି ।
ରକ୍ତବୀର୍ଯ ସଇନ୍ୟ ନଦାଘ ବଳ ପ୍ରାଏ
ତହୁଂ ସେ ଅନଳ ଅଟନ୍ତି ମହାମାଏ ।
କହନ୍ତେ ନଯରଇ ବଚନ ଗହନ
ମାରିଲେ ନ ମରଇ ସେ ରକ୍ତବୀର୍ଯ୍ୟ ସୈନ୍ୟ ।

ଖଡ଼୍ଗେ ମାରନ୍ତି ସେ ଚଉଷଠି ଯୋଗିନୀ
ରକ୍ତ ଧରନ୍ତି ସେ ଖପରେ ପିଶାଚୁଣୀ ।
ଶ୍ରୋଣେହା ମୂରଛ ସେ ଲକ୍ଷେକ ଡାକେଣୀ
ଜୀଭନ୍ତି ଯେତେଣ ସେ ଲୁହନ୍ତି ଧରଣୀ ।
ଏମନ୍ତେ ଦନୁଜ ବଳ ନ ସରଇ ମାରୁ
ଦେବୀ ଗଣେ ତହିଁ ଦେବସ ଯୁଧ୍ୟ କରୁ ।
କ୍ଷଣେକ ହୁଂ ଅପର ହୋଇଲା ମହାଘୋର ଯୁଦ୍ଧ
ଲକ୍ଷେ କୋଟି ମୂର୍ଚ୍ଛିତ ଅଗଣିତା ପରମ୍ପୂଧ ।
କ୍ଷଣାଣିକେ କ୍ଷେଉଣି ବଳ ମଧ୍ୟାଂଶ ହୋଇଲକ ଗଣିତା
ରକ୍ତବୀର୍ଯ୍ୟ ବଳ ସଂଖ୍ୟା ହୋଇଲା ଲେଖନ୍ତା ।
ଦୁର୍ଗା ଦେଖନ୍ତେ ଦାନବ ବଳ ହୋଇଲେକ ଲେଖା
ଖଡ଼୍ଗ ସଂଗ୍ରମେଣ ଜାତ ହୋଇଲେ କାଳିକା ।
ଊର୍ଦ୍ଧ୍ୱବାହୁ ଖାଙ୍କର କେଶ ଅନ୍ଧାର ଘୋରରୂପ
ନାରାୟଣୀ ଖଡ଼୍ଗେ ହୋଇଲେ ସେ ଗୋପ୍ୟ ।
ଖଡ଼୍ଗ ହାଣନ୍ତେ କାଳିକା ରକ୍ତ ଭକ୍ଷି
ଅସ୍ଥି ଫୁଟି ମାଂସ ନ ରହଇ କିଛୁ ।
ଦୁର୍ଗାର ବର ପାଇ ସେ ଅନାଦି ଶକ୍ତି
ଧାଇଁଲେ ନାରାୟଣୀ ସେ ହୋଇଣ ଗଗନ ଗଢ ।
ଚାମୁଣ୍ଡା କାଳିକା କାଳୀ ବେତାଳୀ
ମାହେଶ୍ୱରୀ ମହାମାୟା ଡାକେଶ୍ୱରୀ ଭଦ୍ରକାଳୀ ।
ଦୁର୍ଗାର ବାରତା ଏସନ ଯନ୍ତ୍ରଂ ଶୁଣି
ମାଡ଼ି ପଡ଼ିଲେ ସେ ଶ୍ରୋଣେହା ମୂରଛ ଧଣ ପିଶାଚୁଣୀ ।
ରଣ ରଙ୍ଗ ଧନ୍ଦୋଳ ସେ ଅଖଇ ଡାକେଶ୍ୱରୀ
ଭୈରବୀ ଅଭୟା ସେ ନିର୍ଭୟା ମାହେଶ୍ୱରୀ ।
ମତୋଆଲ ନାଚେ ସେ ରକ୍ତ ମାଂସ ଭକ୍ଷି
ଖାଇଲେ ପେଟ ନ ପୂରଇ ସେ ଥାଇ ପେଟ ଦ୍ୱି ।
କ୍ଷୁଧାର ପେଟ ସେ ଯୋଜନେକ ବାହୁ
ତୁଣ୍ଡ ବିସ୍ତାର ଯେହ୍ନେ ଚନ୍ଦ୍ରକୁ ଗିଳଇ ରାହୁ ।
ଦଶ ବଂଶ ଡଶଣ ସେ ଧରଣ ଦଶଣ୍ଡି
କର ପଲ୍ଲବ ସେ କରନ୍ତି ବେନି ଖଣ୍ଡି ।
ଖଣ୍ଡି ଖଣ୍ଡି କରି ନଅନ୍ତି କାମୋଡ଼ି
ଶାଙ୍କର କେଶ ନେଇ ରକତ କଉଡ଼ି ।

ଝେମ୍ପ ଝେମ୍ପ ହାସ୍ୟ ସେ ମତୁଆଲ ନାଚ ଖଣ୍ଡି
ହୁଂ ହୁଂ ଗରଜନ କୁହୁ କୁହୁ ରଡ଼ି ।
ରଟ ରଟ ମଟ ମଟ ବାଜନ୍ତି ହସ୍ତ ଖଂଡ଼ା
ରେ ରେ କାର ଶବଦେ ତ କାନ୍ତ ଘୃମଂଡ଼ା ।
ଅମାପତ ମାତେଙ୍ଗୀ କିଲକିଲା ଶବଦେ ବ୍ରଢ
ନାଚ ଡମ୍ବୁର ସେ ଖେମଣ୍ଡା ଗୀତ ଗାନ୍ତି ।
ଭରହ ରସ କଲା ସେ ଅଷ୍ଟବକ୍ର ନାଚ
ବିକଟ ବାଡ଼ି କଙ୍କାଳ ଅକଳାତ ସମୋଦ୍ର ପେଟ ।
ମୁଂଡ଼ ମୋଡ଼ି ଧର ଯେ କାମୋଡ଼ନ୍ତି ହିଆ
ଗିଳନ୍ତି ଗୋଡ଼ କାହାର ଲମ୍ବିଥାଇ ବାହା । ୬୦୦ ।
ଶରୀର ଯାକ ଗିଳାଣ ଦିଶୁଥାଇଂ ମୁଣ୍ଡି
ଗର୍ଭ ବାହାର ହୋଇ ଲମ୍ବୁଥାଇ ଝୁଂଡ଼ ।
ମଧ୍ୟ କଙ୍କାଳ ଖଂଡ଼େ ଦନ୍ତେ ଟାଇ ଧରି
ମୁଂଡ଼ ପେଟ କେ ଗୋଡ଼ ଦୁଇ ବାହାର କରି ।
ମୁଂଡ ମୋଡ଼ଣ କେ କାଖେ ଘୃମି
ରୋଧିର ବଦନ କେ ଅନ୍ଧାର ଘୋର ରୂପୀ ।
ହୋ ବୁଧଜନେ ଖଣେ ଖଣକେ ସେ ଶତେ ରୂପ ଧରନ୍ତି ଯେବଣ ନିଦ୍ଦା ।
ମୁହିଂ ତାହା କେତେ ଲେଖନ କରିବି ।
ଅଭଏ କାନ୍ତାସ୍ୱେମୀ ସେ କହିଲେ ଯାହା ମୋତେ
ଅନ୍ତ ହୋଇବ କି ତେସେ ଲେଖନ କରନ୍ତେ ।
ଅପାର ସାଗର ସେ ଲେଙ୍ଘନ କଲେ ନ ସରଇ
ଶୁଣନ୍ତେ ଲକ୍ଷେ ଜନ୍ମର ପାତେକ ହରଇ ।
ଚଣ୍ଡିକା ଶାହାସ୍ତ୍ର ଲଏ କର ବାବୁ
ଧର୍ମ ଅର୍ଥ କାମ ମୋକ୍ଷ ପ୍ରାପତ ଅଚ୍ଛୁ ସବୁ ।
ଧନ ସନ୍ତାନ ବର୍ଦ୍ଧିତ ଦିଅନ୍ତି ମହାମାଏ
ବନ୍ଦଯ୍ନନ୍ତି ସାରେଳ ଦାସ କରନ୍ତି ଜଏ ଜଏ ।
ଆହୋ ପଣ୍ଡିତ ଯେବଣ ଭୁବନେ ପଢ଼ିବ ଏହି ଶାସ୍ତ୍ର ଶୋଚି
ଜରା ରୋଗ ନ ଲାଗିବ ଅମୃତ ହୋଇବ ବୃଷ୍ଟି ।

—o—

ଏଥୁ ଅନନ୍ତରେ ରକ୍ତବୀର୍ଯ୍ୟର କଥା
ଢନ ଗଜ ଢନ ରବସ ଅଂତେ ନୁହଇ ସମର କହଂଛା । ୬୧୦

ଏହା ଶୁଣି ନୃପତି ପରୀକ୍ଷ ବୋଇଲା
ବଡ଼ ଦୁଲଭ ମୁନି ହେ ନାହିଁତ ଶୁଣିଲା ।
ବୋଇଲ ଯେ ମହାଅସୁର ସନ୍ୟ କଳତ ନ ପାରି
କେତେଟା ରକ୍ତବୀର୍ଯ ଗଣି ଲେଖିତ ନପାରି ।
ମୁନି ହେ କାହାକୁ ସେବା କରି ଉପୁଜଇ ରକ୍ତବୀର୍ଯ
ରୁଧିର ମହାକେ କମ୍ପା ଉପୁଜଇ ଶତେ ଶତେ ଦନୁଜ
ଏହା ମୋତେ ସଂକ୍ଷେପି କହିବା ବ୍ୟାସ ଦେବଙ୍କର ଶିଷ୍ୟ
ମନ ଭ୍ରାନ୍ତ ଫିଟୁ ଶୁଣିଣ ହରିବଂଶ ।
ରାଜାଙ୍କର ବଚନେ ସେ ପରାଶରଙ୍କର ନାତି
ବ୍ୟାସଙ୍କୁ ଲଏ କଲେ ସେ ଶୁକ ମହାଯତି ।
ବ୍ୟାସଙ୍କର ପରସନେ କରି ସବୁ ହୋଏ ଦୃଢ଼
ଯେବଣ ମହାତମ କହିଲେ ଭୂତ ଭବିଷ ।
ଶୁକମୁନି କହିଲେ ସତ୍ୟଯୁଗର ଆଦ୍ୟ କଥା
ଶୁଣ ପରୀକ୍ଷ ବିଷ୍ଣୁ ପୁରାଣ ଆଦ୍ୟ ଯଥା ।
ସବୁକାଳେ ଦଇତେ ବିଷ୍ଣୁ ଭଏ କରି
ଈଶ୍ୱର ବ୍ରହ୍ମାଙ୍କୁ ଯାବତ କାଳେ ତପ କରି ।
ଅନେକ କାଳ ସେ ତପକଲାକ ପିତାଙ୍କୁ
ନବ ସହସ୍ର ବରଷ ଜପିଲା ପିତାଙ୍କୁ ।
ଠିଆଲେ ପ୍ରସନ ହୋଇଲେ ବିରଞ୍ଚି
ବର ମାଗ ରକ୍ତବୀର୍ଯ ଯହିଁକି ମନ ବାଞ୍ଛା । ୨୬୨୦ ।
ରକ୍ତବୀର୍ଯ ବୋଇଲା ବିଷ୍ଣୁ ଭଏ ସିଦ୍ଧ
ବିଷ୍ଣୁର ଚକ୍ରରେ କେବେ ହେଁ ନୋହିବି ମୁ ବଧ
ବଜ୍ରରେ ନର୍ଜିତ ହୋଇବ ମୋର କାଏ
ଦେବ ଶସ୍ତ୍ର ମାନଙ୍କରେ ଦେବ ନୋହିବି ମୁ କ୍ଷଏ ।
ଅଗ୍ନିରେ ନ ପୋଡ଼ିବ ଜଳରେ ନ ବୁଡ଼ିବ
ଦେବଙ୍କର ଶାପ୍ୟ ନ ପଡ଼ିବ ଭସ୍ମଇ ନୋହିବ ।
ତ୍ରୈଲୋକ୍ୟେ ନିର୍ଜୀବ ହୋଇବ ମୋର ପିଣ୍ଡ
ଚନ୍ଦ୍ର ସୂର୍ଯ ଜିଣିମି ନ ପଡ଼ିବ କାଳଦଣ୍ଡ ।
ଆରେକ କଥାଏ ମାଗଇ ଦେବ ତୋତେ
କାଳେ ହେଁ ନ ମରିବି ମୁ ପୁରୁଷଙ୍କର ହାତେ ।
ମୋହୋର ରୁଧିର ଯେବେ ପଡ଼ିବାକ କ୍ଷିତି
ମହାକେ ଶତେ ଗୋଟା ଦେବ ହୋଇବି ଉତପତ୍ତି ।

ସ୍ୱାମୀ ମୋହୋର ରକ୍ତ ଦେବ ମୋତେ ହୋଇବାକ ସାଧ
ଅଦାବଧେ ମୋହୋର ଏକେ ଅନେକ ହୋଇବାକ ତେଜ ।
ସତ୍ୟ ମନାଇ ମେ ମାଗିଅଛୁ ଯାହା
ଭୋଳେ ବର ସେ ଦେଇ ଅଛନ୍ତି ପିତା ତାହା ।
ବ୍ରହ୍ମାଙ୍କୁ ସତ୍ୟ ମନାଇ ସେ ମାଗିଅଛୁ ପୂର୍ବେ
ସେ ବର ଅନ୍ୟଥା କି ହୋଇବ କି ଏବେ ।
ଶୁଣିଣ ସନ୍ତୋଷ ପକ୍ଷାକ୍ଷ ମାହାରାଜା
ଶୁକମୁନି ପାଦ ତଳେ କଲେକ ଅନେକ ପୂଜା । ୨୬୬୦ ।
ପକ୍ଷାକ୍ଷେ ବୋଇଲେ ମୁନି ହେ ସାଧୁ ସାଧୁ ମହିମା
ଏହେନିକ ନରକୁଳ ଅଟୁ ମହାତମା ।
ଏମନ୍ତେ ରକ୍ତବୀର୍ଯ ମାରୁ ଦିନ ସାତ ଦିନ ଦିବସ ଗଲା
ଅଷ୍ଟ ଉତ୍ତର ଶତେ ଶତେ ଜନ୍ମ ରକ୍ତବୀର୍ଯ ହୋଇଲା ।
ଦୁର୍ଗା ବୋଇଲେ ଶୁଣ ଗୋ କାତ୍ୟାୟନୀ
ଜଣେ ଜଣେ ମାଡ଼ି ବସ ରକ୍ତବୀର୍ଯ ହୋଇ ଦାନ ।
ଡାକେଣୀ ମୂର୍ତ୍ତିଏ ଅଷ୍ଟଉତ୍ତର ଶତେକ ପିଶୁଣୀ
ଏମାନେ ହେ ହୋଇଲେ ଅସୁରକୁ ବାହାନି ।
ଶୁଣ ହୋ ପକ୍ଷାକ୍ଷ ଶୁକମୁନି ବୋଇଲ
ଦୁସହ ସମରେ ରକ୍ତବୀର୍ଯ ବଧ ହୋବଲା ।
ରକ୍ତବୀର୍ଯ ବଧ୍ୟ ଯେ ପଢନ୍ତି ଶୁଣନ୍ତି
ନାଶ କରିବାକ ସେ ସମର ଶକତ ।
ଅଶୀଲକ୍ଷ ଯୋଧ୍ୟା ଘେନି ସେ ଅସୁର ବୀରଦଣ୍ଡ
ନାରାୟଣୀ ଉପରକୁ ସେ ଧାଇଲା ପାପିଷ୍ଠ ।
ମାର ଲେ ବୋଲି ଯେ ଡାକନ୍ତି ନାରାୟଣୀ
ଆଠଶାକ ବେଢିଲେ ଯେ ଶ୍ରୋଣେହ୍ରା ଯୁଥ ଜାଣି ।
ଏକ ଦାଇତକେ ଶତେକ ପିଶୁଣୀ
ଅସ୍ଥି ଚର୍ମ ମାଂସ ସମସ୍ତ ଅନ୍ଧଷଣ କରି ।
ମେଖଳା ମହାଖଳା ଡାଙ୍କେଣୀ ଡାକେଶ୍ୱରୀ
ଖାଅ ଲେ ଖାଅ ଲେ ଅସୁର ବଳ ବେଢ଼ି । ୨୬୭୦ ।
ପାଶୁ ପରଶୁ କୋଠାର ଅସିଚର୍ମ କାଢ
ମାରଣ ଅସୁରଙ୍କ ଶରୀର କକୋଡ଼ ।
ଧାତାର ବରେଣ ବଜ୍ର ତାହାଙ୍କର କାଏ
ଦେବୀଙ୍କର ଲାଖ ଲଗନ୍ତେ ହୋଇଲା ଲବଣ ମାଂସ ପ୍ରାଏ ।

ଅସୁର ମାରନ୍ତି ଯେ ଛେଲ ଚନ୍ଦ ଭୂଷଣ୍ଡି
ଦେବୀଙ୍କର ଶସ୍ତ୍ରରେ ଯେ ପଡ଼ି ହୋଅନ୍ତି ଖଣ୍ଡି ଖଣ୍ଡି ।
ଅମାପତ ଦାନବ ସେ ନ ଘୁଞ୍ଚନ୍ତି ରଣେ
ପୁଣି ପୁଣି ନାରାଚ ବିନ୍ଧନ୍ତି ଜଣେ ଜଣେ ।
ଜଣେ ପଡ଼ିଲେ ଦଶ ବିଂଶ ଉଠି
ମାରନ୍ତି ଗୁରୁଜ ଲଙ୍ଗିଆ କୋନ୍ତ ଯାଠି
ଦେବୀମାନେ ଜାତ ଯେ ଶୂନ୍ୟ ଶବଦ ସେନାହା
ସେ କମ୍ପା ଶହସ୍ର ଘାତକୁ ଯିବେ ଗଣନା ।
ଜାଉଂ ଜାଉଂ ଗିଳୁ ଅଛନ୍ତି ଅସୁରଙ୍କୁ
ଏମନ୍ତେ ହେ ରକ୍ତ ମାଂସ ନ ଅଣ୍ଟିଲା ତାହାଙ୍କୁ ।
ମେଦ ମେଦା ମାଏଂସ ଅଖାଦ ଯାର ଖାଦ
ଆଦ୍ଧ ଅନାଦ୍ଧ ସମାର୍ଗେ ସମସ୍ତ ପାରଇ ଯେ ବୋଧ ।
ଘୋର ରୂପ ବିକଟାଳ ଆକାଶକୁ ଦାଢ଼
ବେକ ପାଟି ଗ୍ରସନ୍ତେଣ ସମସ୍ତ ହୋଅଇ ଚୂଡ଼ ।
ଲହ ଲହ ଜିଭ ସିନ୍ଦୂରେଣ ମୁଖ ମଣ୍ଡି
ସମସ୍ତ ଯୁଧ୍ୟକୁ ସେ ଏକା ଦେବୀ ଚଣ୍ଡୀ । ୧୬୫୦ ।
ପିଶୃଣୀ ବୃନ୍ଦ ଯେ ଉଠିଲେ ଗଲଗାଜି
ଭଏଣ ଦାନେବ ବଳ ପଳାଇଲେ ଭଜି ।
ସନ୍ୟ ପଳାବନ୍ତେ ରହିଲେ ବୀରଘଣ୍ଟ
ଲକ୍ଷେକ ନାରାଚ ସେ ବିନ୍ଧିଲା ଦ୍ରପିଷ୍ଟ ।
ନାରାୟଣୀ ବୋଇଲେ ଶୁଣ ଗୋ ଭଦ୍ରକାଳୀ
ବୀରଘଣ୍ଟର ତୁଲେ ତୋହୋର ଏ ଯୁଦ୍ଧ୍ୟ ପାଳି ।
ଚାମଣ୍ଡା ଚର୍ଚ୍ଚିକା ଅମ୍ବିକା ଉଗ୍ରତାରା
କଙ୍କାଳୀ ବେତାଳୀ ଅବର ଉଗ୍ରତାରା ।
ଏତେକ ଦେବୀ ଯେ ଭଦ୍ରକାଳୀର ତୁଲେ
କୃତାନ୍ତେକ ବଳକୁ ସେ ତୁଶତେ ବେଢ଼ିଲେ ।
ଯେସନକେ କଦଳୀ ବନ ଛେଦଇ କୃପାଣେ
କହୁ କହୁ ହାଣିଲେ ସେ ଦେବୀ ରକତ ଭୂଷଣେ ।
ସହସ୍ରେକ ଯୋଧ୍ୟା ତୁଲେ ବୀରଘଣ୍ଟ
ଭଦ୍ରକାଳୀର ତୁଲେ ଯୁଧ୍ୟ କରଇ ଦ୍ରପିଷ୍ଟ ।
ସହସ୍ରେକ ଦାନେବ ଲକ୍ଷେକ ଯେ ଶର ବନ୍ଧ
କୋଟିଏ ନାଶଯେ ଭଦ୍ରକାଳୀ ତାହା ଛେଦ ।

ମୃତୁପିଣ୍ଡ ବାହାନେ ଯେ ଧାଇଁଲେ ଭଦ୍ରକାଳୀ
ଦଇତ୍ୟ ବୀର ଘଣ୍ଟ ତୁଲେ ତାହା ପ୍ରହାର କଲେ ତୋଳି
ମହାମନ୍ତ୍ର ଛନ୍ଦେ ଚଢିଥିଲା ବୀର ଘଣ୍ଟି
ଭଦ୍ରକାଳୀର ପ୍ରହାରନ୍ତେ ପଡିଲାକ ନେଉଟି ॥ ୬୬୦
ଧାଡକାରେ ଅଇଲା ଯେ ଅସୁର ସାମରଥ
ଡ଼େଇ ଉଠିଲା ସେ ଯାଇଁ ଲେହଶର ରଥ
ରଥେ ବସି ପଞ୍ଚ ସହସ୍ର ନାରାଯ ମାର ।
ସହସ୍ରେ ନାରାଯେ ତାହା ଜିପୁରା ନବାର ।
ଅସୁର ପ୍ରବଳ ଦେଖିଣ ଗୃମଣ୍ଡା
ରୋଷେ ବୁଲାଇ ସେ ପିଟିଲାକ ଝଣ୍ଡା
ଏସନେକେ ଗଗନୁ ପଡ଼ଇ ବଜ୍ରତାଳ
ବୀରଘଣ୍ଟ ରଥ ସେ ହୋଇଲା ବେନି ଫାଳ
ରଥ ଭଙ୍ଗତେ ସେ ହୋଇଲା ଭୂମିଗତ
ଚଉଷଠି ଯୋଗିନୀ ସେ ଧାଇଁଲେ ତତ୍‌କ୍ଷଣାନ୍ତ
ବାମ ଭୁଜେ ଧଇଲେ ଦେବୀ ଯେ ତପୁର
ଡ଼ାହାଣ ଭୁଜେ ଆକେଷି ଧଇଲେ ଉଗ୍ରତାରା ।
ଦ୍ୱିଟ ବନ୍ଧ ଧଇଲା ଯେ ଦେବୀ ବାର୍ଣେଳୀ
ଝର୍ଣ୍ଣି ଝର୍ଣ୍ଣି କର ବଦାଶଲା ଭଦ୍ରକାଳୀ ।
ଦୁଇ ଭୁଜ ଉପାଡ଼ିଲେ ଦୁଇଚଣ୍ଡୀ
ମୁଣ୍ଡ ଚରଣ ଘେନି ଗଲେ ରଖିଲେ ମାନ ଗଣ୍ଡି
ସେ ଗଣ୍ଡି ଫିଙ୍ଗି ଦେଲେ ଅସୁର ବଳ ଉପରେ
ଲକ୍ଷ କୋଟି ଅନ୍ତରେ ପଡ଼ିଲେ ଅସୁରେ ।
ବେନି ଚରଣ ବେନି ଭୁଜ ହୋଇଲା ବପକ୍ଷ
ପିଟନ୍ତେ ସେ ଦାନବେ ପଡ଼ିଲେ ଲକ୍ଷ ଲକ୍ଷ । ୬୭୦
ତଇଲୋକ୍ୟ ଜିଣିମାକୁ ଯେବଣ ବୀରଘଣ୍ଟ
ଇନ୍ଦ୍ର ଉପରେ ଇନ୍ଦ୍ର ବୋଲଇ ଦୃପିଷ୍ଟ ।
ସେତେ ବଡ ଦୃପିଷ୍ଟ ପଡ଼ିଲାକ ରଣେ
ଭାଜିଲା ଅସୁର ବଳ ନ ରହନ୍ତି ଜଣେ ।
ଅସୁର ଭାଗନ୍ତେ ଧାଇଁଲେ ପିଙ୍ଗଳୀ
ଗୋଡ଼ାଇ ଅସୁରନ୍ତ ସେ ଯାଉଛନ୍ତି ହାଣି ।
ଶ୍ରୋଣିହ୍ୱା ଦେବୀମାନେ ତୋଡ଼ାଉଛନ୍ତି କଣ୍ଠ
ମେଦ ମେଦା ମାଂସ ସମସ୍ତ ଭକ୍ଷି ଯାନ୍ତି ।

ନବ କୋଣ ପରଯନ୍ତେ ଛାଏଡ଼ା ପଡ଼ିଲା
ଗ୍ରାମୁରେ ଏକ ଜଣେକ କେହ୍ବ ନ ରହିଲା ।
ଦଶ ବଂଶ ପଞ୍ଚାଶତ ଧର ଗିଳନ୍ତୁ ଅବନୀଲେ
ମୃତ ପିଣ୍ଡ ଗୋଟାଏ ନ ପଡ଼ନ୍ତୁ ତଳେ ।
ରୋଧିର ମନ୍ଦାଏ ନ ପଡ଼ିଲା ପୃଥୀ
ପଞ୍ଚ ସେନାପତି ମୂଳେ ଏତେକ ହୋଇଲେ ବିନେଶ୍ୟତି
ପର୍ବତ ଉପରେ ଉଠିଲେ କାଳ ବିକାଳ ଦୂତେ
ପଳାଇ ପଶିଲେ ଯାଇ ମଷାଂସୁରର ଅଗ୍ରତେ ।
ଶୁଣ ଦେବ ସାବଧାନେ ଅସୁର କୁଳ ଶ୍ରେଷ୍ଠ
ସମର କରି ନ ଜାଣିଲେ ତୋହୋର ଦଳ ଥାଠ ।
ରକ୍ତ ବୀର୍ଯ୍ୟ କାନ୍ତମାଳା ବିଡ଼ୁଲାକ୍ଷ ବୀରଘଣ୍ଟ କାଳଦଂଢ଼
ଚର୍ମ ମଂାସ ଅସ୍ଥି ନ ରହିଲା ପିଂଡ଼ । ୬୮
ଏସନକ ବାରତା ସେ ଶୁଣିଣ ଅସୁର କୁଳ ରାଏ
ଜଗତରୁ ପଡ଼ିଲେ ସେ ବଜ୍ରଘାତ ପ୍ରାଏ ।
ତୋଳି ଧଇଲେ ସେ କାଳ ଦମନ
ମୁଖେ ଜଳ ସିଞ୍ଚି ସେ ବିଞ୍ଚନ୍ତି ପବନ ।
ସାଷ୍ଟମ ହୋଇକରି ମଷାଂସୁର ବସଇ
ସନ୍ଦେହ କାଳ ପ୍ରାଏ ନିଶ୍ୱାସ ଛାଡ଼ଇ ଘନ ଘନଇ ।
ଶଯ୍ୟାରେ ସିଞ୍ଚିଲେ ସେ ଶୀତଳ ଜଳ ପାଣି
ଆସ୍ଥାନ ଉପରେ ସେ ବସାଇଲେ ଆଣି ।
ଆସ୍ଥାନ ତଳେ ସେ ପୂରିତ ଗହଳ
ମୀର୍ ଅମୀର୍ ଜର୍ ଖାସ ମଲିକ ସକଳ ।
ଦୁଇ ଆଣ୍ଠୁ ପାଡ଼ି ଭୂମିରେ କର ହାଣି
ଆପଣାର ଲଲାଟେ ତାଡ଼ଇ ବେନି ପାଣି ।
ଉତପତ୍ତି ହୋଇଲେ ରାହୁର ଅଂଶ ଘେନି
କୁଳ ଗୋତ୍ର କ୍ଷେତ୍ର ପିତା କଶ୍ୟପ ମହାମୁନି ।
ଦକ୍ଷର ନନ୍ଦନୀ ସିଂହିକା ଆଦ୍ୟପାଟ
ଇନ୍ଦ୍ର ବିବାଦ କରି ସେ ହୋଇଲେ ଦ୍ରପିଷ୍ଟ ।

---

୧ । (ଖ) ମୀର ଉର୍ମିଲି ଯାର୍ ଖାସ ମଲିକ ସକଳ
(ଗ) ଶିର୍ ଅନୁର୍ ଦୈତ୍ୟ ରାସାମଣି ସକଳ ।
(ଘ) ମିର୍ ଉର୍ମିଲା ଏମାନେ ବସିଲେ ସକଳ ।

ଧୂର୍ତ୍ତୀ ବିପକ୍ଷ ସେ ହୋଇଲେ ଚନ୍ଦ୍ର ସୂର୍ଯ୍ୟ
ଜମ୍ଭୁ ଦୈତ୍ୟ ବଧ କରି ମହା ଦାନବ ରାଜ ।
ତେଣୁ କରି ଘେନ ଲୋଡ଼ୁ ଆମ୍ଭେ ଅମର ସ୍ଥାନ
ତାହାଙ୍କ ଏମାନ ହୋଇଛୁ ବର୍ତ୍ତମାନ । ୨୬୯୦
ଅମର ପଦକୁ ଯେହ୍ନେ କର ଇଚ୍ଛା
କାହିଁ କଦର୍ଥନା କର ଆମ୍ଭେ ମନ ବାଞ୍ଛା ।
ଅମର ବର ପାଇ ଆମ୍ଭେ ହୋଉ ବଡ ଦୃଷ୍ଟ
ଅସୁର କୁଳକୁ ହେ କାଳ କୃତାନ୍ତକ ହୋଅଇ ସବୁଙ୍କର ନଷ୍ଟ ।
ଯମର କାଳ ଦଣ୍ଡେ ନାହିଁ ଆମ୍ଭର ମୃତ୍ୟୁ
ଏତେ ବଂଶ ବୃଦ୍ଧିଲା ନାରାୟଣେର ହେତୁ ।
ଅନେକ ଘୋର ତପ କଲି ଯେ ବ୍ରହ୍ମାଙ୍କୁ
ବିଷ୍ଣୁ ଚକ୍ରେ ବଧ୍ୟ ନୋହିବୁ ବର ମାଗିଲୁ ପିତାଙ୍କୁ ।
ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ସହିତେ
କାଳିକାଳ ଅନଳ ନ ଲାଗିବ ମୋତେ ।
ପ୍ରଳୟ କାଳରେ ମୁହିଁ ନୋହିବଇ ବଧ୍ୟ
ତ୍ରୈଲୋକ୍ୟରେ ମୁହିଁ ନୋହିବଇ ସାଧ୍ୟ ।
ଏତେ ବଡ ତପ ମୋର ନିଷ୍ଫଳ ହୋଇଲା
ସଖିଜନଙ୍କର ମଧ୍ୟେ ମହିଷାସୁର କହିଲା ।
ଆହେ ଅନେକ ମନ୍ତ୍ରୀ ଯେ ମହିଷାସୁରର ଅଛି
କର ଦୁଇ ଯୋଡ଼ି ସେ ରାଜାଙ୍କଇ ପୁଚ୍ଛି ।
ଏତେ ବଡ଼ ସମ୍ପଦ ତେ ହୋର ହରାଇଂ ହାନ୍ଦେ
ଦେବ ସମ୍ପଦ ତୋହର ହରାଇଲେ କୁଣ୍ଠ ଛନ୍ଦେ ।
ସ୍ତ୍ରିଗି କୁଣ୍ଠକୁ ଯେ ବିଶ୍ୱାସ କଲୁ ରାଜନ ।
କର୍ମେ ଅବଶ୍ୟ ଫଳିଲା କର୍ମର ଲେଖନ । ୨୭୦୦ ।

## ବୈଲୋଚନ ଚରିତ

**ଆହେ** ବଇଲୋଚନ ନାମେ ଏକଇ ନୃପତି
ବଡାଇ ଦ୍ରପିଷ୍ଟ ରାଜା ତନପୁରେ ବିଖ୍ୟାତ ।
ଅନେକ ତପ ଯେ କଲା ପଦ୍ମଯୋନି
ଏକ ଲକ୍ଷ ତପ କଲା ବରଷ ସହସ୍ର ଦିନ ।
ପ୍ରସନ୍ନେ ବର ଯେ ଯାଚଇ ଦେବବର
ବଇଲୋଚନ ବୋଇଲା ମୁ ହୋଇବି ଅମର ।
ନାଗଫାଶ କାଳଫାଶ ଜଳଫାଶ ଦିନ
ଏଣେ ଅବଧ୍ୟ ହୋଅ ବୋଇଲେ ପଦ୍ମଯୋନି ।

ଯୂନ୍ତ୍ରିସେନ ଚକ୍ର ଆବର ଭୁଷଣ୍ଡୀ
ନାନା ଶସ୍ତ୍ର କାଏ ନୋହିବ ମୋର ଖଣ୍ଡି ।
ବ୍ରହ୍ମଶର ନାରାୟଣ ଶର ପଶୁପତି ଶର
ଏମାନେ ହେଁ ନଦହିବେ ଏ ମୋହର ଶରୀର ।
ଅଗ୍ନି ପବନ ହୋଉ କି ବ୍ରହ୍ମା ବିଷ୍ଣୁ ହୋଉ
ପୁରୁଷର ହାଥେ ମୋର କାଏ ବଧ୍ୟ ନୋହୁ ।
ଏଡ଼େ ବଡ଼ ଦୁରାପଦ ବର ମାଗିଲା ବଇଟଲୋଚନ
ତାହାର ଭଏ ଯେ ପଳାଇଲେ ଦେବଲୋକମାନ ।
ଆକୁଳ ହୋଇ ସେ ପଶିଲେ ସିନ୍ଧୁ ଜଳେ
ବିଷ୍ଣୁଙ୍କୁ ପୁହାର କଲେ ସେ ପ୍ରାଣର ବିକଳେ ।
ଦେବଙ୍କର ବିକଳ ଯେ ଦେଖି ଦାମୋଦର
ସ୍ତ୍ରୀ ରୂପେକ ଯେ ହେଲେ ମାୟାଧର । ୨୭୧୦ ।
ରୂପେଣ ତ୍ରୈଲୋକ୍ୟ ମୋହଇ ଯୁବତୀ
ନାମ ବହିଲ ଅଦଭୁତ ମାଳତୀ ।
ମଳୟ ନାମେ ବନେ ସେ ମାଳତୀ ରୂପଧରି
ବଇଲୋଚନ ଅଇଲ ମୃଗୟା ବେଶ କରି ।
କୁମ୍ଭ ମାସ ଶୁକ୍ଳ ପକ୍ଷ ତ୍ରୟୋଦଶୀ ଅର୍କବାର
ପୁଷ୍ୟା ନକ୍ଷତ୍ର ଉପ୍ରରେ ଅଶ୍ଳେଷା ବେଳ ପହର ।
କଉସ୍ତୁଭ ନାମେ କରଣ ଶୁଭ ନାମେଣ ଯୋଗ
ମାଳତୀକି ବଇଲୋଚନ ଭେଟିଲ ବନମାର୍ଗ ।
ଆହୋ ନାରାୟଣ ଯେ ଅଛ ସ୍ତ୍ରୀ ରୂପ ଧରି
ପୁରୁଷ ହୋଇଂକରି କେ ଯିବାକ ଉବୁରି ।
ତ୍ରୈଲୋକ୍ୟ ମୋହୋନୀ ସେ ମୋହୁଅଛୁ ମାଳତୀ
ବଇଲୋଚନକୁ ମୋହଫାଶ ଲଗାଇଲ ଝଟ ।
କାକୁସ୍ଥ ମତ ହୋଇଂ ସେ ବାହୁଡ ବନଏ
ଦନ୍ତରେ ତରଣ ଘେନ ସେ ପ୍ରଣପତ୍ୟ ହୋଇଲା ପାଏ ।
ଆହୋ ପଣ୍ଡାକ୍ଷ ଅନେକ ମନ୍ତ୍ରୀ ଯେ କହିଲ ଏହୁ କଥା
ତୁମ୍ଭଙ୍କୁ ଯେ ହୋଉଅଛୁ ଏସନକ ଅବସ୍ଥା ।
ଯୁବତୀ ମୋହେ ସେ ପଡ଼ିଲେ ଚଣ୍ଡ ମୁଣ୍ଡ ବେନ
ସବୁନ୍ତ ହେଁ ବଧିଲେ ସେ ମୋହଫାଶ ଘେନ ।
ସ୍ୱେ ଆପଣେ ମାର ମରାଇଲ ସମସ୍ତ
ତୁହି ସେ ମହାରାଜା ବୁଝି ନ ପାରିଲୁ ଏସନେକ ବୃତ୍ତାନ୍ତ । ୨୭୨୦

ଶମ୍ଭୁ ନିଶମ୍ଭୁ ଯେ ଏତେକ ଛନ୍ଦୀ ପଣ
କାମ ଲୁବୁଧେ ହରାଇଲେ ସେହୁ ପ୍ରାଣ ।
ଏହା ଶୁଣି କରି ସେ ମଏଷାଂସୁର ବୋଇଲା
ସେ ମାଳତୀ ବଇଲୋଚନ ପୁଣ କେମନ୍ତ ହୋଇଲା ।
ଅନେକ ମନ୍ତ୍ରୀ ଯେ କହିଲା ସମ୍ବାଦ
ଗୃହ ଯୁଗେ ମନ ଏ ସ୍ତ୍ରିରୀ ଲିଙ୍ଗଭେଦ ।
ଆହେ ବଇଲୋଚନ ବିକଳ ଦେଖିଣ ମାଳତୀ
ବୋଇଲା ସତ୍ୟ କରି ପାଳିଲେ ହୋଇବି ତୋହୋର ପ୍ରୁବନ୍ଧ
ସତ୍ୟ କରି ବୋଇଲା ଏକ ତୁହି ସେ ମୋହୋର ଭର୍ତ୍ତା
ଆଉମାନଙ୍କୁ ସେ କଲି ପରତେକ୍ୟା ।
ଯେତେକ ଅଭ୍ୟସ୍ତା ହୋଇଲା ବଇଲୋଚନ
କହିବାକୁ ସେ କଥା ନୋହିବ ବେଳା ମାନ ।
ମୁହିଂ ସେ କାଳେ ତାହାର ମନ୍ତ୍ରୀ ଅଟଇ
ମୋହୋର ଗ୍ରାମୁରେ କଲି କନ୍ୟା ନେଇଂ
ଆହେ ବଶ୍ୟ ଗଲି ମୁ ତାହାର ରୂପ ଦେଖି
ଜଗତ୍ରଜନ ମୋହନୀ ସେ ଶରଦ ଚନ୍ଦ୍ରମୁଖୀ ।
ଆହେ ନବ ଦ୍ୱୀପ ସାଧ୍ୟ କଲା ଯେବଣ ମହାରଥୀ
ଛାଡ଼ିଲା ମହାପ୍ରଭୁ ସେ ନବଦ୍ୱୀପର ଚିନ୍ତା ।
ମୋତେ ସମର୍ପିଲା ସମସ୍ତ ରାଜ୍ୟ ଭାର
ମୁହିଂ ଯେ ପାଳିଥିଲି ଶଯ୍ୟଳ ସଂସାର । ୧୭୩୦ ।
ଅନେକ ପୀରତି ସେ ବଢ଼ିଲା ମାଳତୀ ରଙ୍ଗରସେ
ଦିବାରଜନେଶ ନ ଛାଡ଼ଇ ତାର ପାଶେ ।
ଏମନେକ ଭାବେ ସେ ବଢ଼ିଲା ପୀରତି
ସମଏକେ ମାଳତୀ ଯେ ହୋଇଲା ଗର୍ଭବନ୍ତି ।
ଏକେଣ ସଉଭାଗୀ ଦୁନେଣ ଗର୍ଭବାସୀ
ଅନେକ ଭଗତେ ବଇଲୋଚନ ମାଳତୀ ମନ ତୋଷି ।
ରାଜ୍ୟେଣ ଉଛବ କରାଇଲା ନରନାଥ
ବଢ଼ାଇ ସମ୍ଭ୍ରେ ରାଜା କରାଇଲା ସୀମନ୍ତ ।
ଜପ ହୋମ କର୍ମ ସେ ବନ୍ଦାପନା ବିଧି
ଆପାଦ ଅରିଷ୍ଟି ଶାନ୍ତିକ ଅନେକ ପୂଜା ବିଧି ।
ଦେବାଦେବୀଙ୍କି ସେ ଶୀତଳ ବଳି ପୂଜା
ଶିବ ଆଗେ ଗୋ ଦୋହନ କରାଇଲା ରାଜା ।

ଏ ବିଧି ମାଳତୀ ହୋଇଲା ଗର୍ଭବାସ
ଅତି ଉଚ୍ଛବ ଆନନ୍ଦ ହୋଇଲା ନବ ମାସ ।
ଲକ୍ଷଭ ମାଘ ଶୁକ୍ଳ ପକ୍ଷ ଏକାଦଶୀ
ମାଳତୀଙ୍କ କୋଳେ ବଯାଇଂ ବଇଲୋଚନ ଋଷି ।
ପ୍ରୀତି ଭାବ ଉପୁଜାଇ କହେ ବୋଲଇ ମାଳତୀ
ମୁକ୍ତୁହିଂ ବନ ଦୋହେ'ଲ ଦେବ ପ୍ରାଣପତି
ବଇଲୋଚନ ବୋଇଲା ତୋତେ କେମନ୍ତେ ଘେନ ଯିବି
ଅନେକ ମୁଛି ଥାଅ ମୁ ବେଶ୍ମ ଆଶ୍ରମ୍ଭ ଯିବି ।
ମାଳତୀ ବୋଇଲା ଲୋ ଶୁଣ ସଂଘାତ
ତୋତେ ଗୁଣ୍ଡିବାକୁ ଯେ ନ ବଳଇ ଚିତ୍ତ ।
ମାଳତୀ ବୋଇଲା ଯେବେ ଦେବ ଯିବୁ ବେଣ୍ଟ ପାଶଢ଼ି ବଚନେ
ତୋହୋର ଆସିବା ଯାଏ ଅନ୍ନ ବେଞ୍ଜନ ନାହିଂ ହାଦେ ।
ଶୁଣ ହୋ ମଷାଂପୁର ସ୍ତ୍ରୀ ଶଙ୍କର ଚରିତ
ପ୍ରୀତି ଉପୁଜାଇ ଏସନେକ ବିଶ୍ୱାସ ସଂଘାତ ।
ନରବାର ଅର୍ଥେ ସେ ପାଢ଼ିଅଛୁ ସେ ଏହେଣ୍ଟ୍ରିକ ଛନ୍ଦ
ଅବନ୍ଧନେ ବନ୍ଧନ ସେ ହୋଇଲା ପଶୁବଧ ।
ମାଳତୀ ବୋଇଲା ନାଥ ଯିବୁ ଯେବେ ଘୋରବନେ
ତୋହୋର ପ୍ରମାଦ ମୁ ଜାଣିମି କେସନେ ।
ବଇଲୋଚନ ବୋଇଲା ମୋତେ ବର ଦେଲା ଧାତା
ବ୍ରହ୍ମାଣ୍ଡ ଧାରଣା ମୁ ଅଟଇ ଜଗଜ୍ଜେତା ।
ଅସ୍ତ୍ରେ ଶସ୍ତ୍ରେ ନାହିଂ ମୋତେ ମୃତ୍ୟୁପାତ
କହିଲି ବିଶ୍ୱାସ କଥା ଶୁଣିଥାଅ ସଂଘାତ ।
ଯେବଣ କାଳେ ମୋତେ ବ୍ରହ୍ମା ଦେଲା ବର
ବୋଇଲା ଚାରି ଯୁଗେ ତୁ ହୋଇବୁ ଅମର ।
ଯମର କାଳଦଣ୍ଡେ ତୁ ନୋହିବୁ ବଧ୍ୟ
ବ୍ରହ୍ମା ବିଷ୍ଣୁ ମହେଶ୍ୱର ତୁ ଜିଣିମୁ ଯୁଧ୍ୟ ।
ଅଗ୍ନିରେ ନ ପୋଡ଼ିବୁ ଖଡ଼ଗେ ନ ଛିଡ଼ିବୁ
ପ୍ରଳୟ କାଳେ ହିଂ ଅଗାଧ ଜଳେହେଂ ନ ବୁଡ଼ିବୁ ।
ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ପବନ ଆଦି କରି
ଜଳ ଲୋକ ନାଗଲୋକ ତୋତେ ନୋହିବେ ସରି ।
ଅକାଟ ଅଫୁଟ ହୋଇବ ତୋହୋର କାୟା
ଭୂତ ଭବିଷ୍ୟ ଗତ ଆଗତ ଜାଣିବୁ ସବୁ ମାୟା ।

ରାତ୍ରିଣହେଁ ନ ମରିବୁ ଦିବସେହେଁ ନ ମରିବୁ
ଘର ବାହାରେ ଆବର ନ ମରିବୁ ରେ ବାବୁ ।
ନ ମରିବୁ ବସ୍ତ୍ରେ ଚନ୍ଦ୍ରେ ପୁରୁଷଙ୍କ ହସ୍ତେ
ଜୀବ ସମାନ୍ୟ ସ୍ତ୍ରିଣି ଗ୍ରର ମୋତେ ।
ବଇଲୋଚନ ବୋଇଲା ଶୁଣସି ସଂଘାତ
ସିଂଗଳ ବେଳେ ବ୍ରହ୍ମା ରୂପିଲ ମୋହୋର ସାଥ ।
ଦିବା ରାତ୍ରହିଁ ନୋହିବ ଘରହିଁ ନୋହିବ ବାହାରହିଁ ନୋହିବ
ସ୍ତ୍ରିଣି ହୋଇ ଯେବେ ଉପାଡ଼ି ପାରିବ ।
ମୋହୋର ଆତ୍ମା ମୁ କହିଲଇଁ ତୋତେ
ଯେତେହେଁଶ୍ରେକ କରି ଧାତା ସଞ୍ଚିତ କଲା ମୋତେ ।
ଶୁଣି ସାନନ୍ଦ ହୋଇଲାକ ମାଳତୀ
ଜାଣିଲା ସଙ୍ଘାତ ଏବେ ଫିଟିଲା ମନ ଭ୍ରାନ୍ତ ।
ମୁଖେ ଚୁମ୍ବନ ଦେଇ ବାହାର ହୋଇଲା ରାଜା
ମାଳତୀ ବୋଇଲା ମନ ସୁଖେ ଏବେ ଯା ।
ଅଶ୍ୱେକ ଚଢ଼ିଣ ରାଜା କରେ କୃପାଣ
ଅସୀପଞ୍ଜ କୋନ୍ତ ନାରାଚ ବଜ୍ରବାଣ । ୨୭୭
ଆହୋ ମାୟା କଲା ସେ ନାରାୟଣ ମାଳତୀ
ବନ ଜୀବ ମାନନ୍ତ ସେ ନ ଦେଖିଲା ନୃପତି ।
ଏସନେକ କୃଷ୍ଣ କଲା ମାଳତୀ ନାରାୟଣୀ
ବଇଲୋଚନ ମଥାକୁ ସେ ପେଷିଲେ ଉକୁଣି ।
ସୁକୁମାର ଶଯ୍ୟାରେ ସେ ଦଂଶନ୍ତେ ଉକୁଣି
ସହି ନ ପାରନ୍ତି ସେ ବଇଲୋଚନ ନୃପମଣି ।
ଜୀବ ଲୋଡ଼ି ନ ପାଇଲା ସେ ଅନେକ ଦୂର ଭ୍ରମି
ମାଳତୀ ତାହାଙ୍କ ମନ ଟେକିଲା ରାଜ ସ୍ୱାମୀ ।
ସ୍ନାହାନ ଭୋଜନ ସେ ସାରିଲା ନରବର
ମାଳତୀ କଟିରେ ବସିଲେ ଅନେକ ସୃଷ୍ଟି କନ୍ଧ ।
ମାଳତୀର ରଙ୍ଗ ରସ ସାରିଣ ନରପତି
ମଥାରେ ମୋହର କାସ ଝାଇଲା ମାଳତୀ ।
ମାଳତୀ ବୋଇଲା ଦେବ ବିଶ୍ରାମ କର ଦଣ୍ଡେ
ଉକୁଣି ଉତପାତ ହୋଇଲା ତବ ମୁଣ୍ଡେ ।
ଶ୍ରୀ ହସ୍ତେ ଘେନିଣ ହସ୍ତୀ ଦନ୍ତର ଚିପୁକୁଣି
କେଶ ବଦାରି ସେ ମାରଇ ଉକୁଣି ।

ଘରକୁ ପଛକରି ସେ ବାହାରକୁ ଦୃଷ୍ଟି
ମହା ସୁଖ ପାଇଣ ସେ ପଡ଼ିଲା ରାଏ ଲେଟି ।
ନଖ ପନ୍ତୁ ଦେଇଂ ନରନ୍ତ୍ରରେ କୃମି ମାଣ୍ଡ ।୧।
ବେଳ ଅବସାନ ହୋଇଲା ପଞ୍ଚଦଶ ଘଡ଼ି । ୨୭୭

ଏକୁ ଏକ ହୋଇଂ ସେ ପଜାଇ ରାଏ ଖସି
ଓସଣାର ତଳେ ହୋଇଲାକ ପାଏ ଆସି ।
ନାଭି ଅର୍ଧ ଅଙ୍ଗ ହୋଇଲାକ ବାହାରକୁ
କଟି ଭାଗ ପାଦ ପଶିଅଛୁ ଭିତରକୁ ।
ମାଳତି ବୋଇଲି ନାଥ ହୋଇଲାକ ଗୋଧୂଳିର ବେଳ
ବଇଲୋଚନ ବୋଇଲା ମାର ନ କର ହେଳ ।
କୃମି ଲୋଣ୍ଡୁ ଲୋଡ଼ୁ ଲୋଡଇ ମୁଣ୍ଡୁ ବାଳ
ଠାବ କଲା ମାଳତି ସେ କେଶ ପିଙ୍ଗଳ ।
ଉବୁର ହୋଇ ସେ ପଡ଼ିଲା ଦାନବ ।୨।
ମଥା ମଧ୍ୟେ ମାଳତି ପିଙ୍ଗଳ ବାଳ କଲା ଠାବ ।
ଲକ୍ଷ ଯେନ ବଇଲୋଚନର କେଶ ଆମ୍ଭୋଗ
କଠାଇଂ ସଙ୍ଘାରୁଣୀ ମାର କନା ସେହି ଠାଇଂ ।
ରହ ରହ ବୋଇଲେ ନୋହଇ ବାହାର
ରାଜ ନୋହଇ ଦିବସ ନୋହଇ ସେହି ଠାର ।
ମାଳତି ବୋଇଲା ନାଥ ମାରୁଅଛୁନ ମୁ ତୁକୁ
ବଇଲୋଚନ ବୋଇଲା ସଙ୍ଘାତ ବେଗେ ମାର ମୁକୁ ।
ବିଶ୍ୱ ରୂପ ପ୍ରକାଶିଲା ମାଳତି ଗଗନ ମଣ୍ଡଳେ
କରେ ଧଇଲା ସେ ମୁଣ୍ଡୁ ପିଙ୍ଗଳ ବାଳେ । ୨୭୮

ଅଚେତନ ହୋଇଂ ସେ ମଦରା ରସ ଖାଇଂ
ମାଳତି ହୁଷ୍ଟ ହୋଇଲା ପିଠିରେ ମୁଣ୍ଡରେ ପାଦ ଦେଇ ।
ହୁଙ୍କାର ଶବଦେ ସେ କମ୍ପିଲା ବ୍ରହ୍ମାଣ୍ଡ
ଗୃପଡ଼େ ପାତାଳେ ପଶିଲା ଛାର ପିଣ୍ଡ ।
ବିଶ୍ୱ ରୂପ କରି ଉପାଡ଼ିଲା ମୁଣ୍ଡୁ ଭେଦ କେଶ
ଗର୍ଜନ ନାଦ କରି ସେ ପଡ଼ିଲା ରାକ୍ଷସ ।

---

୧ । (ଖ) ନଖ ଗୃଣ୍ଟୁ (ଗ) ନଖ ଚଣ୍ଟୁ

୨ । (କ) ଛପୁଛ

ଶୁଣି ମହିଷାସୁର ଅନେକ ମନ୍ତ୍ରୀ କହିଲା
ବିଶ୍ୱାସଘାତକେ ବଇଲୋଚନ ହାତେ ନାଶ ଗଲା ।
ଆହେ ଏମନ୍ତ କରନ୍ତି ବର ଦଅନ୍ତ ହାତେ ଦେବେ
ଦେଖିଲା କଥାଟି ଅଛଇ ମୋ ର ପୂର୍ବେ ।
ଦେବଙ୍କୁ ଦୁର୍ଲଭ ସେ ଶମ୍ଭୁ ନିଶମ୍ଭୁଙ୍କର ବଳ
ଏକ ହାଥ ଦଅନ୍ତ ଯେବେ ଆରେକର ଶିର ।
ତେବେ ସେ ବଧ ହୋଇବେ ଶମ୍ଭୁ ନିଶମ୍ଭୁ
ଏ କଥା ଜାଣିବାକୁ ଅଛୁ କେ ରେ ବାବୁ ।
ବାବୁ ଦୁହିଂଙ୍କି ନୃତ୍ୟ କରାଇଲା କୃଷ୍ଣେ
ଶିରରେ ହସ୍ତ ଦେଇ ମରାଇଲା କଷ୍ଟେ ।
ତଇଲୋକ୍ୟେ ସଖ୍ୟ ନାହିଂ ରକ୍ତବୀର୍ଯ୍ୟର ମହିମା
ତାହାକୁ ମୃତ୍ୟୁ କରିବାକୁ କେ ଅଛୁ ତ୍ରୈଲୋକ୍ୟରେ କ୍ଷେମା ।
ଆହେ ଦାନେବ ବୋଲି ଜନ୍ମେ ଜନ୍ମେ ନ ଜାଣିମା କିଛି
ଜାତ ହୋଇଲେ ଅବଶ୍ୟ ମୃତ୍ୟୁ ଅଛି । ୧୭୯୦
ରାକ୍ଷେକ ହୋଇଲେ ଅବଶ୍ୟ ହୋଅଇ ଦିବସ
ସମ୍ପଦେକ ହୋଇଲେ ବିପଦ ହୋଅଇ ଅବଶ୍ୟ ।
ମନ୍ତ୍ରୀବର ବଚନ ସେ ମହିଷାସୁର ବୋଇଲା
ଏହେନ୍ତେଁକ ଉତପାତ ଜାଣନ୍ତା ନୋହିଲା ।
ସ୍ତ୍ରି ଗି ମାନଙ୍କରେ ସନ୍ୟ ମୋହୋର ଭକ୍ଷି
ରଖନ୍ତା ନୋହିଲି ମୁ ହୋଇଲି ନିରମାଖି ।
ମହିଷାସୁର ବୋଇଲି କେ ପାର ମୋତେ କର ରକ୍ଷା
ସ୍ତ୍ରି ଗି ମାଣ ମୁ ତୁହାଇବ ମନବାଞ୍ଛା ।
ରାଜ୍ୟ ଘର ଗ୍ରୁଣ୍ଡଣ ମୁ ବାହୁଡ଼ିଣ ଯିବି
କେବଣ ସମୋଦ୍ରେ ଯାଇଂଣ ରହିବି ।
ରାଜାର ବିକଳ ଦେଖିଣ ଅସୁର ସେନା
ଯମଘଣ୍ଟ କାଳ ବିମୋଚନ କଙ୍କାସୁର ଧୂମଲୋଚନା ।
ଚଣ୍ଡାସୁର ପ୍ରଚଣ୍ଡାସୁର ଲେହାସୁର ଧଙ୍କ
ମତ୍ତ ହସ୍ତୀ ସହସ୍ର ଚରଣ ଜିର୍ଦ୍ଧିବଙ୍କ ।
ବଙ୍କାସୁର ଧଙ୍କାସୁର ଭସ୍କର ଦଇତ
ବଜ୍ରାଙ୍ଗ କାଳାନଳ ଆବର ଗର୍ଜନ ବଜ୍ରଘାତ ।
ବାତାସୁର ମେଦାସୁର ବକାସୁର ମର୍ଚ୍ଛିଲା
ଅଶ୍ୱ ମୁଖ ଗଜ ମୁଣ୍ଡ ଆବର ଅନର୍ଗଳା ।

ଶ୍ରୀକାଳ ମୁଖ ଗୃଧ ମୁଖ ଘୋର ମୁଖ ବିକଟା
ମସ୍ତାକ୍ଷ ମୁଖ ଶୋଣେନ୍ଦ୍ରା ମୁଖ ପାଦ ରେଷ୍ଟା ।
ଆହୋ ପରୀକ୍ଷ ଯେହ୍ନାଙ୍କ ବାହୁଡ଼ାଭ ଅଠାଇଶ ସେନାପତି
ଏହାନ୍ତ ଯେନ କାଳବମୋଚନ ଉଟେଇ ତତକ୍ଷଣାନ୍ତ ।
ଯୋଧ୍ୟାଏ ବୋଇଲେ ରାଜା ଆଜ୍ଞାଂ ଦିଅ ଆମ୍ଭଙ୍କୁ
ଆମ୍ଭେ ଯାଉଛୁଂ ସେ ସ୍ତ୍ରୀଙ୍କି ଆଣିବାକୁ ।
ମହିଷାଂସୁର ବୋଇଲା ମୋହୋର ଯୋଦ୍ଧୃ ବଳ ଗର୍ବ
ଯାହାକୁ ଯାଅ ବୋଲି ବୋଲିବ ସେ ନାଶ ଗଲା ସର୍ବ ।
ମୋହୋର ଆଜ୍ଞାଂ ନାହିଂନା ତୁମ୍ଭଙ୍କୁ
ତୁମ୍ଭର ଇଚ୍ଛା ହୋଇଲେ ଯେନ ଆସ ତାହାକୁ ।
ରାଜାର ଆଜ୍ଞାଂ ପାଇ ସେ ଅଠାଇଶ ସେନା
ଦେବ ଦାନବେ ସେ ନ ଯାନ୍ତି ଗଣନା ।
ଘୋର ନାଦ କରି ସେ ବାହାର ଦୈତ୍ୟ ବଳ
ପୂର୍ବେଣ ଯେସନେକେ ସମୋଦ୍ର ଉଛଳ ।
ଗଜ ଅଶ୍ୱ ଶାର୍ଦ୍ଦୋଳ ବାହାନ ପିଠି
କରେଣ କୃପାଣ ଲର୍ଙ୍କିଆ କୋନ୍ତ ଯାଠି ।
ଧର ଧର ମାର ମାର ଶୁଭୁଅଛୁ ବୋଲ
ମହୀ ହେଲ ଘେନୁଅଛୁ କମ୍ପଇ ପୃଥିବୀ ।
ଅସୁରଙ୍କର ମଧ୍ୟେ ଅନର୍ଗଳା ମହାବୀର
ଆଗୁଆଣି ଥାଠରେ ସହସ୍ର ଶିର ।
ଦୁଇ ସହସ୍ର ଭୁଜ ଦୁଇ ସହସ୍ର ମାଥ
ଶ୍ୟଗ୍ରିରେ ବିକାଶଇ କି ସୁବର୍ଣ୍ଣ ଚୂଟ ପର୍ବତ ।
ଦୁଇ ସହସ୍ରେକ ଭୁଜେ ଦୁଇ ସହସ୍ର ଧନୁ
ଗୁଣ ଘୋଷ ନାଦେ କମ୍ପଇ ଶର୍ତମନୁ । ୧
ମହାସ୍ଥଳି କମ୍ପିଲା ଚଳନ୍ତେଣ ଥାଠ
ନବ ଯୋଜନ ପରଯନ୍ତେ ନ ଦିଶଇ ବାଟ ।
ବଳବନ୍ତ ରାଜୁତେ ଯେ ଖେପନ୍ତ ଖୁରୁସାଣି
ରେଟେଫ ଦୈତ୍ୟବଳ କୃପାଣନ୍ତ ଝୁଣି ।
ବୀରତୂର ଦାଉଣ୍ଡି ଢୋଲ ମହୁରି
କଡ଼ା ମର୍ଦ୍ଦଳ ସେ ବାଜନ୍ତ ଦୁନ୍ଦୁଂର ।

---

୧ । (ଖ) ଧ୍ୟାମ୍ଫୁଟ ।

ଊର୍ଦ୍ଧ କେଶ ଖାଙ୍କର କେଶ ଜଟି
ଧୂମ୍ରକ ଧୁମ୍ରା ଆକାଶେଣ ଶିର ଘୋଟି । ୨
ମହା ମତୁଆଲ ସେ ମଦିରା ରସ ଖାଇ
ଅସୁରଙ୍କର ପ୍ରତାପ୍ୟାଂ କହିତ କେ' ପାରଇ ।
ଏଇକୋଟିକ କର୍ମ ଅଛୁ ଅସୁର ଘୋର ରଡ଼ି
ଜ ହେ ମେରୁଗିରି ପଡ଼ିଲକ ଝଡ଼ି ।
ରତ୍ନଗିରି ପର୍ବତ ବେଢିଲେ ଅସୁର ସେନା
ମୃତ୍ୟୁପୁରେ ଚରଣ ସେ ଦଗାଙ୍ଗେ ମୁଧୁନା ।
ଆହୋ ପର୍ଯ୍ୟନ୍ତ ପର୍ବତ ଉପରେ ଥାଇଂ ଦେଖିଲେ କାନ୍ତାସ୍ତନ
ମଦିରା ପାନ କରନ୍ତି ସେ ଚଉଷଠି ଯୋଗ୍ନୀ ଘେନ ।
ରତ୍ନଗିରି ପର୍ବତ ଶତେ ଯୋଜନ ସ୍ଥଳୀ
ତାହାଂକ ଗବନ କରନ୍ତି ମହାବଳୀ । ୨୮୨୦ ।
ଅସୁରେ ଦେଖିଲେ ଯୋଗ୍ନୀବଳ ଥାଠ
ନର୍ଭଏ ମାତାଙ୍ଗୀ ମତୋଆଲ ନାଠ ।
ସହସ୍ର ଶିରା ଦାନବ ସେ ପର୍ବତେ ଉଠିଲା ବେଗ
ପ୍ରତାପ୍ୟାଂବନ୍ତ ଦାନବ ସେ ମିଳିଲା ଯାଇ ନାରାୟଣୀ ଆଗ ।
ଆଗୋ କେବଣ ଦେଶରୁ ଅଇଲୁ ତୁ ଯେ ଅଦଭୁତେ ଯୁବତି
ବିଶ୍ୱାସ ଘାତକେ ମାଇଲୁଂ ସମସ୍ତ ସେନାପତି ।
କ୍ଷଣ କ୍ଷଣକ କହଇ ସେ ମୁଖେ ଉଞ୍ଚବାଚ ବାଣୀ
ତାହାଶୁଣି ହସିଲେ ସେ ଦେବୀ ନାରାୟଣୀ ।
ଆହୋ ସର୍ବଦା ପ୍ରାଣୀଙ୍କର ନୋହଇ ସମ୍ପଦ
ଯେ ବଢ଼ଇ ସେ ଛୁଡ଼ଇ ପଡ଼ଇ ପରମାଦ ।
ଆରେ ତୁମ୍ଭଙ୍କୁ ଯେ ବର ଦେଲା ଯେବଣ ମହାତମା
କୋଟିଏ ବେଳ ପ୍ରାଣତ୍ୟାଜ ହୋଇଲା ନଳେ ବ୍ରହ୍ମା ।
ଆରେ ଈଶ୍ୱରଙ୍କୁ ବୋଲି ଆଦ ଯୋଗବାସୀ
ସହସ୍ରେ ବାସ୍ତର ବେଳ ଶ୍ୟଙ୍କର ବନାଶି ।
ପଦ୍ମେକ ବାର ଇନ୍ଦ୍ରଙ୍କୁଂ ନାଶ ଗଲା
ଦିଗପାଳ ମାନନ୍ତ କେହୁ ଗଣିଲା ।
କେଉଂ ବ୍ରହ୍ମା ବର ପାଇଂ ତୁମ୍ଭର ଏତେକ ଗରବ
ସେ ବ୍ରହ୍ମା ପୁଣି ଅବଶ୍ୟ ନାଶ ଯିବ ।

---

୧ । (ଖ) ଧ୍ୟର୍ମ୍ମ ତୁଠେ (ଗ) ସଦ୍ୟ ୨ । ଧୂମ୍ରା ଊର୍ଦ୍ଧୁରା

ନାରାୟଣୀ ବୋଇଲେ ନ ଜାଣି ଅପଖ୍ୟାତ ହୁଅ ତୁମ୍ଭେ ଅବା
ଏ ମୃତ୍ୟୁ ମଣ୍ଡଳେ ସମସ୍ତେ ହେବେ ମରିବା ।
ତୁମ୍ଭେ କେମନ୍ତେ ନିଜିବା ପାଇଁଅଛ
ଯେ ତୁମ୍ଭଙ୍କୁ ବର ଦେଲା ସବୁ ତାହାର ମିଛ ।
ଅନେକ କାଳ ତୁମ୍ଭେ ଭୋଗ କରୁଥିଲ ପୃଥୀ
ଏତେ କାଳେ ମୃତ୍ୟୁ ହୋଇଲା ପ୍ରାପତ ।
ଯେତେ ଦର୍ପ କର ତୁମ୍ଭର ସବୁ ଅକାରଣ
ସମସ୍ତ ଦ ନେବ ତୁମ୍ଭେରେ ମରିବ ଏହିକ୍ଷଣ ।
ସାଧ୍ୱୀ ବଚନ ଶୁଣି ବୋଇଲା କାଳ ବିମୋଚନ
ଆମ୍ଭେ ଯେବେ ମରିବୁ ଲୋ ତୁମ୍ଭର କିସ ଜୀବନ ।
ସ୍ତ୍ରୀ ଜୀବନ ତୁମ୍ଭେ ଅଟ ଲୋ ପାପିଷ୍ଠ
ସଦ ଅସଦବନ୍ତ ଯେ ମନ୍ଦ ବାଟ ।
ଆମ୍ଭେ ଯେତେବେ ଆଗ ଆସନ୍ତୁ ଜାଣନ୍ତୁ ବଡ଼ପଣ
ସ୍ତ୍ରୀ ମାନ ସ୍ତୁର ପାତମଣ୍ଡ ବୋଲି ନ ମାରି ହୋଇଲୁ ରଣଭଙ୍ଗ ।
ନାରାୟଣୀ ବୋଇଲେ ଶୁଣ ହେ ଦେବଅରି
ଆମ୍ଭେ ସେ ସ୍ତ୍ରୀ ଜନ୍ମି ନୋହୁ ରେ ପାମରି ।
ଆରେ କାଳ ବିମୋଚନ ଆମ୍ଭେ ମାତା ରୂପ ହୋଇ
ରାଜ କାଳେ ଆମ୍ଭେ ଈଶ୍ୱରୀ ରୂପେ ରହି ଦେଇ ।
ଅନ୍ତକାଳେ ହୋଇଁରେ କାଳିକା ମୂରତି
ଶେଷ କାଳେ ଦହନ କରୁ ଅନଳ ବହନ୍ତି ।
ଆରେ ଆମ୍ଭେ ଜାତ ଅନ୍ତ ମଧ୍ୟରେ ଅବସାନ
ଜାତ ଅନ୍ତ ନିରାଉଁ ଅନାଦିର ଜାନ ।
ଆରେ ରେତ କାଳେ ତୁମ୍ଭନ୍ତ କରୁ ଉତପତ
ଅନ୍ତକାଳେ ପୁଣ ଭକ୍ଷୁ ଯେ ସବୁନ୍ତ ।
ଅଗ୍ୟାନ ଦୁଷ୍ଟ ପଣେ ମର ତୁମ୍ଭେ ବାଇ
ଆମ୍ଭେ ପରମ ଯୋଗିନୀ ଅଟୁ ମହାମାଇ ।
ଆହେ କାଳବିମୋଚନ ଆମ୍ଭେ ଜାତ ଅନ୍ତ
ମଧ୍ୟରେ ଭୋଗ କରାଉ ତୁମ୍ଭନ୍ତ ।
ଆମ୍ଭର ଚରିତ ତୁମ୍ଭେ ରେ ନ ପାରିଲ ଜାଣି
ଏହିକ୍ଷଣି ତୁମ୍ଭନ୍ତ ଖାଇବେ ରେ କଳିକାଳ ନାରାୟଣୀ ।
ଏହା ଶୁଣି କାଳବିମୋଚନ ଗଲା ଗାଜି
ନାରାୟଣୀ ଉପରକୁ ଧାଇଁଲା ମହାତେଜି ।

ଧାଅଂରେ ଦଇତେ ମାର ସ୍ତ୍ରିଣ୍ଣ ବଳ
ରାଜାର ଆଗ୍ୟାଂରେ ବ୍ରତ ଚରକାଳ ।
ଆହ୍ୱେ ପରୀକ୍ଷ ଆଗ୍ୟାଂ ଦେଲ ଥାଠର ସେନାପଢ
ଧାଇଂ ସେ ଦାନବ ବଳ କାଳାନଳ ମୁର୍ତ୍ତି ।
ପର୍ବତ ଉପରକୁ ସେ ଉଠିଗଲେ ଧାଇଂ
ଅମାପତ ବଳ ସନ୍ୟ କଳଣା ନ ଯାଇ ।
କାଳ ବମୋଚନ ତୁଳେ ସାତ ମର୍ଭୁତ ରଥୀ
ଧୂମଲୋଚନ ତୁଳେ ପାଞ୍ଚ ସେନାପତ ।
ବ୍ରାଘ ବାହାନେ ଯେ ପଞ୍ଚ ମର୍ଭୁତ ଯୋଧି
ଶଙ୍ଖାସୁର ଦାନବ ଅବଛନେ ନାରଯ ବନ୍ଧ ।
ବକାସୁର ମୂଳେ ପଦ୍ମେକ ବୀର
ଧଙ୍କାସୁର ମୂଳେ ଛନ ପଦ୍ମ ଅସୁର ।
ପଦ୍ମେକ ଯୋଧ୍ୟାସେ ଭୋଗାସୁର ଘେନ
ବଙ୍କାସୁର ମୂଳେ ଛନ ପଦ୍ମ ସଇନ ।
ସାତ ଲକ୍ଷ ଯୋଧ୍ୟା ତୁଲେ ଉଦେକ ପଞ୍ଚ
ପ୍ରଚଣ୍ଡାସୁର ତୁଳେ ଯୋଧ୍ୟା ଶତେ ମେବକ୍ଷ ।
ଛନ ପଦ୍ମ ଯୋଧା ତୁଳେ ଅସୁର ଗ୍ରୁମର ଦଣ୍ଡା
କୋଦାଳ ଆୟୁଧ ବାମ କରେ ଡାହାଣ କରେ ଝଣ୍ଡା ।
ଗୃଣ୍ଡାଳିଆ ତୁଳେ ସେ ନବ ମର୍ଭୁତ ଯୋଧି
ଲୁହାର ଧନୁ ଏକ କଣ୍ଟି ବନ୍ଧରେ ବାନ୍ଧ ।
ନବ ସାଗର ସନ୍ୟ ସେ ବଜ୍ରାଙ୍ଗ ଦତ୍ୟ ତୁଳେ
ସେନାଏ ଅନ୍ତକର ନ ଯାନ୍ତ୍ର କହିଲେ ।
ଉତପାତ ବୋଲି ମଷାଂସୁର ନାଥ
ତାହାର ତୁଳେ ପଞ୍ଚ ସାଗର ରଥୀ ।
ରାଜାର ମାତୁଳ ସମୋଦ୍ର ସୁର ବୋଲି
ମନ୍ଦର ପର୍ବତେ ସେ ତାହାକୁ ଠାବ କଲି ।
ତାହାର ତୁଳେ ଛନ ସାଗର ବୀର
ମଞ୍ଜୁରାସୁର ତୁଳେ ଦଶ ମର୍ଭୁତ ବୀର ।
ନବ ସାଗର ବୀର ଗୋଧାସୁର ମୂଳେ
ଲକ୍ଷେ ସେନା ଘେନ ପର୍ବତ ବେଢ଼ିଲେ ।
ଏକବଂଶ ସାଗର ସେ ମୈଷା ସଇନ
ଜଳ ମନ୍ଥାନ ତୁଳେ ପଦ୍ମେକ ଯୋଧା ଘେନ ।

ଢେଙ୍ଗାସୁର ଦାନେବର ପଞ୍ଚ ପଦ୍ମ ସେନା
ବେଙ୍ଗାସୁର ଭୁଟଲେ ନବ ସାଗର ସେନା ।
ପାଞ୍ଚ ମଣ୍ଡିତ କଙ୍କାସୁର ସଇନ
ଆକାଶରେ ଘୋଟିଲେ ଯେ ଟଳଲ ମେଦନୀ ।
ପାଞ୍ଚ ମଣ୍ଡିତ ଭୁଟଲେ ଯୋଧା କୋଡ଼ାସୁର
ଲୋହାର ଗଦା ଘେନ ଯେ ଧାମଇ ମହାବୀର ।

## କାଳ ବଟମୋଚନ ଆଦ୍ୟ ସେନାପତିଙ୍କର ବଧ

**ଆହୋ ପରୀକ୍ଷ** ମହିଷାସୁର ଯୋଧାମାନେ ପଞ୍ଚ ସହସ୍ର ହାତୀ
କୋଟି ପଦ୍ମ ସାଗର ଯେ ଏହାଙ୍କର ରଥ ।
କାଙ୍କମୁଖ ଘୋଡ଼ାମୁଖ ଗୋମୁଖ ଶଗଡ଼ା
ଗଜ ମୁଖ ଜମ୍ବୁକ ମୁଖ ଧୋକୋଡ଼ା ।
ସହସ୍ର ସେନା ଯେ ଏ ଥାଟରେ ସେନାପତି
ଏହାଙ୍କର ଉପରେ ବଟମୋଚନ ଚକ୍ରବର୍ତ୍ତୀ ।
ହେ ବୁଧଜନେ କହିବାକୁ ମୋହୋର ଅଳପ ବୁଧି
ଲେଖନ୍ତେ ସରଇ କି ଅଗାଧ ପୟୋଧି ।
ମୁକୁଟ ଯୋଧାମାନେ ଅଛନ୍ତି ଯେମନ୍ତ
ଯାହାନ୍ତ ସଂଖ୍ୟ ଲେଖିବାକୁ ନୋହୁଇଛି ଅନ୍ତ ।
ଆହୋ ପରୀକ୍ଷ ଦୁର୍ଗା ବଳେ କରଅଛନ୍ତି ରହି ଗିରି
ହାଟେ କୋଟେ ପଡ଼ିଲେ ଯେ ମହିଷାସୁର ଧାଡ଼ି । ୨୮୭୦
ସୈନ୍ୟମାନେ ମାଡ଼ି ରହିଲେ କି ପୁଣ ଯେତେ
ଲକ୍ଷ୍ମୀଭଦ୍ରା ନଦୀ କୂଳୁଁ ସରସ୍ୱତୀ ନଦୀ ପର୍ଯ୍ୟନ୍ତେ ।
ପଞ୍ଚଷଠି ଯୋଜନ ଗିରି ପଞ୍ଚଷଠି ସ୍ଥଳୀ
ପୂରିଲା ରାକ୍ଷସ ବଳ ଶବଦ କଳି କଳି ।
ଶୁଣ ହୋ ମହାରାଜା ଦୁର୍ଗାର ମହିମା
କହନ୍ତେ ନ ସରଇ ଯେ ତାହାଙ୍କର ଗରିମା ।
ବୃନ୍ଦାଅର୍କମାନେ ଚାହିଁଲେ ରାକ୍ଷସ ବଳ ଦେଖି
ଭଏ ପଳାଇଲେ ଯେ ଗଗନ ଉପେକ୍ଷି ।
ମଳୟ ଗିରି ପର୍ବତ ଦକ୍ଷିଣ ଶୃଙ୍ଗ ଅନ୍ତେ
ତହିଁ ଯାଇ ବିଶ୍ରାମିଲେ ନାରାୟଣ ସହିତେ ।
ବ୍ରହ୍ମା ଶ୍ରୀମୁଖରେ କହନ୍ତି ଦେବମାନେ
ଏ ଆଠ ପିତା ଯିବେଟି କେସନେ ।
ଆମ୍ଭେ ତେତିଶ କୋଟି ଦେବତା ଏ ପଳାଇଲୁଁ ସ୍ୱର୍ଗ ଉପେକ୍ଷି
ସେ ପୁଣ କି ପୁର ବୁଦେ ଯାଉଛନ୍ତି ତାହା ଦେଖି ।

ପିତା ବୋଇଲେ ହୋ ନ ଜାଣ ତୁମ୍ଭେ କିଛି
ଏକା ନିମିଷକେ ଦେବୀ ସେହାକୁଂ ପାରନ୍ତି ଭଞ୍ଜି ।
ଦେବତାନ୍ତ ସମାର୍ଜ୍ଜନା କରନ୍ତି ଦେବରାଜ
ଅନେକ କଉତୁକ ଦେଖିବଟିକି ଆଜ ।
ଆହୋ ପରୀକ୍ଷ ଦେବତାଙ୍କ ପ୍ରବୋଧନା କଲେ ଯଥାବିଧି
ଶୁଣି ଭ୍ରାନ୍ତି ଛାଡ଼ିଲେ ସହସ୍ରାକ୍ଷି ।
ଏହା ଶୁଣି ବୋଇଲେ ପରୀକ୍ଷ ରାଜା
ଶୁକ ମୁନିଙ୍କ ପାଦ ତଳେ କଲେକ ଦିବ୍ୟପୂଜା ।
ଅସୁର ବଳ ସଇନ ପର୍ବତ କେତିଲି ଦେଖି
ଦୁର୍ଗା କେମନ୍ତ ଯୁଦ୍ଧ କଲେ ସେ ତହିଁଙ୍କ ।
ଶୁଣ ହୋ ପରୀକ୍ଷ ରାଜା ବଦନ୍ତି ଶୁକ ମୁନି
ଅସୁର ବଳ ଦେଖି କୋପ କଲେ କାତ୍ୟାଏନୀ ।
ଚଉଷଠି ଯୋଗିନୀ ଆଗ ହୋଇଂ ଯାଏ
ପୁଣି ଅନେକ ଦେବୀ ଶରୀରୁ ଉପୁଜାଏ ।
ବ୍ରହ୍ମାଏଣୀ ମୂର୍ତ୍ତି ସେ ଗୃଗପଦ୍ ଚଣ୍ଡୀ
ଚଉଦ ଅଷ୍ଟଭୁଜେ ବନ୍ଦନ ଏ ମଣ୍ଡି ।
ଅଜଗବ ଧନୁ ବ୍ରହ୍ମଶର ସଙ୍କରେ ବ୍ରହ୍ମ ଶକତ
ପଦ୍ମକ ଚଣ୍ଡୀ ସେ ବ୍ରହ୍ମାଏଣୀ ମୂର୍ତ୍ତ ।
କାଳାନ୍ତକ ଗଦାରେ କାଳଦଣ୍ଡ ଧରି
ପରଶୁ କୋଠାର କୋନ୍ତ ନାରାଚ ଅସିବାଣ ।
ବିଜଏ ପଦ୍ମମଳା ସେ ମହାବାହାନ
ଦାନାଙ୍କ ମୂର୍ଦ୍ଧନା ଦେବୀ ଘୋଟିଲେ ଭବାନୀ ।
ଛପନ କୋଟି ଦେବୀ ନାରାୟଣୀ ମୂର୍ତ୍ତ
ଚତୁର୍ଭୁଜରେ ଶାର୍ଙ୍ଗ ଧନୁ କାଣ୍ଡ ।
କଉମୋଦୀ ଗଦା ସେ ନାରାୟଣୀ ଶସ୍ତ୍ରଧାରୀ
ବିକଚ ନରକୁଳ ସେ ବାହାନ ନାଗ ଅରି ।
ଇନ୍ଦ୍ରାଏଣୀ ମୂର୍ତ୍ତ ସେ ଚଉଷଠି କୋଟି ଦେବୀ
ଅଷ୍ଟଭୁଜେ ସହସ୍ର ଧାରା ବଜ୍ରଏ ହାତେ ସମ୍ଭବ ।
ଅଜଗବ ଧନୁ ଅଙ୍କୁଶ ତୋମର ଦେବନ
ମେଘା ଶର ନାଗଫାଶ କରେଛନ୍ତି ଘେନ ।
ବାହାନ ଗଜଶ୍ରେଷ୍ଠ ଆରୋହି ଐରାବତ
ମାତାଙ୍କ ସମ୍ମୁଖେ ସେ ହୋଇଲେ ଉପଗତ ।

ଚଉଦ କୋଟି ଦେବୀ ଉପୁଜିଲେ ଭୈରବୀ
ଏକ ପାଦ ଚତୁର୍ଭୁଜ ବହନ୍ତି ଦେବୀ ।
କୋଦଣ୍ଡ ନାମେ ଧନୁ ସେ ପଶୁପତି ଶୂଳଧାରୀ
ଶୃଙ୍ଖଳାମୃଗୀ ଶଙ୍କର ରୁଦ୍ରାୟଣୀ ସହସ୍ର ଅସିବାଣ ।
କପୋଳେ ତିନି ନୟନ ଶୁଦ୍ଧ ସ୍ଫଟିକର ପ୍ରାଏ
ଅଶୀ ଲକ୍ଷ ଫଣୀନାଗ ଅଙ୍ଗେ ଲମ୍ବଏ ।
ଚନ୍ଦ୍ର ଚକୋର ଲୋଚନ ଶିରେଣ ଶୀତାଂଶୁ
ବାମକରେ ଡମ୍ବରୁ ଡାହାଣ କରେ କୋଠାର ପ୍ରଶୁ ।
ଭୂମି କମ୍ପିଲା ଡାକ ଡମ୍ବରୁ ହାକି
ଧାଅଁରେ ମାରରେ ଖାଅରେ ଉଚ୍ଚସ୍ୱରେ ଡାକ ।
ବଇଲ ବାହାନେ ସେ ଶ୍ରୀକରେଣ ଶୂଳ
ଚନ୍ଦ୍ର କର୍ପୂର ବର୍ଣ୍ଣ ଅର୍ଦ୍ଧେକ ଧବଳ ।
ନବ କୋଟି ଚଣ୍ଡୀ ସେ ବରାହ ମୂରତି
କୋଦାଳ କୋଠାରେ କରେଣ ଖପରୁ କାତି । ୨୧୦୦ ।
ନବ ଜନ୍ମ ଦେବୀ କାଳାନ୍ତକ ମୂର୍ତ୍ତି
ଶତେ ଶିର ବେନି ଶତଭୁଜ କାଏ ଗଗନ ଛୁପି ।
କାଳାନଳ ଜାଣି ବିକାଶନ୍ତି ତେଜ
ରତ୍ନମଣି କୁଣ୍ଡଳ ଶିରେଣ ବିରାଜ ।
ପଞ୍ଚଶତ ମୂରତି ଯେ ଜଳ ଦେବତା
କରେଣ ଜଳଫାଶୀ ସେ ଅନର୍ଘ ମଣି ବିରାଜନ୍ତି ।
ଯେତେ ଥାଠ ସଙ୍ଗେ ଯେ ନବକାନ୍ତାମା
ମୁକତ କେଶ ଜିଭ ଲହ ଲହ ଭବାନୀ ।
ପାଞ୍ଚ ମର୍ଭିତ ଦେବୀ ଶ୍ରୋଣେହୋ ଅବତର
ଏ ଥାଟେ ସେନାପତି ଦେବୀ କୋଠାରୀ ।
ଡାକେଣୀ ଦେବୀ ଯେ ନବକୋଟି ମୂର୍ତ୍ତି ଦୁଲଣ୍ଡ
ଏ ଥାଟେ ସେନାପତି ଦେବୀ ଭଇରବୀ ।
ପିଙ୍ଗୁଶୁଣୀ ଦେବୀ ପଞ୍ଚ ସାଗରା
ଏ ଥାଟେ ସେନାପତି ଦେବୀ ଉଗ୍ରତାରା ।
ତିନି ସାଗର ଦେବୀ କାଙ୍କଲୀ
ଏ ଥାଟେ ସେନାପତି ହୋଇଲେ ବାଶୋଳୀ ।
ସାତ ପଦ୍ମ ଦେବୀ ଯେ ଗଗନ ମେଖଳା
ସେ ଥାଟେ ସେନାପତି ମେଖଳା ଭଦ୍ରକାଳୀ ।

ନବ ମର୍ଦ୍ଦିତ ଚଣ୍ଡୀ ମେଖଳା ମହାଖଳା
ଏଥକୁ ସେନାପତ୍ତ ସେ ହୋଇଲେ ହେଗୁଂଲା । ୨୯୧୦ ।
ନବ ସାଗର ଦେବୀ ଯେ ନାଗରୂପ କାଏ
ଏ ଥାଠେ ସେନାପତ ହୋଇଲେ ମହାମାଏ ।
ଅହୋ ପକ୍ଷୀ ଶ୍ୱାନ ମୃତ ଚନ ସଂଗର ରୂପୀ
ମକ୍ଷେଣ ଶିର ଗଗନେ ଚରଣ କ୍ଷେପି ।
ଅତଅନ୍ତ ମହା ବଇରାଗ ବରାହୀ ମୁଖ ଚଣ୍ଡୀ
କପ୍ରୀଣ୍ଡି ହସ୍ତୀମୁଖ ସିନ୍ଦୁରେଣ ମଣ୍ଡି
ମହାଘୋର ରୂପ ଏହାଙ୍କର ବଳ ତେଜ ଘେନ
ଏ ଥାଠେ ସେନାପତ ଜମ୍ଭୁଶ୍ୱରୀ ହାଥୀ ବାହାନ ।
ଘୋରରୂପ ବକଟାଳ ସେ ମନୁଷ୍ୟର କାୟା
ଏ ଥାଠେ ସେନାପତ ସେ ହେଲ ଦେବୀ ଛାୟା ।
ପଦ୍ମେକ ଦେବୀ ଶୂକର ରୂପ ମୁଖୀ
ରୋମ ପିଙ୍ଗଳାକ୍ଷୀ ପୃଥ୍ୱୀ କ୍ଷଣ କ୍ଷଣେକେ ଖେପି ।
ଛନ ପଦ୍ମ ଦେବୀ ବାଘ ବାହାନ
ଏ ଥାଠେ ସେନାପତ ଗୃଚକା ରୂପ ଖାନ ।
ଖଲୁଙ୍କ ବଦନୀ ଚଣ୍ଡୀ ଯେ ପଦ୍ମେକ ଉତ୍ତମା
ଏ ଥାଠେ ସେନାପତ ବିକଳାଣ ମହାକାମା ।
ଶାର୍ଦ୍ଦୂଳ ବ ହାନ ଶତ କୋଟି କାଏ
ଏ ଥାଠେ ସେନାପତ ଗୋଳମା ମହାମାଏ ।
ନବ ପଦ୍ମ ଚଣ୍ଡୀ ରୂପ ଜମ୍ଭୁକା
ଏ ଥାଠେ ସେନାପତ କୁମାରୀ ମାରର୍କି । ୨୯୨୦ ।
ନବ ଲକ୍ଷ ଚଣ୍ଡୀ ଯେ ଅଭଏ ଡାକେଶ୍ୱରୀ
ବାରସୁରନାମେ ଯେ ଚର୍ଣ୍ଡିକା ଆବୋର ।
ନବ ଲକ୍ଷ ଚଣ୍ଡୀ ଯେ ବରାଳ ମୁଖୀ
ଏ ଥାଠେ ରକ୍ଷା ସେ କରଇ ପିଙ୍ଗଳାକ୍ଷୀ ।
କାକ ମୁଖ ଯେ ଶତଲକ୍ଷ ଯେ ବଳ୍ପ
ଏ ଥାଠେ ସେନାପତ ହୋଇଲେ ବଗଯା ।
ଅନନ୍ତା ବଜସ୍ଥା କାତେଶ୍ୱରୀ କେତୁକା
ଷୋଳହ ବନ୍ଧଣୀ ଏ ଅଷ୍ଟ ବଜ ବମୁଖା ।
ଦକ୍ଷିଣୀ ଉତ୍ତରାଇ ମହା ବରାହୀ
ପାତାଳ ବାହେନୀ ଏ ଝେଇ ବାଝାଂଇ ।

ଏହାଙ୍କର ମୂଳେ ଅନନ୍ତ କୋଟି ଦେବତା
ସଙ୍ଖ୍ୟା କହିବାକୁ କିସ ମୋହୋର ମତ ।
ସେ ଦେବୀମାନଙ୍କ ଚରଣେ ଶିର ଲଗାଇ
ଶୂଦ୍ରମୁନି ସାରଳା ଦାସ ଅଭଏ ବର ମାଗଇ ।

—୦—

**ଶ୍ରୁଣ ପରୀକ୍ଷି** ରାଜା ବଦାନ୍ତ ଶୁକ ବ୍ରହ୍ମା
ଏତେଣେ ଅନେକ ଉତପତ ହୋଇଲାକ ନାମା ।
ଆକାଶ ମାର୍ଗ ଘୋଟିଲେ ଯହୁଂକାଏ
ଏକ ଶରୀର ଏତେକ ଦେବୀ ଉପୁଜାଏ ।
ଅସୁର ସଇନକ ପ୍ରତାପ ଦେବୀ କଲେ
ଚନ୍ଦ୍ରଗିରି ବିନ୍ଧ୍ୟଗିରି ମହାଗିରି ଏ ଗିରି ପର୍ବତ ପୂରିଲେ ।
ଲମ୍ବ ଲମ୍ବ ଜିଭ ଖାଖର କେଶ କାଣ୍ଡ ଖପର
ଶ୍ରୀ ଦୁର୍ଗାର ମୁଖ ଚାହିଁ ସେ ମାଗନ୍ତି ଆହାର ।
ଅସୁର ସଇନକ ଦେବୀ ଦେଖାଇଲେ ଦୃଷ୍ଟି
ଦେବାଇଲେ ଅସୁରବଳ ଭୁଞ୍ଜିଲେ ବାଣ୍ଟି ।
ମେଦ ମେଦା ମାଂସ ସମସ୍ତ ଏକ କରି ଖାଅ
ନ ଅଣ୍ଟଇ ବୋଲନ୍ତି ଅନାଅନା ହୁଅ ।
ଦୁର୍ଗା ବୋଇଲେ ଏଥିକି ଭ୍ରାନ୍ତ ନ କର ଭଗ୍ନୀ ।
ଆହୁରି ଅଛି ତୁମ୍ଭଙ୍କୁ ଅନେକ ସଇନ ।
ଅହୋ ତାହାଙ୍କ ଏସନେକ ଆଜ୍ଞା ଦେଲେ ମହାମାଏ
ଧାଇଁଣ ପଡ଼ିଲେ ଦେବୀ ଶେଣୀ ପକ୍ଷୀ ପ୍ରାଏ ।
ପର୍ବତ ତଳେ ଅଛି ଅସୁରଙ୍କର ସଇନ୍ୟ
ପର୍ବତ ଉପରୁ ଡେଇଁ ପଡ଼ିଲେ ଚଉଷଠି ଯୋଗ୍ନୀ ।
ଦୁର୍ଗା ବୋଇଲେ ସେ ନାରାୟଣୀର ଅଙ୍ଗେ
କାଳ କମୋଚନ ଥାଠ ହୋଇଲା ତୋହୋର ଖଣେ !
କାତ୍ୟାୟନୀର ଆଗେ ଯେ ବୋଇଲେ ଦେବୀ ଦୁର୍ଗେ
ସହସ୍ରାଶିରା ଯେ ହୋଇଲା ତୋହର ଖଗେ ।
ସନଧ୍ୟେଂ ଦୁର୍ଗେ ଯେ ହୁକାର ଉଗ୍ରତାର
ତୋହୋର ଖଡ଼ଗେ ହୋଇଲାଟି ଖଣ୍ଡର ଅସୁର ।
ଏ ପୁରକୁ ବୋଇଲେ ହୁକାର ଭବାନୀ
ପିଙ୍ଗଳାସୁର ଥାଠ ଭୁଞ୍ଜିଲେ ଜଳବଳ ଘେନ ।

ଦୁର୍ଗେ ବୋଇଲେ ଅସୁର ଶକ୍ତି ମୁଖ
ଯାଅନ୍ତେ କୋଠାଗ୍ନି ତାହାର ବଳ ଭକ୍ଷ ।
ପୁଣ ଚାଇଲେ ସନ୍ନଧ୍ୟେ ତ୍ରିପୁରା
ତୁ ଯାଇ ଭକ୍ଷ ଲୋ ଅସୁର ଜଏସୁରା ।
ସନ୍ନଧ୍ୟେ ଚାଇଲେ ଇନ୍ଦ୍ରାଏଣୀ ମୂର୍ତ୍ତି
ଯମଘଣ୍ଟ ଥାଠ ଭୁଞ୍ଜିଲେ ହୋଅସି ତ୍ରିପୁଣ୍ଡ ।
ପୁଣ ଦୁର୍ଗା ଚାଇଲେ ଯେ ମାରୁତି
ଜିଏ ସିଂଘ ଥାଠ ଲୋ ଆସ ତୁମ୍ଭେ ଭକ୍ଷି ।
ଭଇରେବୀ କ ସେ ଚାଇଲା ସନ୍ନଧ୍ୟେ
କପିଳ ସିଂଘର ଥାଠ ଭୁଞ୍ଜଲେ ତୁରେ ଯୁଦ୍ଧ୍ୟେ ।
ପୁଣ ସନ୍ନଧ୍ୟେ ଚାହିଲେ ଭଗବତ୍ତି
ତୁ ଯାଇ ଭକ୍ଷ ଯା ଜପାସୁର ସେନାପତି ।
ସନ୍ନଧ୍ୟେ ଦେବୀ ଯେ ଚାଇଲେ ପିଙ୍ଗଳାକ୍ଷୀ
ମହାଶିରୀ ଥାଠ ଲୋ ଆସ ତୁମ୍ଭେ ଭକ୍ଷି ।
ପୁଣ ସନ୍ନଧ୍ୟେ ଚାଇଲେ ଗୃଚକା
ଯୋଜନ ବାହୁ ଥାଠ ଲୋ ଭକ୍ଷି ଆସ ଏକା ।
ଦୁର୍ଗା ବୋଇଲେ ଶୁଣ ଲୋ ମାରକମା
ବକାସୁର ଥାଠ ଲୋ ଭକ୍ଷ ଯାଇ ଅମା ।
ପୁଣ ଦୁର୍ଗା ବୋଇଲେ ତୁ ଶୁଣ ଲୋ କାଳିକା
ପର୍ବତାସୁର ଥାଠ ଭକ୍ଷ ଲୋ ଯାଇ ଏକା । ୨୯୫୦ ।
ଦୁର୍ଗା ବୋଲେ ଶୁଣ ଆଲୋ ପୋଲମା
ଜମ୍ଭାସୁର ଥାଠ ଯାଇଂ ଭକ୍ଷ ଲୋ ଉତ୍ତକର୍ମା ।
ଆହୋ ପଞ୍ଚାକ୍ଷ ଚାଇ ଜଣେ ଜଣେକ ଯୋଗ୍ନି ଚଉଷଠି
ଦୁର୍ଗା ବୋଇଲେ ଲୋ ଏହାନ୍ତ ଭୁଞ୍ଜ ବାଣ୍ଟି ।
ଦୁର୍ଗା ବୋଇଲେ ଯହୁଂ ମୁ ଦେଖିଲି ଅସୁର ବଳ ଜାଳକାଳି
ତେଣୁ କର ଜାତ ମୁ ଜଲଇ ଅଲପ ।
ସମୋଦ୍ର ପର୍ବତ ମିଶାଇ ପିଇଲେ ନ ଅଣ୍ଟଇ
ଏ ଜିସ ବଳ ଥାଠ ଅସୁର ବଳହୁଂ ।
ସେମନେକ ଦୁର୍ଗାର ବାକ୍ୟ ଶୁଣି
ବାହାନ ଆରୋହୁଂ ସେ ଧାଇଂଲେ ନାରାୟଣୀ ।
ଦେବୀ ଦେଖି ସେ ଅସୁର ବଳ ସଇନ୍ଧ
ଧାଇଂଲେ ପ୍ରବଳେ ସେ ଲୁହାର ଗଦା ଘେନ ।

ପିଟିଲେ ଯୋଗିନୀଙ୍କ ଯେ ପାଡ଼ିଲେ ବଜ୍ରଅଙ୍ଗ
ପଡ଼ି ଲୁହାର ଗଦା ସେ ହୋଇଛନ୍ତି ଭଙ୍ଗ ।
ଗଦା ଭଗ୍ନ ହୁଅନ୍ତେ ଅସୁରେ ଶୂନ୍ୟ ହସ୍ତ
ଧାଇଁଣ କଙ୍କାଳୀ ସେ ଧରଇ ଦୈତ୍ୟଙ୍କର ହସ୍ତ ।
ମେଦ ମେଦା ମାଂସେ ବଢ଼ାଇଲେ ହାଟ
ଧରଣ ଗିଳନ୍ତି ସେ ସକଳ ଦୁରିଷ୍ଟ ।
ନର୍ମପକ୍ଷ ଦାନବ ସେ ନ ଘୁଞ୍ଚନ୍ତି ରଣେ
ବୀରେକ ପଡ଼ିଲେ ଧାମନ୍ତି ଶତେ ଜଣେ । ୧୯୬୦
ଯେସନେକେ ଗଗନୁ ପଡ଼ଇ ନୀରଧାର
ତେସନେକେ ଦାନବ ବର୍ଷୁଛନ୍ତି ଶର ।
ଲକ୍ଷେ ପଦ୍ମ ସାଗର ମାରନ୍ତି ବୀର ତୋଳି
ଗଗନେ ଅଦୃଶ୍ୟ ହୋଇଲେ ଅଂଶୁମାଳୀ ।
ଦେବୀଙ୍କର ସମର ଯେ ଦେବଙ୍କୁ ଅଗୋଚର
ଶରୀରେ ପଡ଼ି ଶରେ ହୋଇଛନ୍ତି ଚୂର ।
କୋନ୍ତ ମୁଦ୍ଗର ତେଲ ଶାବେଳୀ
ଯୋଗିନୀଙ୍କର ଉପରେ ପଡ଼ି ହୋଇଛନ୍ତି ଧୂଳି ।
ବିନ୍ଧନ୍ତେ ଜଳନ୍ତି ସେ ନାରାଚ ତୀକ୍ଷ୍ଣ ମୁନା
ଶରୀରେ ନ ବହଇ ନାରାଚ ବଜ୍ରମୁନା ।
ସମର କରନ୍ତେ ଦେବ ଦାନେବ ଅଭଏ
ଅସୁର ବଳ ଦିଶଇ ସେ ଗ୍ରୀଗଲ ଫଳ ପ୍ରାଏ ।
ଦଂଷ୍ଟ୍ରି ଧରି ସେ ଆକାଶକୁ ଦିଅନ୍ତି ଫିଙ୍ଗି
ଫିଙ୍ଗି ତୁଣ୍ଡପାଡ଼ି ସେ ଗିଳନ୍ତି ଅତି ବେଗି ।
ଏକ ଗିଳନ୍ତେ ଆରେକ ନିଅନ୍ତି ଉଚ୍ଛୁଡ଼ି
ପ୍ରଳୟ କାଳ ପ୍ରାଏକ ଶୁଭଇ ଘୋର ରଡ଼ି ।
ପୃଥିରେ ପାଦେକ ସେ ଆକାଶେଣ ଦୃଷ୍ଟି
ଭୂମିରେଣ ଲମ୍ଫ ସେ ଦିଅନ୍ତି ବେନି ପାଟି ।
ଧଙ୍କାସୁର ଦାନବ ସେ ଅଶୀଲକ୍ଷ ଯୋଧ୍ୟା ଭୁଲେ
କୋଠାର ମୁଖେ ସେ ସମସ୍ତେ ପଡ଼ିଲେ । ୧୯୭୦
ଅଶୀଲକ୍ଷ ଯୋଧ୍ୟା ଯେ ପଡ଼ିଲେ ଏକ ମୁଠେ
ଅଙ୍ଗୁ ଝଲକନ୍ତି ସେ ନାରାଚ ମୂନ ତୀକ୍ଷେ ।
ପ୍ରଳୟାନ୍ତି ଅଗ୍ନି ତେଜ ପ୍ରାଏକ ପ୍ରଚଣ୍ଡ
ସେ ଶହସ୍ରମାନଙ୍କୁ ଦେବୀ ଛାଡ଼ଥାନ୍ତି ତୁଣ୍ଡ ।

ଏଲମା ପୋଲମା ମାକରମା
ଦାନବ ଗୃହିଁ ଏହାଙ୍କର ଗାଣମା ।
ଯୋଜନେକ ବିସ୍ତାର ସେ ବେନକର ଦର୍ଶି
ଯାନ୍ତିକେ ଅଶୀ ପଞ୍ଚାଶ ମାର କଗୁଡ଼ି ।
ଆଦ୍ୱୋ ପର୍ଣ୍ଣଷ ପର୍ବତ ପ୍ରାଏକ ବୃକ୍ଷସେ
ଖଡେ ଦୁଇଶତ ଏକ ନିମିଷକେ ହୋଅନ୍ତି ଗ୍ରାସେ ।
ଖୁଣ୍ଡେ ପୂରାଇଣ ଗୃପନ୍ତି ବେନ ପାଟି
ହାଡ ଚର୍ମ ମାଂସ ଯେ ସମସ୍ତ ଧୂଳି ଉଠି ।
ଶୁଣନ୍ତେ ଅନର୍ଥୀପ ଦେବୀଙ୍କର ଯୁଦ୍ଧ କଥା
ସଞ୍ଜପି କହିବାକୁ କେ ଅବା ଶକତା ।
ନାଚନ୍ତି ଧାମନ୍ତି ଗାବନ୍ତି କୁତୁହଳେ
ବିହଡ଼ ବିକଟାଳ ସେ ମଦ୍ୟର ପାନ ଖେଳେ ।
ମହା କଉତୁକ ହୁଳହୁଳି ନାଦେ
ପୃଥିବୀ ପୂରିଲା ସେ ଡାକ ଡମ୍ବରୁ ଶବଦେ ।
ରଥ ଗଜ ଅଶ୍ୱ ସେ ବାଛୁଣ ଧରି ଜଳାନ୍ତି
ମୁଣ୍ଡ ଗିଳି ଗୋଡ଼ ବାହାର ହୋଇଥାନ୍ତି । ୨୯୮ •

କଙ୍କାଳ ଖଣ୍ଡ ସେ ଗୃପନ୍ତି ବିକଟ ଦାଢ଼
ଗୁଣ୍ଡା ହୋଇ ଉଠଇ ପର୍ବତ ମହାହାଡ ।
ଗୃପନ୍ତେ ଦାନ୍ତ ଯେ ବାଜଇ ରଟମଟ
ଉପରକୁ ଫିଙ୍ଗିଲେ ଅସୁରେ ହୁଅନ୍ତି ଛଟପଟ ।
ଅଶୀଲକ୍ଷ ଯୋଧ୍ୟା ଯେ ଧଙ୍କାସୁର ସଙ୍ଗେ ଥିଲା
ପହରକ ମଧ୍ୟେ ସେ ଥାଠଯାକ ନିମଞ୍ଜିଲା ।
ଏଲେମଃ ଗୋଲମା ମାକରମା କୋଠାଙ୍ଗ
ଅଶୀ ଲକ୍ଷ ଯୋଧ୍ୟା ଯେ ଭକ୍ଷନ୍ତି କଣ ଗୃର ।
ସଇନ୍ୟ ପଡ଼ନ୍ତେ ସେ ଧଙ୍କାସୁର ଉଠି
କୋଠାଙ୍ଗ ଉପରେ ଲକ୍ଷେକ ଭାର ଗଦା ନେଇଁ ପିଟି ।
ଲୋହାର ଗଦା ସେ ପାଡ଼ିଲା କୋଠାଙ୍ଗ କାପାଳି
ପର୍ବତ ସମାନ୍ୟେ ଗଦା ସେ ହୋଇଗଲା ଧୂଳି ।
ଗଦା ଭଙ୍ଗତେ ସେ ହୋଇଲେ ଶୂନ୍ୟ ହସ୍ତ
ଭୁଣ୍ଡ ବିସ୍ତାରି ଧାଇଁଲା ସେ ଧଙ୍କାସୁର ଦଇତ ।
ଗୃନ୍ତ ଦେବୀଙ୍କ ଯେ ଆକର୍ଷି ଧଙ୍କାସୁର ଦଳି
ଧାଇଁ ଦେବୀମାନେ ଯେ ଆଗରେ ଓଗାଳି ।

ଦାରୁଣି ଅସୁର ପାଦ ଧଇଲେ ପୁଲମା ମାରକମା
ଦୁଇ ଫାଳ ହୋଇଲା ସେ ଅସୁର ବଳମା ।
ପୁଲମା ମାରକମା ସେ ଗିଳିଲେ ଦୁଇ ଖଣ୍ଡ
ଅନେକ ଆନନ୍ଦ ହୋଇଲେ ସପତ ବ୍ରହ୍ମାଣ୍ଡ ।
ଆକାଶେଣ ଥାଇଂ ସେ ଦେବ ଦେବପତ
ସେ କୋଠାଣ୍ଟ କ ଧାତା ହେ କରଇ ଅନେକ ସ୍ତୁତ
ଜୟତୁ କରବାଳ କୋଠାର କଟାକ୍ଷି
ପ୍ରସନେ ଅଭଏ ତୁ ମାତାଙ୍ଗୀ କାମାକ୍ଷୀ ।
ଭଗତ ଜନ ମଣ୍ଡଳୀ ଗୋ ମୋହୋନୀ କାମସେଣୀ
ଦେବ କୁଳ ପାଳେଣୀ ସେ ତ୍ରୈଲୋକ୍ୟ ଦୁଳଣି ।
ଆପାଦ ଅବସ୍ଥା ଘୋର ଦୁଃଖ ଖଣ୍ଡି
ଅସୁରନ୍ତ ବଧ କରି ଦେବଙ୍କର ପୁର ମଣ୍ଡି ।
ଏ କଳିକାଳ ସାଗର ସଂସାର ମୋହୋନୀ
ପ୍ରସନ ମାହେଶ୍ୱରୀ ପାତେକ ଦୁଃଖ ନାଶିଣୀ ।
ମାଗୋ ଯେବଣ ଧଙ୍କାସୁର ଗିଳିଲା ପୃଥିବୀ ଜନମାନ
ଏହାର ଭଏ ପଳାଇଲ ସମସ୍ତ ନାଜ ସଗ୍ୟ ।
ତପୀମାନନ୍ତ ଯେ ଜଳା ଅଦ୍ୟାପି
ଧଙ୍କାସୁର ନାଶନେ ସେ ତରିଲେ ସକଳ ତପୀ ।
ଆହୋ ବ୍ରହ୍ମା ଯାହାକୁ ଅନେକ ବିନୟ ସୁଟତ
ମୁହିଂ ମନୁଷ୍ୟ ଜନ୍ମେ କସ କରିବ ଭଗତ ।
ଶ୍ରୀ କୋଠାଣ୍ଟି ଚରଣେ ଶରଣ ନଛେୟଂ
ବଦନ୍ତି ସାଲୋଳ ଦାସ ଧୂଳିସା ହୃଦଗତେ ।



**ଶୁଣ ପରୀକ୍ଷ** ରାଜା କୋଠାଣ୍ଟି ମହିମା
ମୋହୋନୀ ନାମ ଦେଲା ସେ ବେଦବ୍ରହ୍ମା ।
ତପୀଙ୍କର ଆଶ୍ରମ କଲୁ ମାତ ରକ୍ଷା
ଭଗତ ଜନମାନଙ୍କୁ ପୂରାଇଲୁ ମନବାଞ୍ଛା ।
ଧଙ୍କାସୁର ଦାଇତ ସହୁଂ ହୋଇଲା ନିଧନ
ତପୀମାନେ କରନ୍ତି ଶାନ୍ତି ମନ୍ତ୍ର ଧ୍ୟାନ ।
ଧଙ୍କାସୁର ନିଧନ ଦେଖି ଅସୁର ଝିଅମ୍ବିକା
ଅଷ୍ଟବକ୍ର ହୋଇଂ ଧାମଇ ଦନୁଜ ଏକା ।

ଅଙ୍କୋଶ ମସ୍ତକେ ଲଗୁଅଛୁ ନିଅମ୍ବୁକାସୁର
ଯୋଜନେ ଯୋଜନେକ ବେନି ଭୁଜ ତାହାର ।
ମଞ୍ଚପୃଷ୍ଠରେ ପାଦି ସେ ଆକାଶେଣ ଓଷ୍ଠ
ତ୍ରିଭୁବନ ମଧ୍ୟେ ଏକାକା ନିଅମ୍ବୁକା ଘୋର ।
ନିଅମ୍ବୁକା ମୂରତି ଦେଖି ଦେବୀ ଦୁର୍ଗେ
ଆଦ୍ୟନ୍ତ ଅଦୃଶ ହୋଇଅଛୁ ସ୍ୱର୍ଗେ ।
ଦୁର୍ଗା ବୋଇଲେ ମୋହୋର ସମ୍ମୁଖରେ ଅସୁରର ଏଡ଼େକ ଗାରିମ
ନିଅମ୍ବିକାସୁରକୁ ଲେ ମାର ମାରକମା ।
ଦୁର୍ଗାର ବଚନେ ମାରକମା ଉଠି
ବାମ କରେ ଶୂଳ ଯେ ଡାହାଣ କରେ ଘାଠୀ ।
ଧନୁ ଦ୍ରୋଣ ଧରି କୋଠାର ଧରି
ମହା ମତ୍ତଗଜ ପିଠିରେ ବଜେ କରି ।
ଲିହ ଲହ ଜିଭ ମୂରତି ଶାକମ୍ବରୀ
ନିଅମ୍ବିକା ସମାନେ ତାର କାୟା ବସ୍ତାରି । ୩୦୧୦ ।
ବ୍ରହ୍ମାଣ୍ଡ ଘୋଟିଲ ସେ ଅଭଏ କାମରୂପୀ
ଅସୁର ଉପରେ ନେଇ ବଜ୍ରଶୂଳ ପିଟି ।
କୋଟିଏ ସୂର୍ଯ୍ୟ ତେଜ ଦେଖିଣ ଦୂରୁପାତେ
ପଡ଼ନ୍ତେଣ ଶୂଳ ଯେ ଧଇଲେ ବାମହସ୍ତେ ।
ସେହି ଶୂଳ ବୁଲାଇଣ ଲେଉଟାଇ ପିଟି
ମାରକମାର ଯେ ଫଡ଼ିଲା ଲଲାଟ ପାଟି ।
ପର୍ବତ କମ୍ପିଲେ ପଡ଼ନ୍ତେଣ ଶୂଳ
ଶତେ ଚୂର ହୋଇ ପଡ଼ିଲା କପୋଳ ।
ଶୂଳ ଲାଗନ୍ତେଣ ପ୍ରଶଂସଇ ଦ୍ରମିଷ୍ଟଇ
ବଜ୍ର ମୁଦ୍‌ଗରେଣ ଧରିଣ ନେଇ ଝିଟଇ ।
ମୁଦ୍‌ଗର ପଡ଼ନ୍ତେଣ କମ୍ପିଲାକ ପୃଥ୍ୱୀ
ମାରକମା ଉପରେ ପଡ଼ି ଭାଙ୍ଗିଗଲା ତତକ୍ଷଣାନ୍ତ ।
ପୁଣ କପଟେକ ଧରି ନିଅମ୍ବିକ
ଦେବୀର ଉପରେ ନେଇଂ ପ୍ରହାର କଲାକ
ଲୋହାର ପ୍ରାଏକ ଯେ ଦେବୀର ବଜ୍ର ସ୍ନେନ୍‌ହଃ
ଅଭେଦ କପଟେ ପଡ଼ି ହୋଇଲାକ ଚୂନା ।
ପୁଣ ଅଗ୍ନିବାଣେକ ଯେନ ନିଅମ୍ବିକାସୁର ପ୍ରଭାବ
ମାରକମା ଉପରେ ପଡ଼ି ସେ ଅଗ୍ନି ଗଲା ଲିଭି ।

ଲୁହାର ବେନି ଗଦା କୋଟିଏ ହସ୍ତ ଭାର
ତାହା ଘେନି ପିଟିଲା ଦୈତ୍ୟ ଦେବୀର ଉପର । ୩୦୨୦ ।

ଦୁଇ ଗଦା ପଡ଼ିଲା ସେ ଖଣ୍ଡଗ୍ର ବେନି କାଠି
ଗିରିବର ସମାନ୍ୟେଣ ଗଦା ଗୁଣ୍ଡମଏ ଉଠି ।
ପବନୁ ବେଗ ମାରଇ ଦେଖିଣ ନୁଆର
ଗୁରୁଜ କୋନ୍ତ ଯାଠି ଘେନି ତ୍ରିଅମ୍ବିକ ମାର
ଆହୋ ପକ୍ଷକ ସମର କରନ୍ତେଣ ତ୍ରିପହର ଗାଢ
ଶସ୍ତ୍ର ବଘାତେ ସେ ଅଗ୍ନି ଝଲକନ୍ତି ।
ଦାବଣ ପ୍ରାଏ ସେ ଦଶଇ ରଣଭୂମି
ନ ଭଜନ୍ତି ଦାନବେ ସେ ବେଳେ ବେଳେ ଉତକର୍ମି ।

ଶତେ ବାର ପରସନ୍ତେ ପ୍ରହାର କଲା ତ୍ରିଅମ୍ବିକା
ଅସୁର ବଘାତ ଦେବୀ ମାରକମା ସହଇ ଏକା ।

ଶସ୍ତ୍ର ସରନ୍ତେ ଯେ ହୋଇଲା ଶୂନ୍ୟହସ୍ତ
ପୋଡ଼ିଲା ପର୍ବତ ପ୍ରାଏ ଉଭା ହୋଇଅଛି ଦୈତ୍ୟ ।

ନବ ନଶୀ କରବାଲେକ ବୁଲଇ ମାରକମେ
ଅସୁର ବକ୍ଷସ୍ଥଳେ ସେ ହାଣିଲା ମହାତମେ ।

ଦେହରେ ନ ବାଜି ସେ ହାବୋଡ଼ି ଗଲା ବାଜି
ଉତ୍ଥାନ ସାଙ୍ଗ ହୋଇଂ ଅସୁର ପଡ଼ିଲା ଗଳଗାଜି ।

ମାରକମା ମାଡ଼ି ବସିଲା ଅସୁର ବକ୍ଷସ୍ଥଳ
ଦୁଇ ପାଟି ଗୃପିଲ ସେ ହୋଇଲା ବେନିଫାଳ ।
ଅସ୍ଥି ଚର୍ମ ମାଂସ ରୋଧିର ସହିତେ
ଅସୁର ଶରୀର ଗିଳିଲା ଗର୍ଭଗତେ । ୩୦୩୦ ।

ଆହୋ ପକ୍ଷକ ତ୍ରିଅମ୍ବିକ ଜିଣି ସେ ତ୍ରିଅମ୍ବିକା ନାମ
ନେଉଟାଇଂ ଯୁଦ୍ଧେ ତାହାକୁ ଭକ୍ଷିଲେ ମାରକମ ।
ଅନେକ ହୁଲସ ହୋଇଲା ବସୁମତୀ
ଅମୃତ ବୃଷ୍ଟି ପ୍ରାଏକ ହୋଇଲା ପୃଥୀ ।

ଶ୍ରୀ ମାରକମା ଚରଣେ ଶରଣ ଯୁଗତେ
ଶୂଦ୍ରମୁନି ସାରଳ ଦାସ ପ୍ରଣମିତ ନିତ୍ୟେ ।

—o—

ଆହୋ ନିଅମ୍ବିକାସୁର ଯେ ପଶିଲାକ ରଣେ
ଅନେକ ଉପତ ଯେ ହୋଇଲେକ ଦେବ ଗଣେ ।
ପଞ୍ଚଦଶ କ୍ଷୌଣୀ ଯେ ନିଅମ୍ବିକା ଆଠ
ଏକୁ ଏକ ଦାନବେ ମହା ବଳିଷ୍ଠ ।
ପାଶ ପ୍ରଶୁ ଗଦା ମୁଦ୍ଗର ଘେନି ଉଠି
ନାନା ଆୟୁଧ ଘେନ ମାରନ୍ତିମାହାଂ ନେଇ ପିଠି ।
ଦେଖିଲେ ଅସୁର ବଳ ସୈନ୍ୟ ମହାମାଏ
ତିନି କୋଶ ଯେତେ ମାଳ ରକ୍ତ ବର୍ଣ୍ଣ ପ୍ରାଏ ।
ବିନ୍ଧ୍ୟ ଗିରି ପ୍ରବତୁଂ ପଡ଼ିଲେ ଦେବୀ ଡେଇଁ
ସ୍ୱର୍ଗ ମର୍ତ୍ତ୍ୟ ତୁଣ୍ଡ କରିଣ ଅସୁରନ୍ତ ଖାଇଂ ।
ଯେସନେକ ଜଳ ପର୍ବତ୍ରୁ ପଡ଼ଇ ଖସି
ନିଶ୍ୱାସକେ ସଂଘରିଲେ ଗର୍ଭେ ଥାନ୍ତି ପଶି ।
କେ ଶର ବନ୍ଧନ୍ତି କେ ହାଣନ୍ତି ଧରି ଖଣ୍ଡା
କେ କୋନ୍ତେ ଯାଠୀ ମାରନ୍ତି ପ୍ରଚଣ୍ଡା ।
ସମସ୍ତ ଶସ୍ତ୍ର ମାନ ଯେ ପଡ଼ୁଅଛୁ ଗର୍ଭେ
ତୁଣ୍ଡ ନ ପୂରଇ ଧାମନ୍ତି ମତ୍ତ ଗର୍ବେ ।
ଏକା ଘାତକେ ପାରନ୍ତି ବେନି ବେନି ପାଟି
ଗର୍ଭରେ ପଶନ୍ତି ଅସୁର ହୋଇଣ ଲକ୍ଷ କୋଟି ।
ପଞ୍ଚଷଠି ସହସ୍ର ଯେ ନିଅମ୍ବିକାର ବଳ
ନବ ଘଡ଼ି ମଧ୍ୟେ ସେ ଭକ୍ଷିଲେ ସକଳ ।
ରକତ ଲତାକେହି ନାହିଂ ହାଡ଼ ଗୋଡ଼
ଅନ୍ତ ପୁଟି ଆଦି କରି ଯେ ହୋଇଲେ ସର୍ବ ଚୂର୍ଣ୍ଣ ।
ଆହୋ ପକ୍ଷୀ ଏସନକ ସମରି ଚଣ୍ଡୀ ଯୁଦ୍ଧ କଥା
ମନୁଷ୍ୟ ଜନ୍ମ ହୋଇ କେ ପାରିବ ଲେଖନ୍ତା ।
ବଜ୍ରାଙ୍ଗ ଦଇତ ଖାସ୍କର ଅସୁର
ଦୁହିଂଙ୍କର ତୁଳେ ଯୋଧ୍ୟା ପନ୍ଦର ସାଗର ।
ରଣେ ଅଜଏ ହୋଇ ଅସୁରେ ଆସୁଛନ୍ତି ଭଙ୍ଗି
ବଜ୍ରାଙ୍ଗ ଦଇତ ଖାସ୍କର ଦଇତ ଦୁହେଂ ରହିଲେ ଗଳଗାଜି ।
ଆହୋ ପକ୍ଷୀ ଯେସନେକେ ସିନ୍ଧୁ ଆବୋରଇ କୂଳ
ସାତଗୋଟା ମନ୍ଦର କି ରହିଲ ଅଚଳ
ଦେଖିଲେକ ଦୁର୍ଗା ଅସୁର ରୂପ ଝଣ୍ଟି
କଣ୍ଠରୁ ଜାତ କଲେ ଜୟଚଣ୍ଡୀ ସମଚଣ୍ଡୀ ।

ବିମ୍ବାଂସୁଣୀ କୁମାରୀ ମାରୁଚୀ ଅମରାଇ
ଚମାଇ ଚନାଇ କାପଡାଇ ବପୁଲାଇ ।
ଏ ସ ତ ଭଉଣୀଙ୍କି ବୋଇଲେ ତୁମ୍ଭେ ଯାଅ
ବଜ୍ରାଙ୍ଗ ଭସ୍କରର ଲେ ସଇନ୍ୟ ବାଣ୍ଟି ଖାଅ ।
ଦୁର୍ଗାର ଆଜ୍ଞାଂ ପାଇଣ ସେ ସାତଭଉଣୀ
ବ୍ରହ୍ମାଣ୍ଡ ଘୋଟିଲେ ସେ ଶ୍ରୋଣେହା ଯୁଥ ଜାଣି ।
ଶୁଣ ହେ ପରୀକ୍ଷ ଜସ୍ମ ଚଂଡ଼ୀର ମହିମା
ଯୁବା ବୟସ ହେଲେ ଷାଠିଏ ବାମା ।
ମଦନ ଶର ବାଣେ ଗୃହ୍ନଂଲେ ଅପାଙ୍ଗେ
କାମ ଶର ଭେଦିଲ ସେ ଦଇତଙ୍କ ସର୍ବାଙ୍ଗେ ।
ମଦନ ଶରେ ସଭଏଁ ହୋଇଲେ ଅସାଷ୍ଟମ
ଶାସ୍ତ୍ର ବାହାନ ଭେଳ ହୋଇଲେ ମତଭ୍ରମ ।
ମାତାଙ୍ଗୀ କାମାକ୍ଷୀ ମୋହନୀ କାମସେଣା
କାମଅର୍ଥେ ଦାନବେ ହୋଇଲେ ସର୍ବ ବଣା ।
ଶୃଙ୍ଗାର ଦେବା ବୋଲି ଆସୁଛନ୍ତି ଭଂଡ଼ି
ହିଙ୍ଗିଳ ପର୍ବତେ ବସି ସୁଖେ ଥାନ୍ତି ଚଂଡ଼ୀ ।
ସଙ୍ଗାତ ସଙ୍ଗାତ ବୋଲିକେ ଭୁଜେ କରନ୍ତି କୋଳ
ନଖେଂ ବିଦାରକେ ଚରନ୍ତି ବେନି ଡ଼ୋଳ ।
ଆକାଶକୁ ପକାଇ ଦେଇଂ ତଳେ ପାତନ୍ତି ତୁଂଡ ।
ଗୃପନ୍ତେ ଧୂଳି ହୋଅଇ ଗୋଡ଼ ମୁଂଡ ।
ହସ୍ତ ଦେହେ ଦେଇଂ ମୁଖେ ଚୁମ୍ବନ୍ୟ ଦେଇଂ
ତୁଂଡ଼ ଭିତରେଣ ଦେଇ ମୁଂଡ଼ ତ ଗୈବାଇ ।

ଆରେକ ଚଂଡ଼ୀ ଖଂଡେ ଚୁଂଡ଼ାଇଣ ନେଲା
ତାହା ତହୁଂ ପୁଣ ଆନ ଖାଇଲା ।
ଏକ ସଙ୍ଗତେ ଆରେକ ତୁଂଡ଼ ପାତଇ
ନାନା କଉତୁକ କରି ସେ ଭକ୍ଷିଲେ ଦୁରାନ୍ତକ ହିଂ ।
ଏକା କ୍ଷଣକେ ଲକ୍ଷେ ଜଣ ଖାଇ
ତଦାପି ନ ଅଣ୍ଟଇ କ୍ଷୁଧାରେ ବୋବା ଦେଇ ।
ଆହୋ ଅସୁର ବଳ ସଇନ୍ୟ ଯେ ବକ ଯୁଥ ପ୍ରାଏ
ଶେଣା ପକ୍ଷୀ ପ୍ରାଏ ହୋଇଲେ ମହା ମାଏ ।
ଆହୋ ଜଏଚଂଡ଼ୀ ବୋଲି ଯେକଣ ଚଂଡ଼ୀ ଗୋଟି
ସମୁଦ୍ର ସମାନ୍ୟେ ରୁଧିର ତାହାକୁ ନ ଅଣ୍ଟି ।

ସୂର୍ଯ୍ୟ ନ କଲା ନ ହାଣିଲା ଏକାକଣେ
ନିବୁକ୍ତି ପକାଇଲା ସେ ମୋହୋନା ଶରବାଣେ ।
ଅସୁର ବଳ ସଇନକ ଯେ ଲଗାଇଲା ଭେଲକ
ଯୁଝି କରି ନ ପାରି ସେ ମୋହ ହେଲେ ଦେଖି ।
ଆହୋ ପରୀକ୍ଷ ରାଜା ବଦନ୍ତି ବରାହ୍ମି ବଳଇ
ଭଗାଇ, କରାଇ, ରଙ୍କାଇ, ଶାମଳାଇ ।
ଦୁଲଣାଇ, ଅମରାଇ ହରାଇ
କାମାଇ, ବିମଳାଇ ବଣାଇ ଗୃଚକାଇ ।
ଏମାନନ୍ତ ରାଇଂ ଆଗ୍ୟାଂ ଦେଲେ ଦୁରଗେ
ନାନା ଅବସ୍ଥା କରିଲେ ଦଇତଙ୍କୁ ଭକ୍ଷ ବେଗେ । ୬୭୦ ।

ଏସନେକ ଆଗ୍ୟା ଦେଲେ ଜଗତ ମାତା
ଆକାଶେ ଝେପିଲେ ସେ ହୋଇଲେ ଇଚ୍ଛାସ୍ଥାତା ।
ଛିନ ମୁଣ୍ଡା ବୋଲି ଉଗ୍ରତାରା ମାରକମା
ଅସୁର ବଳ ସଇନ କ ଯେ ଏହାଙ୍କ ବଡ଼ିମା ।
କାଳେ କର୍ଣ୍ଣକଠାରି କାତି ଖପର ଖଣ୍ଡା
ଭଇରେବୀ ବାଶେଳୀ ଗୃରି ଅମ୍ବିକା କୋଠାଘ୍ରି କୃମଣ୍ଡା ।
ଅଠାଇଶି ଦାନବଙ୍କୁ ସେ ଅଠାଇଂଶି ଚଣ୍ଡୀ
ରୋଧରେ ବିଲେପନ ସିନ୍ଦୁରେ ମୁଖ ମଣ୍ଡି ।
ଜଡ଼ା ଗୃଙ୍ଗୁ ଘୁମୁରା ମର୍ଦ୍ଦଳ ଦାମଣ୍ଡି
ମଦିରା ରସପାନେ ମତୋଆଲ ଝେମଟା ନାଚ ଖଣ୍ଡି ।
ଲାଗିଲା ମହାରସ ମତାରଙ୍ଗ ମଉଆଲ ନାଚ
ପଣ ପଣ ଘୁମୁରା ଯେ ମୃଦଙ୍ଗ ତରାଚ ।
ଆପାଦ ବିନାଶନୀ ସେ ମଦିରା ରସେ ଝେଡ଼ି
ବ୍ରହ୍ମାଣ୍ଡ ଉଚ୍ଛୁଳୁଛି ମୁଖରାବ ରଡ଼ି ।

ଅସୁରଙ୍କ ସହସ୍ରକ୍ର ନ କରନ୍ତି ଭଏ
ବଜ୍ର ନିର୍ମିତ ଦେହ ବଜ୍ରଶିଳା ପ୍ରାଏ ।
ସମର କରନ୍ତେ ସେ ସ୍ନେହ ବେନି ପହର ଘେରି
ଲକ୍ଷେକ ଦାନବ ସେ ଜଳିଲା ଉଗ୍ରତାରା ।
ସ୍ନେହା ଘାନ୍ତକେ କୋଳ କରନ୍ତି ଦରାଣ୍ଡି
ଯୋଜନେକ ବିସ୍ତରି ସେ ବେନି ଭୁଜ ଝଣ୍ଡି । ୬୮୦ ।
ଲକ୍ଷକ ବେନି ଲକ୍ଷେକ ଚଉଦ ଲକ୍ଷ ଦାନବ
କାଳରୁଦ୍ର ପେଟକୁ ଏତେକେହେଂ ନୋହିଲା ଠାବ ।

ଏକାଥରକେ ଯେ ଏତେକ ଦୈତ୍ୟ ଦଳ
ଶୂଳରେ ବସନ୍ତି ରେଜୁ ପେଟ କଙ୍କାଳୀ । ୧
କୋଟି ଅଗ୍ନି ଜାଣି କାଳାନଳ ବହ୍ନି
ପିଙ୍ଗଳ ଜ୍ୱାଳାବଳୀ ଯେ କାଳ ରୁଦ୍ର ଜ୍ୟୋତି ।
ମହା ଭଇରବ ଅଗ୍ନି ପ୍ରଳୟାନ୍ତ ଅଗ୍ନି
ବୈଶ୍ୱାନର ଅଗ୍ନି ଊରୁମିଳା ଦହନ ।
ଯୋଗଅନଳ ଦାବାଅନଳ ବୈଶ୍ୱାନର ଅନଳ
ମହାଅନଳ ବାଡ଼ବାନଳ ଲୋହିତ ପିଙ୍ଗଳ ଜାଳ ।
ଏ ପଞ୍ଚବିଂଶ ଅଗ୍ନି ଯେ ଦେବୀଙ୍କ ପେଟରେ
ଏସନଙ୍କ ଉଦର ଦେବୀଙ୍କର ଅଟଇ ।
ଜୟଚଣ୍ଡୀ ରାମଚଣ୍ଡୀ ମାରୁତୀ ବଜ୍ରେଶ୍ୱରୀ ତହୁଁ
ଅସୁର କୁଳ ବନସ୍ତ ଏ ଦାବାଅନଳ ବହ୍ନି ଅଗ୍ନି ।
ଗୃଧ୍ରକା କାଶେଳୀ କୋଠାରୀ ପ୍ରଚଣ୍ଡ ନଦୀଘ ବନ
ଅନ୍ତକାଳେ ଦହିଲେ ଯେ ଅସୁର ବନ ସୈନ୍ୟ ।
ସୈନ୍ୟବଳ ପଡ଼ନ୍ତେ ବଜ୍ରାଙ୍ଗ ଭାସ୍କର
କୋଟି କୋଟି ବଳ ତନୁ ଧରିଛନ୍ତି ବୀର ।
ପଞ୍ଚକୋଟି ନାରାୟ କଙ୍କପକ୍ଷୀ ତୀକ୍ଷ୍ଣମୁନା
ରାମଚଣ୍ଡୀ ଜୟଚଣ୍ଡୀ କି ସେ ବିନ୍ଧିଲେ ବହନା । ୩୦୧୮ ।
ରାମଚଣ୍ଡୀର ସମର ଯେ ବଜ୍ରାଙ୍ଗ ଦୈତ୍ୟ ଭୁଲେ
ଭାସ୍କର ଦୈତ୍ୟର ଭୁଲେ ଜୟଚଣ୍ଡୀ ଯୁଦ୍ଧ କଲେ ।
ଆଉ ଦେବୀମାନେ ଯେ ପଡ଼ୁଛନ୍ତି ମାଡ଼ି
ଅସୁର ବଳ ଧ୍ୱଂସିଲେ ଏ ଦୁହିଙ୍କ ଗୁଡ଼ି ।
ଅସୁର ବଳ ନାରାୟ ବିନ୍ଧନ୍ତି ଏକ ମୁଖ
ଅବିଛିନ୍ନେ ବିନ୍ଧିଲେ ନ ଭେଦନ୍ତେ ଅତି ଦୁଃଖ ।
କ୍ରୋଧର ବିଲୋପନ ଯେ ଦେବୀଙ୍କର ଅଙ୍ଗେ
ଅବିଛିନ୍ନେ କୁତୂହଳ ନାଚନ୍ତି ବିଷମ ରଣ ରଙ୍ଗେ ।
ଆହେ ପକ୍ଷୀକ୍ଷ ବଜ୍ରାଙ୍ଗ ଦୈତ୍ୟ ଭୁଲେ ରାମଚଣ୍ଡୀର ସମର
ଦେବଙ୍କୁ ଦୁର୍ଲଭ ସେ ମାନବେ ଅଗୋଚର ।

---

୧ । (ଖ) ଶୂଳର ବସଇ ଦଉଡ଼ି ରେ ଯୁଟପେଟ କଙ୍କାଳ
(ଗ) ଶିର ରଜୁ ପ୍ରାୟେ ବସଇ ପେଟ ଝଙ୍କାଳ ।

ଏକାଦଶ ମୁଖ ଯେ କାଳାନଳ ଶକତ
ହୁଦେଣ ପଡ଼ି ଫୁଟି ପିଠି କଠ ।
ଘାଏଣ ଦାନବ ଯେ ହୋଇ ଉତ୍ଥାନ ସାଙ୍ଗ
ବକ୍ଷସ୍ଥଳେ ମାତ ବସିଲେ ମହାମାଇ ।
ଆହେ। ପରୀକ୍ଷ ବ୍ରହ୍ମାଙ୍କୁ ନବ ସହସ୍ର ବରଷ ତପ କଲ୍ଲ
ଅଭୟ ବର ମାଗି କ୍ଷଣକେ ପାଇଲ୍ଲ ।
ବଜ୍ରାଙ୍ଗ ଦୈତ୍ୟକୁ ଯେ ବଜ୍ରାଙ୍ଗ ଶକତ
ଏଣେ ସେ ମୃତ୍ୟୁ ତାହାକୁ ହୋଇଲା ପ୍ରାପତ ।
ବଜ୍ରାଙ୍ଗ ପଡ଼ିବା ଦେଖି ବୃନ୍ଦାଅର୍କେ
ରାମଚଣ୍ଡୀର ଶିରେ ସୁବର୍ଣ୍ଣ ବୃଷ୍ଟିକଲେ ଦେବଲୋକେ ।୩୯୮୦।
ଭ୍ରଣନେ ପ୍ରସନ ନମୋ ଶାନ୍ତ ମୃତ
ରାମଚଣ୍ଡୀ ସୁମରନ୍ତେ ଦୁର୍ଗତ ମାୟା ଫିଟି ।
ନାମକୁ ସୁଲଭ ଯେ ଶୁଣିମାକୁ ସରସ
ଅନୁବ୍ରତେ କହୁଂ କହୁଂ ଖଂଡ଼ଇ ମହାକ୍ଳେଶ ।
ତାହାର ନାମ ସୁମରନ୍ତେ ଯମର ଅର୍ଗଳ ଭାଜଇ
ଦାରିଦ୍ର୍ୟ ଅବସ୍ଥା ନାଶ ଯାଇ ସନ୍ତାନ ଉପୁଜଇ ।
ଦୁସ୍ତର ତାରଣୀ ଶ୍ରୀ ରାମଚଂଡ଼ୀ କର ରକ୍ଷା
ହୃଦଗତେ ଚିନ୍ତ ନରେ ପୁରାଉ ମନବାଞ୍ଛା ।
ଯୋଗେ ଯୋଗେଶ୍ୱର ଜଗତଜନ ମାତାଏ
ସୁମରନ୍ତେ ମାତାଙ୍ଗୀ ସେ ଅଭଏ ବର ଦିଏ ।
ଶ୍ରୀ ରାମଚଂଡ଼ୀ ଚରିତ ପଢ଼ନ୍ତେ ଶୁଣନ୍ତେ
ବଦନ୍ତି ସାରୋଳ ଦାସ ତୁଳସୀ ଅଭଗତେ ।



ଶୁଣ ପରୀକ୍ଷ ବଦନ୍ତି ଶୁକ ବ୍ରହ୍ମା
କହିଲେ ନ ସରଇ ସେ ରାମଚଂଡ଼ୀର ମହିମା ।
ଜୟ ଚଂଡ଼ୀ ଘୋର ଦୈତ୍ୟର ସମର
ଶର ବରଷନ୍ତେ ଅସ୍ତ୍ର ଗଳ୍ଲ ଦିବାକର ।
ଗଦା ମୁଦ୍‌ଗର କୋନ୍ତ ଶାବେଳୀ ଖଡ଼ଗ ଯାତୀ
ମାରନ୍ତେ ଜୟଚଣ୍ଡୀର ଶରୀର ନ ଫୁଟି ।
ଅସୁରେଶ୍ୱର ଯେ ମାଇଲା ଆଦ୍ରାବଳୀ
ଗୁଣ ଘୃଷ୍ଟ ଶବଦେ କମ୍ପିଲା ମହୀସ୍ଥଳୀ । ୩୯୯୦ ।

ଲୋହାର ବେନି ଗଦା ଘେନି ଭସ୍କର ଅସୁର
ମତ୍ତଗଜ ପ୍ରାଏକ ଧାଇଁଲା ଦାନେବ ମହାବୀର ।
ବେନି ମୁଦୁଗର ଘେନି ଭସ୍କର ଦଇତ୍ୟ ହସ୍ତେ
ଧାଇଂଣ ଆକ୍ଷେପି ପିଟିଲା ଜଏଚଣ୍ଡୀକି ଦଇତେ ।
ଗଦା ପଡ଼ନ୍ତେ ସେ ଦେଖିଲା କାତ୍ୟାନୀ
ପିଟିଲେ ଦେବୀ ମୁଦୁଗରେକ ଘେନି ।
ଚୂର ଗଦା ହୁଅନ୍ତେ ପରତାଳ
ଝଣ ଝଣନ୍ତ ହୋଇ ଉଠିଲାକ କାଳାନଳ ।
ପ୍ରଳୟାଂତ ଅଗ୍ନି ପ୍ରାଏକ ହୋଇଂ ବିକାଶିଲାକ ଜୋତି
ବ୍ରହ୍ମାଣ୍ଡ ଝଲକଇ ସେ ହୁତାଶନ ବହନ୍ତି ।
ଭସ୍କର ଦଇତ ଜଏଚଣ୍ଡୀର ସମରେ
ଯାନ ବାହାନ ଆରୋହି ସେ ଦେଖନ୍ତି ଦେବାସୁରେ ।
ବେନି ପରତାଳ ସେ ବେନି ଗଦା ଭାଜଇ
ଫଟିଗ ଫଳା ଘେନି ଭସ୍କର ଦଇତ ଗଲଗାଜଇ ।
ଗଗନ ଘୋଟିଲା ସେ ଅସୁର କାମରୂପୀ
ମଞ୍ଚପୁରେ ଚରଣ ଆକାଶେଣ ଶିର ବ୍ୟାପି ।
ଅସୁର ବ୍ୟାପିଲା ସେ ମହାକାଏ ଦେଖି
ଦେବତାଯେ ପୁଷ୍ପ ବିମାନ ଦେଲେ ଜଏଚଣ୍ଡୀ କି ।
ହାର ରତ୍ନ କୁଣ୍ଡଳ ଅନନ୍ତହ ମଣି
ଅନେକ ରତ୍ନ ଅଳଙ୍କାର ଯେ ମାତଳି ଦେଲା ଆଣି । ଗ୍ୟ ୨୦
ମାତଳି ବୋଇଲା ମାତ ଗୋ ଉଧର ଦେବତାଙ୍କୁ
ଭସ୍କର ଭଏ ଦେବେ ନ ପଶନ୍ତି ଆକାଶକୁ ।
ଏ ହାଦେ ତପ କଲା ଭସ୍କର ନାମ ଖ୍ୟାର୍ଥେ
ଲୋହଚୂଡ଼ ଭକ୍ଷିଲା ପଞ୍ଚଦଶ ସହସ୍ର ବରଷ ପରଯନ୍ତେ ।
ପହରକ ପରଯନ୍ତେ ଶରୀର ମାଂସ କାଟଇ
ରକତ ମାଏଂସ ଅଗ୍ନିରେ ଭରି ବାଣ୍ଟଇ ।
ଶରୀରୁ ମାଂସ ମାନ କାଟଇ ସର୍ବକାଳେ
ଆଦିତ୍ୟର ମାଂସ୍ଥାରେ ସେ କଉଂଳଇ ବେଳ ଉଦେ ବେଳେ ।
ଏହି ମତେ ପଞ୍ଚଦଶ ସହସ୍ର ବରଷ ପରଯନ୍ତେ କାଟି ଦିଅଇ ଆହୁତି
ଅଶ୍ବତ୍ଥାମ କର ପୁଣ ଦିଅଇ ଆହୁତି ଦିବା ରାତ୍ରୀ ।
ଆହାର ମୈଥୁନ ନିଦ୍ରା ତିନିହିଂକି କଲେ ତେଜ୍ୟା
ଉର୍ଦ୍ଧ୍ଵ ଅଗ୍ନି ସେ କରଇ ଶେଯ୍ୟା ।

ପୁରୀପଦ କଷ୍ଟୋର ତପ ଦେଖିଣ ଦିବାକର
କଣ୍ଡରକୁର କୁଳରୁ ଦେବ ହୋଇଲେ ବାହାର ।
ମକର ମାସ ଶୁକ୍ଳ ପକ୍ଷ ପୌର୍ଣ୍ଣମୀ ଅର୍କବାର
ମଘା ନକ୍ଷତ୍ର ଅଟଇ ସେ ଦିନର ।
ତୈତୁଳ୍ୟ ନାମେ କରଣ ଆୟୁଷ ନାମେ ଯୋଗ
ବିରଞ୍ଚି ନାରାୟଣ ସେ କଲେ ଅନୁରାଗ ।
ଆପଣାର ପଦ୍ମ କରେ ଅମୃତ କଲେ ବୃଷ୍ଟି
ନବାଙ୍ଗ ସହସ୍ର କଲ ଘେନିଣ ସେ ଭାସ୍କର ଦୈତ୍ୟ ଉଠି ।
ମାତଳି କହଇ ଶୁଣ ଗୋ ଜୟଚଣ୍ଡୀ ମାତା
ଭାସ୍କର ଦୈତ୍ୟର ଆଦ୍ୟ ଜନ୍ମ କଥା ।
ପ୍ରସନ୍ନ ହୋଇଣ ବୋଲଇ ଭାସ୍କର
ଯେତେ କାମାର୍ଥି କଲୁ ଆଗତ ଏବେ ବର ।
ଦନୁଜ ବୋଇଲା ଦେବ ନାମ ଯେ ମୋହୋର
ଭାସ୍କର ନାମ ନିଅ ହୋଇବ କରତାର ।
ଆଦିତ ବୋଇଲେ ରେ ତୋତେ ଦେବ ନାମ
ଅସୁର ଚଣ୍ଡାଳ ହୋଇଂରେ ମାଗିଲୁଂ ଉତ୍ତକର୍ମ ।
ସ୍ୱାମୀ ତୁ ଅଟୁ ଯେ ତ୍ରୈଲୋକର ଜଗନ୍ନାଥ
ମୋତେହେଂ ତ୍ରୈଲୋକ୍ୟ କେହ୍ନ ନୋହିବେ ଜିଣନ୍ତା ।
ରାକ୍ଷସେହେଂ ନ ମରିବି ଦେବସହେଂ ନ ମରିବ
ପୁରୁଷ ହସ୍ତେ ମୁ ବଧ୍ୟ ଯେ ନୋହିବ ।
ବଜ୍ର ନିର୍ମିତ ହୋଇବ ମୋର କାଏ
ସମରେ ସମାନ ମୋତେ ନୋହିବ ଦେବକାଏ ।
ଯେତେ କାଳ ପର୍ଯ୍ୟନ୍ତେ ତୁ ବ୍ରତଥାଉ
ତେତେକାଳ ପର୍ଯ୍ୟନ୍ତେ ଦେହ୍ନ ମୋର ନ ଯାଉ ।
ଆଦିତ୍ୟ ବୋଇଲା ବର ମାଗ ଯା ହେଉ ଅସ୍ତୁ
ଯାହା ମାଗିଲୁରେ ସେ କଥା ହେଉ ତଥୁ ।
ମାତେଳ ବୋଇଲା ମାତ ଗୋ ବର ମାଗଂତେ ଅନ୍ତଲା
ସର୍ଯ୍ୟାଂର ବଲ୍ଲଭ ନିଜ ପୁରେ ଚଳିଗଲା ।
ବରପାଇ ଦାନବ ଯେ ଚଳଇ ନିଜ ପୁରେ
ଯାଇ ମିଳିଲା ସେ ସ୍ୱଦେଶ ମନ୍ଦିରେ ।
ମାତଳି ବୋଇଲା ମ ତଗୋ ଅନେକ ଝିଗାଂସ କରିବଟିତୋତେ
ଶହସ୍ର ପଞ୍ଚାପ ସଞ୍ଚୁଥିବୁଟି ଦିବାଗ୍ନି ଅଂତେ ।

ଏ ଦେବ ରଥ ଚଢି ଶୂନ୍ୟେ ଥିବୁ ଗୋ ମହାମାଏ
ଆଦିତ ଦେବତା ଅସ୍ତ ହେବା ଯାଏ ।
ନୋହିବ ଦିବସ ନୋହିବ ରାତି
ସନ୍ଧ୍ୟାକାଳେ ଭେଟିବୁ ଆସି ଝାଟି ।
ସନ୍ଧ୍ୟାକାଳେ ହୋଉଥିବ ସତାବନ ଲଢ଼ା
ତେତେବେଳେ ମାଇଲେ ମରଇ ଦାଇତା ।
ଦିବସେ ନ ମରଇ ରାତ୍ରେ ନୋହଇ ମୃତୁ
ଏ କଥାକୁ ହେଳ ନକର ଗୋ ଏହୁ ଅଟଇ ତତୁ ।
ଆହେ୍ା ପରୀକ୍ଷ ସଂଗ୍ରାମ କରନ୍ତେ ଅସୁରଙ୍କର ତୁଲେ
ଚଳାଏ କର ଶୁଣୁଅଛୁ ମାତଳୀର ବୋଲେ ।
ଇନ୍ଦ୍ରଣ ମାତଳୀ ଦେଲାକ ପୁଷ୍ପକ ବିମାନ
ଜଏ ଚଂଣ୍ଡୀ ବିଜଏ କଲେ ଦେବ ଯାନ ।
କାମରୂପୀ ହୋଇଂ ଦେବୀ ପରମା ମହାମାଏ
ଆକାଶେ ଲାଗିଲା ସେ ମହା ତେଜ କାୟେ ।

ପଞ୍ଚାଶ ଧନୁ ସେ ବାମ କରେ ଧରି
ଦୁରନ୍ତ ବଳକୁ ସେ ଶର ବୃଷ୍ଟି କରି । ୩୯୫୦ ।

ଅନେକ ଦେବ ଶର ଯେ ବିନ୍ଧିଲା ଅସୁର
ଜଏ ଚଣ୍ଡୀ ହୃଦେ ପଡ଼ି ସମସ୍ତ ହୋଇଲେ ଚୂର ।

ଆହେ୍ା ପରୀକ୍ଷ ସୂର୍ଯ୍ୟାବ୍ରତେକ ଶର ଯେ ଆଦିତର ଦେଲା
ଅଷ୍ଟାଙ୍ଗେ ଦାଇତ ନେଇ ଚଂଣ୍ଡୀକି ମାଇଲା ।

ଅପାଲଟକ ଶର ଯେ ଅବଶ୍ୟ କରଇ କାର୍ଯ୍ୟ
ଯାହାକୁ ପେଷଇ ସେ ଅବଶ୍ୟ ହୁଅଇ ଦାହ୍ୟ ।

ସେ ଚକ୍ର ଦେଇ ମାଇଲା ଦୁରନ୍ତେକାଳି
ଜଳରେ ଗୋପ୍ୟ କଲା ସେ ଜଏଚଣ୍ଡୀର ରଥଇ ।

ଦେବେ ବୋଇଲେ ଯାବତ ଚନ୍ଦ୍ର ଦିବାକର ଥାଉ
ଜଏଚଣ୍ଡୀ ସୁମରନ୍ତେ ଶତ୍ରୁକ୍ଷଏ ଯାଉ ।

ଆହେ୍ା ଝଡ଼ଗ ବର୍ଗ ଲୋକେ ଜଏଚଂଣ୍ଡୀ ସୁମରି ହୃଦେ
ରଣେ ଜଏ ହୋଉ ଜଏ ଚଂଣ୍ଡୀର ପ୍ରସାଦେ ।

ଜଏ ଜଏ କାତ୍ୟାୟନୀ ଗୋ ଅଭଏ ଜଏ ଚଂଣ୍ଡୀ
ସର୍ବ ଜଏ ହରି ଗୋ ଆପଦ ଦୁଃଖ ଖଂଣ୍ଡି ।

ଶ୍ରୀ ଜୟ ଚଂଡ଼ୀର ଚରଣାର ବନ୍ଦେ
ଶୀତ୍ରମୁନି ସାରେଳ ଦାସ ତୁଳସୀର ପଦ୍ମପାଦେ ।

—o—

ଜୀହନ୍ତି ଶୁକ ମୁନି ଦେବଙ୍କର କଥା
ଶ୍ରୀ ଦେବ ବ୍ରହ୍ମାଙ୍କ ମୁଖେ ସର୍ଜିତା ପୁରାଣ ସଂଗିତା ।
ପକ୍ଷୀକ୍ଷ ପୁଚ୍ଛିଲେ ସେ ଶୁକ ମୁନିଙ୍କର ପାଶେ
ଲଭିବ ବଷ୍ଟୁ ଭୁବନ ଗୁମ୍ଫ ପାଦରଜ ଆଦେଶେ । ୩୧୬୦ ।
ଭାସ୍କର ଦୈତ୍ୟ ଯହୁଂ ରଣେ ନିମନ୍ତ୍ର
ଅପ୍ରାଜଏ ବଳ ପଳାଇଲେ ଖଜ ।
ଆହୋ ପକ୍ଷୀକ୍ଷ ଆଦିତ୍ୟ ବହୁନେ ଅନ୍ଧାର ମଏ ବାଟ
ଦଂଡ଼ ଭଗ୍ନ ହୋଇ ଯେ ପଳାଇଲେ ଅସୁର ବଳ ଥାଠ ।
ଧାମନ୍ତ ଦେବମାନେ ସମରେ ଅଜଗର୍ଲା
ଘୋର ଅନ୍ଧାର ଦେଖି ଧାମନ୍ତ ମହାଖଲା ।
ଯାହାର ମୁହେଂ ପଡ଼ଇ ଯେ ରଣେ
ଲକ୍ଷେ କୋଟି ରକ୍ତ ମାଂସ ଭକ୍ଷଇ ଏକା ଜଣେ ।
ରଣ ସଗ୍ରାମ ନାହି ଗିଲନ୍ତ ତସ୍କର୍ଣ୍ଣି
ମଦଗ୍ରୁ ରସପାନେ ମତୋଆଳ ନାଚ ଖଂଡ଼ ।
ମେଦନୀ କମ୍ପିଲ ସେ କଳ କଳ ଶବଦେ
ଘୋର ରୂପ ଦେଖି ସେ ଗର୍ଜିଲେ ଦଇତେ ।
ଆହୋ ପକ୍ଷୀକ୍ଷ ଆଶ୍ୱିନ ମାସ ଶୁକଳ ପକ୍ଷ ଅଷ୍ଟମୀର ଦିନ
ଭୌମବାର ସେଦିନ ନକ୍ଷତ୍ର ସ୍ୱାତୀ କନ୍ୟା ।
ତାର ନାମେ କରଣ ଆୟୁଷ ବାମେଣ ଯୋଗ
ସମର ହୋଇଲାକି ଚତୁର୍ଦ୍ଦଶ ଦିବସ ଭୋଗ ।
ଆଦିତ୍ୟ ପଶିଲ ଯେ ନମସ୍ତାଇ ଗର୍ଭଗତେ
ଅନ୍ଧାର ହୋଇଲାକି ନବ ଦିବସ ପରିଯନ୍ତେ ।
ଦେବଙ୍କ ବିଶ୍ୱରୂପ କେ କହିବାର କ୍ଷେମ
ଆକାଶ ମଣ୍ଡ ବୋଲି ନଗଲ ଗମ୍ୟ ଉତ୍ତକର୍ମ । ୩୧୬୦ ।
ଏମନ୍ତ ସମଏ ଦେବୀ ବିଘାନ୍ଧରୀ
ଉଶ୍ୱ ସ ପାଇଲେ ଦେବୀ ଦୈତ୍ୟଙ୍କର ଖରା ।
କରେ କମ୍ବୁ ଧରି ଆସଇ ବସୁମାତା
ଦୁର୍ଗାର ସ୍ତୁମୁରେ ବିଜଏ ଭୂଭୂଆ ।

ଅନେକ ବନସ୍ତ କର ଦେବୀ ଭୂମି
ଦୁର୍ଗାର ସମ୍ମୁଖରେ ସେ ହୋଇଲେ ପରଣାମି ।
ଦୁର୍ଗା ଦେଖିଲେ ପୃଥିବୀର ରୂପ
ତୁ ତ ବସୁଧା ଗୋ ଦିଶିଲୁ ବିରୂପ ।
କୁଙ୍କୁମ ରୂପ ଜାଣି ଦିଶଇ ତୋର କାଏ
ଏବେ ତ ଦିଶିଲୁ ଶୋ ସ୍ଫଟିକ ବର୍ଣ୍ଣ ପ୍ରାଏ ।
ରସ ପ୍ରଚଣ୍ଡ ଶରୀର ତୋର ଦିଶିଲାକ ସିଠା
ଏବେ କେମନ୍ତେ ବସୁଧା ଗୋ ହୋଇବୁ ତୁ ପୁଷ୍ଟା ।
ପୁଣ ପୁଣ ଦୁର୍ଗା ପଚାରନ୍ତି ବସୁଧାଙ୍କୁ
ପୃଥ୍ୱି ବୋଇଲା ମାତା ଗୋ! କହିବି ନା ତୁମକୁ ।
ମହେଷା ଶମ୍ଭୁ ନିଶମ୍ଭୁ ଅସୁରଙ୍କର ଭୟେ
ଏତେକ ଶେତବର୍ଣ୍ଣ ହୋଇଲି ମହା ମାଏ ।
ମାତା ଗୋ ଯେତେବେଳେ ଭୂମିକି ଅସୁର ଗ୍ରହାନ୍ତି ଆକ୍ରୋଶି
ଦଂଷ୍ଟ୍ରେ ପରଯନ୍ତେ ଯାଇ ପାତାଳେଣ ପଶି ।
ମାତା ଗୋ ସତ୍ୟ ଯୁଗେଣ ଯେ ଲାଗିଲା ବଡ଼ ଭଏ
ତେଣୁ କରି ଶ୍ୱେତ ବର୍ଣ୍ଣ ହୋଇଲା ମୋର କାଏ । ୩୯୮୦ ।
ଦୁର୍ଗା ବୋଇଲେ ଏବେ ତ ମରୁଅଛି ଦୁଷ୍ଟ
ଯେବେ ଦନକୁ ଦନ ଶରୀର କରିବୁ ନା ପୁଷ୍ଟ ।
ଏହା ଶୁଣି ପ୍ରଣପତ୍ୟ ହୋଇଲା ବସୁମତୀ
ମହେଷା ମାଂସ ରକ୍ତ ଯେ ନ ପଡ଼ିଲା ପୃଥ୍ୱି ।
ଏହାଙ୍କର ରକତ ଯେବେ ମୋହୋର ହୃଦରେ ପଡ଼ନ୍ତା
ତେବେ ସେ ଶରୀର ମୋହୋର ଉତପନ୍ନ ହୁଅନ୍ତା ।
ଲୋହିତ ବର୍ଣ୍ଣ କାଏ ହୋଅନ୍ତା ମୋହୋର
ଏବେ ହେ ମହାଦେବୀ ମୋତେ ପ୍ରତିକାର କର ।
ବସୁଧା ବୋଇଲେ ମୋତେ ଯେବେ ହୋଇବା ଭାରାଭ଼
ସଜ୍ଜନ ଲୋକଙ୍କୁ ସେ ରୋଗ ପୀଡ଼ା କରଇ ।
ମୋହୋର ଉପରେ ଅନୁବ୍ରତେ ଥାଇଂ ଯେହୁ ପ୍ରାଣୀ
ତାହାର ହିଂ ଅଣହିତ ହୁଅଇ ଗୋସାମଣି ।
ମୋହୋର ଉପରେ ଗ୍ଳଲଇ ଯେ ପାଦଭରା ଦେଇଂ
ତହିଂଣ ଖଣ୍ଡ ଜାତ କରାବଇଂ ମୁହିଂ ।
ମୋହୋର ଉପରେ ଯେ ଜାତ ସମସ୍ତ ପଦାର୍ଥ
ମୋହୋର ବିକାରେ ସେ ହୁଅଇ ଅଣହିତ ।

ଅଦ୍ଭୁତେ ପଥ ଭ୍ରାନ୍ତ ହୁଅଇ ଯେଉଂ ମନୁଷ୍ୟ
ରୋଗ ଆଶ୍ରେ କରଇ ସେ ହୋଅଇ ଅଳପ ଆୟୁ ।
ବହୁତ ପୀଡ଼ା ସେ କରାଇ ବ୍ୟାଧି
ଅଣହୁଣ୍ଡେ ମରଇ ସେ ନ ପାଇ ମଉଷୋଧି । ୩୧୯୦ ।
କାକର ବାଧା କରଇ ସେ ହୋଅଇ ଲପମ
ଭଣ୍ଡୁଂ ସେ ବାତପିତ୍ତ କରଇ ହତକର୍ମ ।
ବାତ ପିତ୍ତ ଶ୍ଲେଷ୍ମା ଆମ୍ଳ ପିତ୍ତ ଜ୍ୱର।
ମୂର୍ଦ୍ଧଂ ସେ ମନୁଷ୍ୟଙ୍କୁ କରଇ ରୋଗ ପୀଡ଼ା ।
ମୋହୋର ଅବକାରେ ନ କାଟଇ ପଦ ମନ୍ତ୍ର ମୌଷଧି
ଔଷଧ ନ କାଟିଲେ ସେ ପ୍ରବଳ ହୋଅଇ ବ୍ୟାଧି ।
ବ୍ୟାଧି ପ୍ରବଳ କର ସେ ନ ରୁଚଇ ଗ୍ରାସ
କ୍ରୋଧ ଅଗ୍ନି ମନ୍ଦ ବ୍ୟାଧି ନୋହଇ ବିନାଶ ।
ମାତା ମନ୍ଦ ଅଗ୍ନି ହୋଇଲେ ଆୟୁଷ ବଳ ତୁଟଇ
ପ୍ରାଣୀ କ୍ଷିନ୍ନ ହୋଇଲେ ବ୍ୟାଧି ବଳ ଘୋଟଇ ।
ମାତା ଗୋ ଶାସ୍ତ୍ର ସଙ୍ଗିତା କଥା ଗୋ ନ ପାରନ୍ତି ଜାଣି
ଦ୍ରବ୍ୟ କ୍ଷୟ କରନ୍ତି ସେ ବୈଦ୍ୟ ବଦ୍ୟ ଆଣି ।
ମୋହୋର ଅବକାରେ ଉତପତ୍ତି ହୋଅନ୍ତି ସର୍ବ ରୋଗ
ମୂର୍ଦ୍ଧଂ ଛଡ଼ାଇଂ ବନ୍ଧୁ ବାନ୍ଧବର ଯୋଗ ।
ମାତ ଗୋ ମାୟା ମୋହେ ଯେତେବେଳେ ପ୍ରାଣୀ କରନ୍ତି ତେଜ୍ୟ।
ବହଇ ମନ୍ଦ ପବନ ଭୂମିରେ କରଇ ଶେଜ୍ୟା ।
ମା ଗୋ ଉତପନ ରୋଗେ ମରନ୍ତି ସର୍ବ ଲୋକ
ଗ୍ରୁଜଇ ମେଦ ମେଦା ହୃଜଇ ଶୋକ ।
ମା ଗୋ ଅଦ୍ଭୁତେ କରାବଇ ଉତପାତ ମନ୍ଦ ଯୋଗ
ଲୋଟନ୍ତି ପିଂଡ଼େ ଏହମନ୍ତ ଭୋଗ । ୩୨୦୦ ।
ମା ଗୋ କାଳ ହୋଇଂ ପଶଇଂ ଶହସ୍ର ଧାରା ଙ୍କର ଘେରି
ଅନେକ ଜୀବ ଜନ୍ତୁ ସେ ହାଣନ୍ତି ବଇରାଗେ ।
ମା ଗୋ ଦ୍ରୁତ ଲୋକ ହାତେ କରାବଇ ମନ୍ଦ
କୁଟିଳ ଖଳ ବଳ ବର୍ଗ କରାବଇ ବାଦ ।
ଜାଣିତ ନ ପାର ସେ ହୁଅନ୍ତି ହଣାହଣି
ସେ ରକ୍ତ ମାଂସ ଯେ ପଡ଼ଇ ଧରଣୀ ।
ଜରା ରୋଗ ବ୍ୟାଧି ଦେଖନ୍ତି ଯେତେ ବେଳେ
ମେଷ ଗ୍ରୁଗଳ ବଳି ଦଅନ୍ତି ସେତେବେଳେ ।

ମା ଗୋ ସେହୁ ରକତ ମାଂସ ପଡ଼ଇ କ୍ଷିତି
ତେଣୁ କରି ଶରୀର ମୋହୋର ହୁଅଇ ଝିପୁଡ ।
ମା ଗୋ ଯେତେବେଳେ ବର ପାଇଲେ ସେ ଦୁରନ୍ତ ବଳୀ
ଜନ୍ତୁ ରୋଗ ପୀଡା ଯେ ରହିଲା ସକଳ ।
ମା ଗୋ ଏମାନେ ପତନ ହୋଇଲେ ସହସ୍ର ମେଦନୀ
ବେଳେ ବେଳେ ଭୋଗୁଛନ୍ତି ମୋହୋର ହୋଇଲାକ ହାନି ।
ବସୁଧାର ବଚନେ ସେ ବୋଇଲେ ଦେବୀ ଦୁର୍ଗେ
ତୁମ୍ଭେ ସେ ପ୍ରଳୟ କରାଅ ମସ୍ତ୍ରଣ୍ଡେ ।
ଦୁର୍ଗା ବୋଇଲେ ତୁ ସବଳଚର ହେଲୁ ଲାଗି
ଅସୁରଙ୍କର ବ୍ୟାକୁଳ ଯେଣ ହେଲୁ ବଇରାଗୀ ।
ପୁଣ ପୁଣ ପ୍ରଣମିତ ହୋଇ ବୋଲଇ ବସୁମତୀ
ତୋହୋର ଆଗ୍ୟାଂରେ ମୋ ଶରୀର ହୋଉ ଶାନ୍ତି ।୩୬୯।
ଦୁର୍ଗା ବୋଇଲେ ବସୁଧା ତୁ ମାଗୁଅଛୁ ଯାହା
ମୁହିଂ ସେ ଦୁର୍ଗତି ତାରିଣୀ ଦେବୀ ତୋତେ ଦେବି ତାହା ।
ବସୁଧା ବାସୁଏ ଏମାନ କଲେ ଯେ ଅରଣ୍ଡି
ତୁ ସହିଂ ଶ୍ୟାନ୍ତ ହେବୁ ପୂରାଇବ ଏ ଧାନ୍ତ ।
ତୁ ପରମ ଯୋଗେଶ୍ୱରୀ ତୁ କର୍ମା ନ ବସୁରୁ
ଏ ଦୈତ୍ୟଙ୍କ ମାଂସ ରୁଧିର ଉପରେ ମୋର ପଡ଼ୁ ।
ମାଗୋ ମାରନ୍ତି ଧରନ୍ତି ଯେ ପାଡନ୍ତି ଖପର
ପ୍ରାଣ ଆଉଂଣ ଯେ ଗିଳନ୍ତି ଖରତର ।
ମାତ ଗୋ ଯୋଗିନୀମାନଙ୍କୁ ଦେବ ତୁମ୍ଭେ ଆଗ୍ୟାଂ
ଏ ତୋହୋର ବଚନ କେ କରିବ ଅବଗ୍ୟାଂ ।
ମାତ ଗୋ ଆଜୁଂ ଏଣିକ ଯେ ହୋଉଥିବ ଯୁଧ
ଆଜୁଂ ଅସୁରଙ୍କର ମାଂସ ପଡ଼ୁ ମସ୍ତି ମଧ ।
ମେଦ ମାଂସ ପଡ଼ିଲେ ସମ ହୋଇବ ମୋର କାଏ
ପାଇବ ନଜ ଶରୀର ହୋଇବ ତେଜ ମଏ ।
ହୁଅସି ପ୍ରସନ ମାଗୋ ଦରିଦ୍ର ମୋର ଫିଟୁ
ହୋଇବ କୁଙ୍କୁମ ବର୍ଣ୍ଣ ଦସ୍ୱା ମୋତେ ଅଟୁ ।
ଏତେ ବୋଲି ପ୍ରଣପତ୍ୟ ହୋଇଲେ ବସୁଧେ
ଦୁର୍ଗା ବୋଇଲେ ଆସି ଦେଖସି ମୋର ଯୁଧେ ।
ବସୁଧା ବୋଇଲେ ଦେବୀ କେ ନୁହଇ ଝିପୁତ
ଆଜ୍ଞାରେ ଶରୀର ମୋର ହୋଇବାକ ଯେ ଶ୍ୟାନ୍ତ ।୭୨୮।

ଅହୋ ପରୀକ୍ଷ ରାଜା ଆଗ୍ୟାଂ ଦେଲେ ମହାମାଏ
ଆ ଯା ବସୁଧା ପ୍ରାପତ ହୋଉ ତୋର କାଏ ।
ଖରା ନବାରଣୀ କ ନରାଧାର ଆଗ୍ୟାଂ ମାଗି
ରୋଧିରେ ନଜ କାୟା ଘାତଲ୍ଲ ଯାଇଂ ବେଗି ।
ଦୁର୍ଗାଏ ବୋଇଲେ ନାରାୟଣୀ ବାଣେଲୀ ଭଗବତୀ
ଯୋଗ୍ନୀମାନ ଲେ ଆହାର କର ଶ୍ୟାନ୍ତ ।
ଦୟା ବସିଲ୍ଲ ମୋର ପୃଥିବୀର ଵକଳେ
ଆଜୁଂ ଅସୁରଙ୍କର ରକ୍ତ ମାଂସ ପଡ଼ୁ ସବୁ ତଳେ ।
ଅହୋ ଆହାର ଅବା ଯେ କରଇ ନ ଜାଣି
ମାନୁଷ ଶରୀର ସେ ହୋଅ ଖୁ ଡାକେଣୀ ।
ଦୁର୍ଗା ବୋଇଲେ ଜନ୍ମ ହୁଂ ନୋହିବ ସେ ତାହାଙ୍କ ହାନ ସରୁ
ବସୁଧାଙ୍କର ଅବସ୍ଥା ଯେ ତାହାଙ୍କର ଶିରେ ପଡ଼ୁ ।
ଆହୋ ପରୀକ୍ଷ ମହାଦେବୀଙ୍କ ଯହୁଂ ଏସନକ ବାଣୀ
ନାରାୟଣୀ ହକାରଲେ ଡାକେଶ୍ୱରୀକ ପୁଣି ।
ଅସୁରଙ୍କର ରକ୍ତ ମାଂସ ନ ଭକ୍ଷ ଆଗ୍ୟାଂ ଦେଲେ ମହାମାଏ
ସେ ଡାକେଶ୍ୱରୀ ଦେଲ୍ଲ ଡାକ ଯେ ଗୋଟାଏ ।
ଆଗୋ ଅନନ୍ତ କୋଟି ଦେବୀ ଯେ ସବଠାରେ ଅଛ
ଆଜୁଂ ଅସୁରଙ୍କର ରକ୍ତ ମାଂସ ନ ଭକ୍ଷ ।
ଡାକେଶ୍ୱରୀ ବଚନ ପଶିଲ୍ଲ ସବୁଙ୍କର କର୍ଣ୍ଣେ
ରଣ ରଙ୍ଗ ଲାଗୁଥିଲ୍ଲ ଯେ ଚଉଷଠି ଯୋଗନେ । ୩।୨୩୦ ।
ଠାକୁରାଣୀଙ୍କର ଆଗ୍ୟାଂ ପାଇଣ ଗୋସାମଣୀ ।
କଦଳୀ ବନ ଧ୍ୱାଏକ ସେ ଯାଉଂଛନ୍ତି ହାଣି ।
ଆହୋ ପରୀକ୍ଷ ଭକ୍ଷନ୍ତି ବୋଲି ଅପ୍ରତେ କଲେ ଦୁର୍ଗେ
ମହାଖଳା ବୀରନ୍ତ ଜାତ କଲେ ପାଦ ଯୋଗେ ।
ପ୍ରଥମେ ଜାତ ହୋଇଲ୍ଲ ଗୋରେଆ କ୍ଷେତ୍ରପାଳ
ଦୁତେ ଜାତ ହୋଇଲ୍ଲ ଖାଂଖଣି କ୍ଷେତ୍ରପାଳ ବକାଳ । ୧
ତୃତୀଏ ଜାତ ହୋଇଲେ ରଙ୍ଗା କ୍ଷେତ୍ର ପାଳ
ଚତୁର୍ଥେ ଜାତ ହୋଇଲେ ଖଣ୍ଡିଆ କ୍ଷେତ୍ରପାଳ ।
ପଞ୍ଚମେ କାମଦେବ କ୍ଷେତ୍ରପାଳ ଜାତ କଲେ ପୁଣି
ତୁମ୍ଭେ କ୍ଷେତ୍ର ରକ୍ଷା କର ବୋଇଲେ ଠାକୁରାଣୀ ।

୧ । (କ) ଗ୍ରେଷ୍ଟ ପାଳ ।

ଯେତେ କ୍ଷେତ୍ର ରକ୍ଷା କରିବ ସକଳ
ତେଣୁକରି ନାମ ହୋଇଲା କ୍ଷେତ୍ରପାଳ ।
ଜାଡ଼ୁଆ କ୍ଷେତ୍ରପାଳ ହନୁମନ୍ତ କ୍ଷେତ୍ରପାଳ
ଆମ୍ବୁଆ କ୍ଷେତ୍ରପାଳ ଭଲୁଙ୍କା କ୍ଷେତ୍ରପାଳ ।
ଏହାଙ୍କର ତୁଲେ ଜାତ ଯାଡ଼ୁମଲ
ଭ୍ରମଣି ମଲ କାନ୍ଦଣି ମଲ ଆବର ମହାକାଳ ।
ଆମ୍ବୁଆ ଖାଙ୍ଗର ମାଣିକା କାଳତୁଣ୍ଡା
ବାବନା ବଜସ୍ତା ମଲ୍ଲ ତୁଣ୍ଡୁକା ଗୃମଣ୍ଡା ।
ଦହନା ଶୋଷନା ସୁକୁଟା ଝାଂଝାଣ
ଏମନ୍ତେ ବୀର ମ ନନ୍ତ ଯେ ଦୁର୍ଗା ଜାତକର । ୩୨୪୦ ।
ମର୍କଟେକ ଚଣ୍ଡୀ ଗୃମଣ୍ଡା ଊର୍ଦ୍ଧକେଶ
ପ୍ରାଣେ ନ ମାରନ୍ତି ଯେତେ ରକ୍ତ ମାଂସ ଶୋଷ ।
ଆରେ ରଣ କ୍ଷେତ୍ର ଆବୋର ବୋଲି ଆଜ୍ଞା ଦେଲେ ବେଗି
ଏହାଙ୍କର ଉପରକୁ ଗୃଣ୍ଡାଳୀ ଆବର ରଖି ।
ଯୋଧି ବରାଢ଼ କେ ଆଡ଼ କେ ମାଂସ ସୁତା
ଗୋରୁ ଚର୍ମ ଦଉଡ଼ି କଣ୍ଠ କେ ହାତେ ମୁଠା ।
ଆରେକ ହାଥେ ଧେନ ସେ ଲୁହାର ବାଡ଼ି
ଗୋ ଚର୍ମ ଦଉଡ଼ି ଦେହ ପରେ ଘୋଡ଼ି ।
ନନ୍ଦେସ୍ତା ନନ୍ଦୀଘ ଅଟଇ ବଡ଼ ରାଢ
ମହାଖଳା ବଦ୍ୟା କୃମୁଟିଆ ନାମେ ହାନ୍ତି ।
ଦୁର୍ଗା ବୋଇଲେ ରେ ଯେ ମୋହୋର ଆଜ୍ଞା ବଞ୍ଚନ୍ତି
ଦେଖିବ ବୀର ମାନନ୍ତ ବାଛିବୁ ସନ୍ତ୍ରି ।
ରଣ ମଣ୍ଡଳ ଆଧିପତି ସେ ବୀର ମହାଖଳା
ଆବୋରଲ ରଣ କ୍ଷେତ୍ର ସେ ବୀର ଅନର୍ଗଳା ।
ଆହେ। ମହାକ୍ଷ ଦେବୀମାନେ ଯହୁଂ ନ ଭକ୍ଷିଲେ ଅଶାନ୍ତି
ଦୁରନ୍ତକ ବଳ ହୋ କତକ ଯାଇ ନ ପାରନ୍ତି ।
ଶୁଣ ହେ। ପକ୍ଷାକ୍ଷ ସମର ସମ୍ବନ୍ଧ
ରଣେ ନ ଘୁଞ୍ଚନ୍ତି ସେ ଅମାପତ ଦାନବ ବଳ ସଙ୍ଗ ।
ଏକ ପଡ଼ନ୍ତେଣ ଆରେକ ପିଟଇ
ଗିରିବର ସମାନେ ଗଦା ପଡ଼ି ଚୂରି ଉଠଇ । ୩୨୫୦ ।
କାଳକେତୁ ବୋଲି ଏକଇ ଅସୁର
ମର୍କଟେକ ସନ୍ୟ ଘେନି ସେ ଚଣ୍ଡିକା ତୁଲେ ସମର ।

ବଜ୍ର କେତୁ ଏକ ଦାନବ ମହାବୀର
ବେନି ମର୍ଭୁଡକ ସେନ ସେ ଭଇରବୀ ତୁଲେ ସମର ।
ବୀରବର ଅସୁରା ସେ ଅସୁର ଯୋଜନ ବାହୁ
ବେନି ମର୍ଭୁଡକ ଯୋଧା ସେନା ତ୍ରିପୁରା ସଙ୍ଗେ ଯୁଦ୍ଧେ ସେହୁ ।
ବୀରବାହୁ ବୋଲି କରି ଅସୁର ମହାବଳୀ
ମର୍ଭୁଡେକ ଯୋଧ୍ୟା ସେନ ସେ ଭଦ୍ରକାଳୀ ତୁଲେ ମିଳି ।
ସୁବାହୁ ବୋଲି କରି ଏକଇ ଅସୁର
କୋଟିଏ ଯୋଧ୍ୟା ସେନ ସେ ଭଇରବୀ ତୁଲେ ସମର ।
ପଦ୍ମେକ ଯୋଧ୍ୟା ସେନ ସେ ରାକ୍ଷସ ଚଣ୍ଡବାହୁ
ବ୍ରହ୍ମାଣୀ ତାହାକୁ ଆବୋରେ ଯେହ୍ନେ ରାହୁ ।
ନବ ଲକ୍ଷ ଯୋଧ୍ୟା ସେନ ଚଢ଼ି ଗଗନ ଘୋଟି
ଇନ୍ଦ୍ରାଏଣୀ ବେଗେ ହୋଇଲା ରଣେ ଭେଟି ।
ଲୋହାସୁର ବୋଲି କରି ଏକଇ ରାକ୍ଷସ
ତିନି କୋଟି ଯୋଧ୍ୟା ସେନ ଉଗ୍ରତାର ପାଶ ।
ପଦ୍ମେକ ଯୋଧ୍ୟା ସେନ ସେ ଘୋଟଇ ଦଇତ
କୋଟାକ୍ଷୀ ତୁଲେ ସମର କଲାକ ବହୁତ ।
ଅନ୍ଧାର ଘୋର ବୋଲି କରି ଏକଇ ରାକ୍ଷସ
ମର୍ଭୁଡେକ ସେନା ସେନ ସେ ବରାହୀର ପାଶ । ୩୬୦
ପଦ୍ମେକ ଯୋଧ୍ୟା ସେନ ସେ ଊର୍ଦ୍ଧକେଶ
ମାରକମା ତୁଲେ ହୋଇଲା ପ୍ରବେଶ ।
ସାତ ଲକ୍ଷ ଯୋଧ୍ୟା ସେନ ଚନ୍ଦ୍ରଜିତ
ଭଇରବୀ ସମ୍ମୁଖରେ ସେ ସମର ଅପ୍ରମିତ ।
ବେନି ପଦ୍ମ ଯୋଧ୍ୟା ସେନ ସେ ଘଣ୍ଟାସୁର ତୁଲେ
କାଳିକା ସଙ୍ଗତେ ଦାନବ ଯୁଦ୍ଧ କଲେ ।
ବକାସୁର ଦାନବ ଯେ ଦଣ୍ଡ ପାଞ୍ଚ କୋଟି ।
ନମାସ୍ୟଣୀ ଦେବୀ ତାହା ନିମିଷକେ ଘୋଟି ।
ନିକଟା ସୁର ବୋଲି ଯେ ଅତି କାମରୂପୀ
ଆରେ ଆରେ ବୋଲି ଯେ କାମାକ୍ଷୀ ତୁଲେ ବ୍ୟାପି ।
ଉନ୍ମତ ତୁଲେଣ ସାତ ଲକ୍ଷ ଯୋଧ୍ୟା ଅଛି
ତାହାକୁ ଆବୋରିଲା ସେ ଗଗନ ପିଙ୍ଗଳାକ୍ଷି ।
ବୀରବର ସୋହୋଡ଼ ମନ୍ଦର ମାଲାଅଞ୍ଚ ନାମ
ତାଡେକା ଦେବୀର ତୁଲେ ତାହାର ମୁଣ୍ଡ ଅବଶ୍ରାମ ।

ପଞ୍ଚ ଲକ୍ଷ ଯୋଧ୍ୟା ତୁଲେ ଦାନବ ଘୋଡାମୁଖ
ଡ଼ାକେଶ୍ୱରୀ ଛାମୁରେ ପଡ଼ିଲା ପ୍ରତ୍ୟକ୍ଷ ।
ନବଷଠି ଯୋଧ୍ୟା ଘେନ ଅସୁର ବିରୂପାକ୍ଷ
ଅମ୍ବିକାର ତୁଲେ ପଡ଼ିଲା ପରୀକ୍ଷ ।
·ପଦ୍ମେକ ଯୋଧ୍ୟା ଘେନ ସେ ତାମ୍ରାକ୍ଷି
ତାହାର ତୁଲେ ସମର କରଇ ମାରୁତି ।
ଗଜମୁଖ ଦଇତ ଘେନ ପଦ୍ମ ବୀର
ହାଡ଼ ବାଟେଶଲୀ ମୁଖେ ସେ ପଡ଼ିଲା ଅସୁର ।
ବିମଳା ସୁର ବୋଲି ଏକଇ ରାକ୍ଷସ
ଥାଠ ଘେନ ପଡ଼ିଲା ସେ ମହାମାୟାର ପାଶ ।
ସିଂଘନ ସୁର ବୋଲି ଗୋମୁଖର କାୟା
ନବଲକ୍ଷ ଯୋଧ୍ୟାକୁ ଘେନିଲା ଏକା ଦେବୀ ଛାୟା ।
ରଣ ଧନ୍ଦୋଳ ବୋଲି ଦେବୀ ମାତାଙ୍ଗୀ
କ୍ଷୋହସର ଦାନବକୁ ସେ ଘୋଟିଲା ଯାଇ ବେଗି ।
ବିସ୍ତରୂପ ବିକାଶି ସେ ଦେବୀ ଚନ୍ଦ୍ରକାନ୍ତି
ସେ ଯାଇଂ ଓଗାଳିଲା ଘନଲକ୍ଷ ସେନାପତି ।
ମର୍ଭ୍ୟତକ ଯୋଧ୍ୟା ଘେନ ସେ ମୋଢ଼ାସୁର
ଶ୍ରୀ ଚଣ୍ଡୀ ତୁଲେ ସେ କରଇ ସମର ।
ଅଗିଂରା ସୁର ଦାନବର ଘନଘଦ୍ମ ସେନା
ରାମଚଣ୍ଡୀ ଛାମୁରେ ସେ ପଡ଼ିଲେ ସବଂଜନା ।
ହିଜଣ୍ଟାସୁର ବୋଲି ଏକଇ ଦଇତ
ତାହାର ତୁଲେ ଯୋଧ୍ୟା ଯେ ପଞ୍ଚମର୍ଭ୍ୟତ ।
ଗଦା ବୁଲାଇ ସେ ଧାମଇ ଅତି ବେଗେ
ସମସ୍ତେ ହେଁ ପଡିଲେ ଯାଇଂ ଖୋଲମା ଦେବୀର ଆଗେଂ ।
ଚିତ୍ରାସୁର ବୋଲି ସେ ଦାନେବ ମହାଳବୀ
ସାତ ଲକ୍ଷ ଯୋଧ୍ୟା ଘେନ ମର୍ଭ୍ୟତେ ଅଗୁଳି ।
କୋଦାଳୀ ଆୟୁଧ ସେ ଧରିଛନ୍ତି କରେ
ହାବୋଡେ ପଡ଼ିଲେ ସେ କୃମଣ୍ଡା ଆଗରେ ।
ଆହୋ ପରୀକ୍ଷ ଅପାର ପ୍ରବଳ ସେ ଅସୁର ବଳ ଥାଠ
ଆଦ୍ଭୁତ ଅଗ୍ରବେ ସେ ନ ଦିଶଇ ବାଟ ।
ଯେତେକ ଆଗ୍ୟାଂ ଦେଲେ ସେ ଦୁର୍ଗତି ତାରେଣୀ
ଅନ୍ଧକାର ଉପେକ୍ଷି ସେ ପଳାବନ୍ତି ହାଣି ।

ଘ୍ରବନାଇ ଦୂଳଣାଇ ସେ ବେନ ଯେ ଭଏଣୀ
ରକତ ମାଂସ ଭକ୍ଷନ୍ତି ସେ ଦେବୀ ଶ୍ରେଣୀ ।
ବିଲାଇ ବଛଲାଇ ମାଲା ବଲାଇ ଉପାଇ
ଉତକଳାଇ ମଂଗଳାଇ ସାତ ନାମ ବହି ।
ଏ ସପତ ମାର୍ଣ୍ଣୀଙ୍କି ଧରି ନ ପାରିଲେ ଚଣ୍ଡି
ରକତ ମାଂସ ଖାଇଲେ ସେ କରଣ ଖଣ୍ଡି ଖଣ୍ଡି ।
ସେ ସପତ ମାତ୍ରୀଙ୍କର ଅନ୍ତ ଭ୍ରମଣୀ ଦେଖି
ଚଣ୍ଡୀଏକ ଧରି ଧାଇଂ କ୍ଷେତ୍ରପାଳ ତାହାର ତହିଂକ ।
ନ ଖାଇ ବୋଇଲା ତୋର ମୁହ ପୋଡୁ
ଶ୍ରୀଣେହା ରୁଷ୍ଟ ହୋଇଂ ମାତାର ଆଗ୍ୟାଂ ମେଣ୍ଟୁ ।
କ୍ଷେତ୍ରପାଳ ବଚନ ନ ପଶିଲା ତାର କର୍ଣ୍ଣେ
ସେ ସପ୍ତ ମାର୍ଣ୍ଣୀ, ଲଗିଲେ ରକ୍ତ ମାଂସ ଭକ୍ଷଣେ ।
ଯାଇଣ କ୍ଷେତ୍ରପାଳ ବଜସ୍ତୀକୁ ମାଇଲା ଖଣ୍ଡା
କଟିଥାଲେ ପଡ଼ଣ ଖଣ୍ଡା ହୋଇଲା ମଣୀଗୁଣ୍ଡା । ୩୨୯୦ ।
ହେନ୍ତୁ ଶହସ୍ର ଲେଉଟାଇଂ ମାଇଲେ ଦେବୀ ଚଣ୍ଡୀ
ସେ କ୍ଷେତ୍ରପାଳ ବେନି ଭୁଜ ପଡିଲାକ ଛିଣ୍ଡି ।
ଦୁର୍ଗାର ସମ୍ମୁରେ ମିଳିଲା ଖଂଡିତ ହସ୍ତ
କେ ତୋତେ କଲା ଏସନେକ ଅବସ୍ଥା ।
ସେ କ୍ଷେତ୍ରପାଳ ବୋଇଲା ଗୋ ଶୁଣ ଜଗତ ଧାର୍ଣ୍ଣୀ
ରକତ ମାଂସ ଭକ୍ଷଣ କରନ୍ତି ସପତ ମାର୍ଣ୍ଣୀ ।
ତବ ଆଗ୍ୟାଂରେ କ୍ରୋଧ କଲି ଯହୁଂ
କଟାରରେ ପ୍ରହାର କଲା ମୋତେ ତହୁଂ ।
କୋପେଣ ଶାପ୍ୟ ଦେଲେ ଦୁଗର୍ତ୍ତ ତାରଣୀ
ଯାଅ ଲୋ ସପତ ମାତ୍ରୀ ତୁମ୍ଭେ ହୁଅ ଲୋ ଡ଼ାକିଣୀ ।
ଏହିକ୍ଷଣି ତୁମ୍ଭେ ମୋହୋର ସମରରୁ ଯାଅ
ପ୍ରପଞ୍ଚ ଅବସ୍ଥାରେ ଲୋ ରକ୍ତମାଂସ ଖାଅ ।
ମୋହୋର ବାରକୁ ଯେ କଲ ସ୍ୱେତେ ଶାନ୍ତି
ମହାକାଲ ମନ୍ତ୍ରେ ଲୋ ବନ୍ଧନ ହୁଅ ସପତ ମାର୍ଣ୍ଣୀ ।
ଦୁର୍ଗାଙ୍କ ସମ୍ମୁରେ ସେ କହନ୍ତି ବିକଳେ
ପାଷାଣ ହୋଇଥାଅ ଲୋ ବୈତରଣୀ ନଦୀ କୂଳେ ।
ସ୍ତ୍ରୀଚୀକେଶ୍ୱର ଯେ ହୋଉ ତୁମ୍ଭର ପଥ
ମାନୁଷ୍ୟ ମନ୍ତ୍ରେ ଯେ କରିଉ ଆରତ । ୩୩୦୦ ।

ଦୁର୍ଗାଏ ବୋଇଲେ ଲୋ କୌଶିଣୀ କଦାଚିତେ ଶୁଦ୍ର ରୂପେ କୃଷ୍ଣ
ତାହାଙ୍କୁ ଦର୍ଶନ କରୁଥାଅ ପିଂଚ୍ଛି ଭୂମ୍ଭ କଷ୍ଟ ।
କଳି ଯୁଗେ ଚାରିଲକ୍ଷ ବରଷ ମାନୁଷ୍ୟନ୍ତ ଲାଗ
ଡାକେଣୀ ରୂପେ ଲୋ ପୋଡ଼ାବଳୀ ସଙ୍ଗ ।
ହେ ବୁଧ ଜନେ ସର୍ବେ ଏସନେକ କଥା
ଉପାଏ ଲେଖନ ଯେ ମୁହିଂ କସ ଗ୍ୟାଂତା ।
ଜନ୍ମେଣ ମୂର୍ଖ ମୁଂ ଅପଣ୍ଡିତ ଗୋଷ୍ଠୀ
ବଳରାମ ଶହସ୍ର ଧରି କୃଷିକାରେ ବ୍ରତ ।
ଜନ୍ମେଣ ଶୁଦ୍ର ମୁଂ ଅପଣ୍ଡିତ ଗ୍ୟାଂତା
ବ୍ୟାସଙ୍କୁ ଥାନ ନ ପାଇ କସ ମୁହିଂ ବକତା ।
ନ ପଢ଼ିଲି ଶାସ୍ତ୍ର ମୁଂ ବିଦ୍ୟାରେ ଅପାଠେକ
ଅଣ ଅକ୍ଷର ହୋଇଂ ଅମର୍ଯ୍ୟାଦା ଅବିବେକ ।
ଆହୋ ଆଶ୍ୱିନ ଶୁକଳ ଦଶମୀ ଅପରାଜିତେ
ରାହ୍ମଣ ମୂର୍ତ୍ତି ଏକ ଭେଟଇ ଆସି ମୋତେ ।
ତୁଳସୀ ମାଳ ଗୋଟିଏ ହୃଦରେ ମୋର ଦେଇ
ଶାହାସ୍ର କଥା ମୋତେ ରାହ୍ମଣ ବସି କହି ।
ସେ ମୋତେ ରାହ୍ମଣ ବସି କହଇ ଯାହା
ସମ୍ବତ୍ସର ପରିଯନ୍ତେ ମୁ ଲେଖନ କରଇ ତାହା ।
ଯେ ଅଭ୍ୟା ଆଶରେ ମୁ ପୂରାଇ ମନବାଞ୍ଛା
ସେହୁ ମହାଙ୍କାତା ମୋତେ ଯାହା ଦେଲେ ଦୀକ୍ଷା । ୩୩୯୦ ।
ଏ ଲେଖନରୁ ଆମେଳ ପଦ ହୋଥଇ ଅବା
ହେ ପଣ୍ଡିତ ଜନେ ମୋତେ ମିଳାଇ ତାହା ଦେବା ।
ଅଷ୍ଟସାର ନନ୍ଦନୀ ସର୍ବର ଅଭ୍ରଶାପ୍ୟ
ସର୍ବ ଦେବ ଭ୍ରଥଖଂଡ଼ ଜଙ୍ଗେର ଯୋଗ ରୂପ ।
ଜନ୍ମେ ଜନ୍ମେ ଭାବନା ମୋର ସାରଳା ଚଂଡୀ ପଦ ପାଉ
ଯେହା ଲେଙ୍ଖନ୍ତେ ପଢନ୍ତେ ଦୀନ ମୋର ଯାଉ ।
ଏ ଶାହାସ୍ର ବକତା ମୁହିଂ ଶ୍ରୀ ଶାରଳାଙ୍କ ପାଦେ
ବଦନ୍ତ ଶୁଦ୍ରମୁନି ସାରଳା ଦାସ ତୁଳସୀଙ୍କ ହୃଦେ ।

—০—

ଏଥୁ ଅନନ୍ତରେ ଯେ ପରୀକ୍ଷ ନୃପତି
ଶୁକ ମୁନି ଚରଣେ ବନ୍ଦନ୍ତି ଯୁଗତି ।
ଯେବେ ମହାତ୍ମା ମୋତେ କଲୁ ଅନୁଗ୍ରହ
ସମ୍ପ୍ରତି କରି ମୋତେ ଚଣ୍ଡୀ ଶାସ୍ତ୍ର କହ ।
ଆଦ୍ୟନ୍ତ ଗୋପ୍ୟ ଗଲା ଯେ ଦେବୀ ନମସ୍କାର ଗର୍ବେ
ପୁଣ କେମନ୍ତ କଲେ ଯେ ତେତିଶ କୋଟି ଦେବେ ।
ବଦନ୍ତି ପରୀକ୍ଷ ଶୁଣ ହୋ ଶୁକବ୍ରହ୍ମା
ଚାରି ଯୁଗେ ନାହିଁ ନା ଏ ଦେବୀଙ୍କର ମହିମା ।
ଯେତେ ରାମାୟଣ ମହାଭାରତ ମହାରଣ
କଳ୍ପ କଳ୍ପ କରି ଶିଖାଏ ଦେବୀଙ୍କର ଘଷଣ ।
କୃଷ୍ଣହିଁ ଦଶ ଅବତାର ଯାହା ରୂପ ମହୀ
ଶ୍ରୀ ଚଣ୍ଡିକା ଯୁଦ୍ଧ୍ୟକୁ ସମାନ ନାହିଁ କେହି । ୩୮୦ ।

ଅଦୃଷ୍ଟି ଅଶ୍ରୁତ ଯେ ହୋଇଛୁ ଅଗୋଚର
ଲେଖନ୍ତେ ଅନ୍ତ ନ ଯିବ ଦେବୀଙ୍କର ସମର ।
ଏକ ଦାନବର ସମର ନ ଭକ୍ଷିଲେ ରକ୍ତମାଂସ
ଯୁଦ୍ଧ୍ୟେ ଲେଟିଲେ ଅନେକ ରାକ୍ଷସ ।
ଅସ୍ଥି ଚର୍ମ ମାଂସ ଯେ ପଡ଼ିଲେ ସ୍ୱେଦ ଗନ୍ଧ
ଶତେ ତାଳ ଉଚ୍ଛର୍ଗ ଯେ ବହିଲେ ରକ୍ତ ନଦୀ ।
ବର୍ଷଂଗିର ପର୍ବତ ଯେ ଶତେ ଅଷ୍ଟଉତ୍ତର ପୁଣ ଉଚ୍ଛର୍ଗ
ବେନି ଯୋଜନର ଆଏତନ ପ୍ରଚ୍ଛଦୀର୍ଘ ।
ଶ୍ରୋଣିତ ବହନ୍ତେ ଯେ ବୁଡ଼ିଲା ବର୍ଷଂଗିର
ପର୍ବତ ଉପରେ ଯେ ମାଇଲା ଲହରୀ ।
ତହିଂର ଉପରେ ଯେ ଥିଲେ ଶାଲବୃକ୍ଷ
ପାଞ୍ଚ ପାଞ୍ଚ ତାଳସେ ଉଚ୍ଛର୍ଗ ଅଟଇ ପ୍ରତକ୍ଷ ।
ସେ ବୃକ୍ଷଙ୍କରେ ଆଉଜିଲେ ମୃତୁ ପିଣ୍ଡ ଭେଳା
ଲହଡ଼ି ମାରନ୍ତେ ସେ ବୃକ୍ଷଙ୍କର ପତ୍ର ନ ଦିଶିଲା ।
କହନ୍ତି ଶୁକ ବ୍ରହ୍ମା ଶୁଣ ହୋ ପରୀକ୍ଷ ନୃପମଣି
ସେ ଦୀର୍ଘ ଡାଳେ ବସି ଉର୍ଦ୍ଧ ମୁଖ ରୂପଧର ଗିଳିଲେ ଗୃଧିଣୀ ।
ଲକ୍ଷ୍ମୁ ଭଦ୍ରା ନଦୀଠାରୁ ପୂର୍ଣ୍ଣତୋୟା ନଦୀ ପର୍ଯ୍ୟନ୍ତେ
ଏକ ଖଣ୍ଡ ହୋଇଂ ବୁଡ଼ିଲେ ହୋ ବୃକ୍ଷ ପର୍ବତେ ।
ସେ ଦୀର୍ଘ ଡାଳେ ବୁଡ଼ିଲେ ରକ୍ତ ନଦୀ
ଉଡ଼ଣ ରକ୍ତ ମାଂସ ଖାଇଲେ କାକ ସମ୍ପାଦ । ୩୩୩୦ ।

ଆଦିତ ନଥିବାରୁ ସେ ତଇଲୋକ ଅନ୍ଧାର
ଦିବ୍ୟ ଚକ୍ଷୁ ଅଟଇ ସେ ଦେବୀ ମାନଙ୍କର ।
ଦେବୀମାନଙ୍କୁ ସର୍ବଦୃଷ୍ଟି ଅସୁରଙ୍କୁ ଅଦୃଷ୍ଟି
କାରଣ ନ ଗଲା ସେ କେ କାହାକୁ ଭେଟି ।
ଏଙ୍କାଶତ ନବ ଦିବଶ ପରଯନ୍ତେ
ନକ ଏହା ପ୍ରମାଣ କରବ ଲେଖନ୍ତେ ।
ଅସୁର ବଳ ଶାନ୍ତ ନୋହିଲା ସମରେ
ଆଦିତ୍ୟ ଅଚ୍ଛ ନମଞ୍ଜାର ଗର୍ଭରେ ।
ଆହୋ ପରୀକ୍ଷ ଶତେ ମେରୁ ଆଏତନ ଯେବଣ କାଏ
ସେ ନମଞ୍ଜାର ଗର୍ଭେ ରହିଲା କଞ୍ଚିତ ପ୍ରାଏ ।
ଅସୁର ବଳ ସଇନ ଯେ ଆଗିଯି ଏହା ଦେଖି
ଦେବତାଏ ବିକଏ କଲେ ଦୁର୍ଗାର ତହିଁକି ।
ଅନେକ ବନୋଇ ସେ ଦୁର୍ଗାଙ୍କୁ କଲେ ସ୍ତୁତି
ତବ ପ୍ରସନେ ମାତା ଗୋ ବଞ୍ଚିଲୁ ଦୁର୍ଗତି ।
ଦୁର୍ଗା ବୋଇଲେ ଅମରେ ଏତେକ ଭରସା
ଅନେକ ବାନ୍ଦେବ ଯେନଣ ଅଛି ସେ ମହିଷା ।
ବ୍ରହ୍ମା ବୋଇଲେ ଗୋ ଶୁଣ ମାତ ଦୁର୍ଗେ
ମହେଷାଂ ଉତପାତ ପଙ୍କଜନା ଆମ୍ଭ ଅଙ୍ଗେ ।
ମାଗୋ ତ୍ରୈଲୋକେ ବଳବନ୍ତ ଯେ ଶମ୍ଭୁ ଯେ ନିଶମ୍ଭୁ
ଧୁମ୍ରର କାଳବିମୋଚନ ରକ୍ତବୀର୍ଯ୍ୟ ସେ ନାଶଗଲେ ସବୁ । ଗା:ଗା ୪୦
ତ୍ରୈଲୋକ୍ୟ ଜିତା ଯେ ଚଣ୍ଡ ମୁଣ୍ଡ ବୀର
ସ୍ୱର୍ଗ ତେଜ୍ୟା କରି ପଳାଇଲେ ସୁନା ଶୀର ।
ଏମାନେ ନାଶ ଗଲେ ତବ ପ୍ରସାଦେ
ଏବେ ନମଞ୍ଜାକୁ ଆଗ୍ୟାଂ ଦିଅ ଆଦିତ ହେଉ ଉଦେ ।
ଏତେକ ବଚନେ ନମଞ୍ଜୀ ବିକାଶିଲେ ତୁଣ୍ଡ
ଗର୍ଭୁ ବାହାର ହୋଇଲେ ମାରତଣ୍ଡ
ଆଦିତ ଦେବତା ଯନ୍ତୁଂ ବିକାଶିଲେ କୋଧ
ସପତ ବ୍ରହ୍ମାଣ୍ଡର ଫିଟିଲା ଦୁର୍ଗନ୍ଧ ।
ସୁଖେଣ ରହିଲେ ସେ ସମସ୍ତ ବୃନ୍ଦାଅର୍କେ
ରକତ ନଦୀ ଦେଖି ଆଶ୍ଚର୍ଯ୍ୟ ଦେବ ଲୋକେ ।
ଆହୋ ପରୀକ୍ଷ ଅନେକ ଉତସଲ୍ୟ ହୋଇଲା ବସନ୍ଧଙ୍କ
ବହୁତ ମୃତୁପିଣ୍ଡ ଲାଗନ୍ତେ ହୋଇଲା ପୁଣ ସ୍ଥିର ।

ଜଠରେ କମ୍ବୁ ଧରି ବଜାଏ ବସୁମତୀ
ଦୁର୍ଗାର ଛାମୁରେ ସେ ବହୁତ କରଇ ସ୍ତୁତି ।
ଦୁର୍ଗାଏ ବୋଇଲେ ବସୁଧା ହୋଇଲୁ କି ପୁଢ
ଶରୀର ତ ଦିଶିଲା ଏବେ କନକ ମଏ ଜୋଢ ।
ଛୁଡ଼ିଲା ଶୋତ ଜ୍ୱର ହେଇଲୁ ଅରୋଗୀ
ବସୁଧ୍ୟା ବୋଇଲେ ଏବେଂ ହୋଇଲି ବଡ଼ ଭୋଗୀ ।
ଦୁର୍ଗାଏ ବୋଇଲେ ତୋହର ଇଚ୍ଛାଏ ରକତ ମାଂସ ଶୋଷ
ଶତକଥା ପାଶୋର ଯାଉ ତୋ ଶରୀର କର ତୋଷ ।
ବସୁଧ୍ୟା ବୋଇଲେ ମା ଗୋ ମୃତୁପିଣ୍ଡ ରୋଧିର ମହାଜାଲା
ଶରୀର ହୋଉଂଅଛୁ ମୋର କେଲହୃତ ପିଙ୍ଗଳା ।
ଆଗ୍ୟାଂ ଦେ ଦେବୀମାନେ ଯାଆନ୍ତୁ
ଦେଖିବାକୁ ଶରଧା ମୋର ରକ୍ତ ମାଂସ ଖାନ୍ତୁ ।
ଦୁର୍ଗା ବୋଇଂଲ ଯେ ନାରାୟଣୀଙ୍କର ଆଗେ
ଆଗ୍ୟାଂ ଦିଅ ଶ୍ରୋଣେହୋ ପର୍ଯୁଣୀମାନେ ରକ୍ତ ମାଂସ ଖାନ୍ତୁ ବେଗେ ।
ଆହେ ପରୀକ୍ଷ ରଜା ଆଦିତ୍ୟ ଦେବତା ଯହୁଂ ଉଦେ ହୋଇ ନଥିଲା
ନବଦିନ ନବ ରାତ୍ର ଏକ ରାତ୍ର ହୋଇଥିଲା ।
ଯେତେକ ମେଦ ମେଦା ମାଏଂସ ପଡ଼ିଅଛି ପୃଥି
ବ୍ରହ୍ମାଣ୍ଡ ପରଯନ୍ତେ ଗନ୍ଧାଉଅଛୁ ଫୁଟି ।
ଦୁର୍ଗା ପୁଛାଇଲେ ଦେବୀମାନନ୍ତ ରାଇଂ
କେତେ କେତେ ରାକ୍ଷସ ମାଇଲ ରଣଭୂଇଂ ।
ପ୍ରଥମେ କର ଯୋଡ଼ି ବୋଇଲେ ନାରାୟଣୀ
ମୁହୁଂ ମାଇଲି ଯମ ଘଣ୍ଟର ତୁଲେ ପାଞ୍ଚ କ୍ଷୋହଣୀ ।
ବ୍ରହ୍ମାଣୀ ବୋଇଲେ ଗୋ ଶୁଣ ଜଗତ ମାତା
ଧଙ୍କାସୁର ସଇନ ମାଇଲି ମୁ ନବ ସହସ୍ର ମର୍ଭୂତା ।
କରଯୋଡ ହୋଇ ଯେ ବୋଇଲେ ମାହେଶ୍ୱରୀ
ଛପନ କୋଟି ରାକ୍ଷସ ମାଇଲି କଙ୍କାସୁର ଆଦି କରି ।
ପୁଣ କହିଲେ ସେ ଦେବୀ ବାଶେଲୀ
ଯୋଜନ ବାହୁ ତୁଲେ ମାଇଲି ତିନ ମର୍ଭୂତ ଅଗୁଳି ।
କୃତ ଆଞ୍ଜୋଳି ହୋଇ ସେ ବୋଇଲେ ବରଜା
ମୋହର ମୁଖେ ପଡ଼ିଲେ ଲକ୍ଷାନେକ ଦନୁଜା ।
ତାହାର ତୁଲେ ଗୋ ବେନି ସାଗର ସେନା
ସଇନ ମତା ଗୋ ନ ଯାଇ ଗଣନା ।

ଘୂଣ ପ୍ରଣପତ୍ୟ ହୋଇ କହଇ ଡ଼ାକେଶ୍ୱରୀ
ପଦ୍ମେକ ରାକ୍ଷସ ମାଇଲି ନବାର ।
ବିନସ୍ତ ଭାବ ହୋଇଂ ବୋଲଇ ମାରକମା
ତିନ ସାଗର ଦାନବ ଗୋ ବଧିଲି ମୁହିଂ ଷେମା ।
ଦୁର୍ଗାର ବଚନେ ବୋଇଲେ ଦେବି ଚଣ୍ଡୀ
ସାତ ମର୍ବୁଦ ଦାନବ ସମରେ ମୁହିଂ ଖଣ୍ଡି ।
ପ୍ରଣପତ୍ୟ ହୋଇ ଯେ ବୋଲଇ କାଳିକା
ସାଗରେକ ଦାନବ ମୁଂ ମାଇଲଇ ଏକା ।
ବାହାସ୍ଫୁଟ ଦେଇଂ ସେ ବୋଲଇ କୋଠାରୀ
ମୋହୋର ମାଇଲାର କେତେଟି ଅନ୍ତ କର ନପାରି ।
ବେଲମା ଗୋଲମା କହିଲେ ଦେବି ଭଇରଣୀ
ଦୁହେଁଂ ମାଇଲୁ ଆମ୍ଭେ ଦେବି କ୍ଷେତ୍ରଣୀ ।
କରପତ୍ର ଯୋଡ଼ି ଯେ ବୋଲଇ ଉଗ୍ରତାରା
ସୁବାହୁ ତୁଳେ ମାଇଲି ମେଦକ୍ଷ ବୀର ।
ମସ୍ତକେ ହାଥ ଦେଇଂ କହଇ ଭଇରବୀ
ତିନ ବୃନ୍ଦ ସଇନ ଗୋ ମାଇଲି ମାହାଦେବୀ ।
ଦୁର୍ଗାର ଅଗ୍ରତେ ଇନ୍ଦ୍ରାକ୍ଷି କହିଲା
କୋଟେକ ପରସନ୍ତେ ହାଣିଲି ଗୋ କେହୁ ଅନ୍ତ କଲା ।
କରପତ୍ର ଯୋଡ଼ି ଯେ କହଇ ତ୍ରିପୁରା
ସୁବାହୁ ତୁଳେ ମାଇଲି ପଞ୍ଚଶତ ଅସୁର ।
ଦୁର୍ଗାର ଅଗ୍ରତେ ରେଖଭର କହଇ ଅମ୍ବିକା
ନବ ସାଗର ସନ୍ୟ ଯେ ମାଇଲି ମୁହିଂ ଏକା ।
କରପତ୍ର ଯୋଡ଼ି ଯେ କହଇ ମାତଙ୍ଗେ
ତେଇଶି ମର୍ବୁଦ ଯେ ମୁ ମାଇଲି ସମଯୋଗେ ।
ଦୁର୍ଗାର ସମ୍ମୁଖରେ ଯେ କହଇ ଭଗବତୀ
ଅଶୀ ଲକ୍ଷ ଯୋଦ୍ଧା ମୁ ମାଇଲି ଅନ୍ତ ନାହିଁ ପାରାନ୍ତ ।
ଅବଲମ୍ବନ ବୋଲି ସେ ଅସୁର ତୁଳେ ମାରୁଛି
ଚାମୁଣ୍ଡାର ତୁଳେ ସମର ମର୍ବୁଦେକ ପାରି ।
ମାତାର ସମ୍ମୁଖରେ ସେ କହଇ ଭଲୁକଂ
ଅବଳନେ ହାଣୁଥିଲି କେହୁ ତାହା ଲେଖି ।
ଦୁର୍ଗାର ସମ୍ମୁଖରେ ଯେ କହଇ କମଳା
ସାଗରେକ ସଇନ ପଡ଼ିଲେ ଯେ ଲକ୍ଷେକ ଅଖିଳା ।

କରପତ୍ର ଯୋଡ଼ି ଯେ କହଇ ବରାହୀ
କଙ୍କାସୁର କୁଳେ କୋଟି ଯୋଦ୍ଧା ମାଇଲି ପାହାନ୍ତ ଅନ୍ତନାହିଁ ।
କରପତ୍ର ଯୋଡ଼ି ଯେ କହଇ ଭଦ୍ରକାଳୀ
ପଞ୍ଚମର୍ବୁଦ ସେନା ମୁ ମାଇଲି ନିଚୋଲି ।
ଦୁର୍ଗାଙ୍କ ସମ୍ମୁଖେ ଯେ ବେତାଳୀ ବୋଇଲା
ମୋହୋର ମାଇଲା ବେନି ମର୍ବୁଦ ହୋଇଲା ।
ସମ୍ୟ ଅମ୍ବିକା କହଲେ ଗୋ ଶୁଣ ମହାଦୁର୍ଗେ
ପଦ୍ମେ ମର୍ବୁଦ ଯୋଧ୍ୟା ମୁ ମାଇଲି ରଣରଙ୍ଗେ ।
କରପତ୍ର ଯୋଡ଼ି ଯେ କହଇ କାମାକ୍ଷି
ତିନି ସାଗର ଯୋଧ୍ୟା ମୁ ମାଇଲି ବାଛି ।
କରପତ୍ର ଯୋଡ଼ି ଯେ କହଇ ବର୍ଦ୍ଧମାସୁଣୀ ।
ଅସଂକ୍ଷେପ ହାଣିଲି ଗୋ କେ ପାରି ତାହା ଜାଣି ।
ଦୁର୍ଗାର ସମ୍ମୁଖେ ଯେ କହଇ ଶଂଖେଶ୍ୱରୀ
ମୁହିଂ ରଣେ ମାଇଲି ଗୋ ଯୋଧ୍ୟା ଖର୍ବ ସ୍ୱର ।
ପ୍ରଣପତ୍ୟ ହୋଇ କହଇ ଅନନ୍ତା
ଶତପଦ୍ମ ସେନା ମାଇଲି କେ କରିବ ଗଣିତା ।
ପୁଣି ବିନମ୍ର ହୋଇ କହଇ ବିଜୟା
ପଞ୍ଚ ସାଗର ସଇନ ମୁ ମାଇଲି ଶକ୍ତି ବାହା ।
ଦୁର୍ଗାର ସମ୍ମୁଖେ ମହାମାୟା ବୋଇଲା
ଅପାର ସନ୍ୟ ମାଇଲି ଯେ କେହୁ ଅନ୍ତ କଲା ।
ମାତ ଗୋ ଯେତେକ ସଇନ ମାଇଲି ଆଜର ରଣେ
ଅଷ୍ଟଉତ୍ତର ଶତେ ଯୋଜନ ଗୋ ପକାଇଲି ପ୍ରମାଣେ ।
ମହା ବିଶ୍ୱବାସେନୀ ଗୋ ତୁ କଅବା ବିସ୍ତରୁ
ଅସୁର ବଳ ସଇନ ଗୋ କେ ସେ ଅନ୍ତକରି ପାରୁ ।
ଆଗେ ଦେବୀମାନେ ଆଦ୍ୟ କରି ଚଉଷଠି ଯୋଗିନୀ
ଆକାଶେ କ୍ଷେପନ୍ତି ଯେ ନବକୋଟି କାତ୍ୟାୟନୀ ।
ବ୍ରହ୍ମାଏଣୀ ମୂଳ ଯେ ତିନି ପଦ୍ମ ଦେବୀ
ଏହାଙ୍କର ମାଇଲେ କିସ ଅନ୍ତ କରି ପାରିବ ।
ନାରାୟଣୀ ମୂଳ ଛପନ କୋଟି ଦେବୀ ଚଣ୍ଡୀ
କଦଳୀ ବନ ପ୍ରାଏ କରି ଗୋ ଦାନେବ ବଳ ଖଣ୍ଡି ।
ଇନ୍ଦ୍ରାଏଣୀ ମୂଳ ଚଉଷଠି କୋଟି ଯୋଗିନୀ ଦେବୀ
ଏହାଙ୍କର ସମର କିସ ଅନ୍ତ ପାଇବ ।

କୁଷ୍ମାଣ୍ଡେକ ଦେବୀ ଆଲୋକନ୍ତ କାମ ରୂପୀ
ପଦ୍ମେକ ଦେବୀ ହୋଇଲେ ଗଗନ ମଣ୍ଡଳ ବେଢି ।
ଷାଠୀଏ ଲକ୍ଷ ଦେବୀ ହୋଇଲେ ବରୁଣାଙ୍କ
ଏହାଙ୍କରେ ଯେ କହଣା ନ ଯାଇ ।
ପନ୍ଦର ମେବକ୍ଷ ସେ ଶ୍ରୋଣେହା ମରଣ
ଏହାଙ୍କରେ ସମର ଅସଙ୍ଖ ଅଗାଧ ।
ମାତ ଗୋ ଏହାଙ୍କୁ ସଞ୍ଚିଲି କସ ଯେ ଦୟ୍ରକୁ
ଏକ ଚଣ୍ଡୀକେ ଶଙ୍ଖେକ ବଳ ସଙ୍ଘାରୁ ।
ପାଞ୍ଚ ଇନ୍ଦ୍ର ସଇନ ଏକା ହୋଇଲ ଚକ୍ର ନସୀ
ମରଣ ନ ସଣଲ ସେ ଦୁଷ୍ଟ ଯେ ଦନୁଜ ।
ମାଇଲେ ଖାଇଲେ ଗୋ କେହ୍ନ ତାହା ଗଣି
ମୁହିଁ ମାଇଲ ଏକା ହୋଇ ଧନ ଯେ କ୍ଷେତ୍ରଣୀ । ୩୬୦୦
ତୋହୋର ସଞ୍ଚରେ ଜାତ ହୋଇଲୁଂ ତୋହୋର ଗର୍ଭୁଂ
ନେତ୍ରକର ଭୂତ ଭବିଷ୍ୟ ଦଶଇ ସେ ସବୁ ।
ଭବିଷ୍ୟକୁ କହିଲି ସିନା ସମସ୍ତ ଦର୍ପି
ଦୁଲଭ ସମରେ ସେ ଅକୁଳ କୁଳ ବ୍ୟାପି ।
ବସୁଧ୍ୟା ବୋଇଲ ମାତ ଗୋ ମୁ ଜାଣଇ ସମସ୍ତ
ମୋହୋର ପରେ ହୋଇଲନ୍ତ ଅନେକ ଗ୍ରାମାୟଣ ମହାଭାରଥ ।
ଅନେକ ବଳ ଦାନବ ସେ ମାଇଲେ ଚକ୍ରପାଣି
ତୋହୋର ଯୁଦ୍ଧକୁ ସମାନ୍ୟ ନୁହଇ ଗୋସାମଣି ।
ବସୁଧ୍ୟା ବୋଇଲେ ଦେବୀମାନଙ୍କ ଗ୍ରଙ୍ଗ ଆଗ୍ୟାଂ ଦେବାକୁ
ଏ ମେଦ ମେଦା ଅସ୍ଥି ଚର୍ମ ମଂସ ଭକ୍ଷିବାକୁ ।
ବହୁତ କ୍ଷିପ୍ରଧ ମାତଗୋ ନୋହଇ ନାଶହିଂ
ପୁଣି ବନୋଇ ନ ପାରଇ ପ୍ରକାଶଇ ମହୀ ।
ବସୁଧ୍ୟାର ବଚନ ଶୁଣି ଜଗତ ମାତ
ପୁଣ ଶ୍ରୋଣେହା ଦେବୀମାନଙ୍କୁ ପାଦରୁ କଲେ ଜାତ ।
ବନ୍ଧାଂସୁଣୀ ଜାତ ପ୍ରଥମେଣ କାଏ
ଦ୍ରୁକେଣ ଜାଗ୍ରଲଇ ପୁଣ ଉପୁଜଏ ।
ପୁଣ ଜାତ ହାଦେ ହୋଇଲେ ବଳାଶୁଣୀ
କାମାସୁଣୀ ଜାତ ହୋଇଲେକ ପୁଣି ।
ଆମାସୁଣୀ ଦାମାରୁଣୀ ହାଦେ ସୁରସୁଣୀ
ଖେମାସୁଣୀ ଜୈଷ୍ଠାସୁଣୀ ବସୁଧ୍ୟାସୁଣି ଅହଲ୍ୟାସୁଣୀ । ୩୬୧୦

ଏ ଦେବୀମାନେ ସବୁ ଶ୍ରୋଣେହା ମୂରତ
ଦୁର୍ଗା ର ମୁଖ ଗୃହ୍ଣି ସେ ଆଧାର ମାଗନ୍ତି ।
ରକତ ନଦୀ ଲେ ଯାଇଂ ପିଅ ଜାଗୁଲାଇ
ପରମାର୍ଥ ବଚନ ସହୁଂ ଦେଲେ ଜଗତଆଈ ।
ଏସନେକ ଆଗ୍ୟାଂ ସହୁଂ ଦେଲେ ଦେବୀ ଦୁଗେ
ଧାଇଂଣ ରକତ ସେଂ ଘୋଟିଲେ ଅତବେଗେ ।
ଗିଶବର ସମାନ୍ୟେ ସହୁଂ ବଢାଇଲେ କାଏ
ଭୁଞ୍ଜନ୍ତି ମୁଖେ ଦେବୀ ସମରେ ଅଭଏ ।
ଯେସନେକେ ଗଙ୍ଗା ମେରୁ ମେଖଲେ ପଶଇ
ସେହୁ ରୂପେ ଦେବୀ ରକତ ମଂାସ ଶୋଷଇ ।
ଜଳନ୍ତି ଅସ୍ତି ଚର୍ମ ମାଂସ ପ୍ରୁଭି ଆଦି କରଣ ଯେହୁ
ଏକ ନଶ୍ୱାସକେ ସେ ଘୋଟୁଛନ୍ତି ମହୁ ।
ଚଉଷଠି ଯୋଜନ ଉଞ୍ଚ ରକତ ନଦୀ ଥିଲି
ଗ୍ରହ ଦବସକେ ସବୁ ଯେ ଶୋଷିଲି ।
ମହା ଖ୍ରିସ୍ତରୂପ କହୁଂ କହୁଂ ସର୍ବ ଭକ୍ଷି
ସମସ୍ତ ଖାଇଲେ ସେ ନ ରହିଲା କିଛି ।
ବସୁଧ୍ୟା ଦେଖନ୍ତେ ସେ ସଗଲି ସମସ୍ତ
ଯେ ଅବା ଜୀବନ୍ତେଣ ଥିଲେକ ଦଇତ ।
ତାହାନ୍ତ ସମରେ ସେ ମାଇଲେ ବଳାସୁଣୀ
ଅନେକ ସମର କଲେ ହାଥିଆସୁଣୀ ବ୍ରହ୍ମାଏଣୀ । ୩୪୧୦

ଯୋର ହସ୍ତ ଧର ସେ କଗୃଣ୍ଡିଲେ ସମସ୍ତ
ରଣେ ମହାଦେବୀ ହୋଅନ୍ତି ପ୍ରମତ୍ତ ।
ଦଇତଙ୍କ ଶହସ୍ରକୁ ସେ ନ କରନ୍ତି ଭଏ
ବଜ୍ରେଣ ନର୍ମିତ ସେ ଯେବଣ ଦେବୀଙ୍କର କାଏ ।
ଶହସ୍ର ନ ବହିଲେ ନ ଯାଇଲେ ବମୁଖ
ପଳାବନ୍ତି ଦାନେବେ ସେ ହୋଇଣ ଅତଦୁଃଖ ।
ମହା ବସ୍ତରୂପ ସେ ହାଥିଆସେଣୀ
ଖେଳିଲା ଦାନବ ବଳ ଗୋଡ଼ାଇଲା ହାଣି ।
ବଟ୍ଟଂଗିଲ୍ଲ ପର୍ବତେ କଗୃଣ୍ଡଇ ତୋଳି
ଅସ୍ଥି ଚର୍ମ ମାଂସ ହୁଅନ୍ତି ସର୍ବଧୂଳି ।
ରଣରଙ୍ଗ କଉତୁକ କହୁଂତ ନ ପାର
ଏକା ହସ୍ତୀବାହାନ କେ ଅନେକ ସନ୍ୟ ମାର ।

ଜପାସୁର ବୋଲି ସେ ଦଇତ ସେନାପତି
ଜପେଣ ତୋଷିଲା ସେ ପୂର୍ବେ ବେଦପତି ।
ଏକ ଲଏ କରି ବସିଲା ବେନି ବରଷ ଦୃଢ ବ୍ରତ
ପ୍ରସନ ହୋଇଲେ ତାକୁ ପଞ୍ଚ ଯେ ବକାନ୍ତ ।
ବ୍ରହ୍ମା ବୋଇଲେ ରେ ଯାହା ଇଚ୍ଛା କଲୁ ଯାଉ ଧାନ
ମାଗ ତୁ ବର ତୋତେ ହୋଇଲି ପ୍ରସନ ।
ଦାନେବ ବୋଇଲା ନାଥ ଯେବେ ତୁ ଦେବୁ ବର
ଜପ ତପ ଇଚ୍ଛା ଅନେକ ବଳଇ ମନ ମୋର । ୩୪୩୦

ସ୍ୱାମି ଯେବେ ପ୍ରସନ ହୋଇଲୁ ବିରଞ୍ଚି
ଅଗତିକ ପ୍ରାପତି ଆନ ନ ବଳଇ କିଛି । ୧
ପିତା ବୋଇଲେ ତୁ ନିଜ ପୁରେ ଯା ଯା
ବଇତରଣୀ କୁଳେ ତୁ ତପ କରୁଥା ଯା ।
ଯେ ତୋହୋର ଜପ ଖଣ୍ଡଇ ବଳାତ୍କାରେ
ତୋହୋର ଗୃହଂଲେ ଦହନ ହୋଇବ ତାହାର ଶରୀରେ ।
ଯଦାପି ହରହର ହୋଇବ ପୁରନ୍ଦର
ତୋହୋର ବନାନ୍ତରେ ଗୃହଂଲେ ଭସ୍ମାନ୍ତର ।
ଏସନେକ ବର ଯହୁଂ ଦେଲେ ବହ୍ମବିଧି
ସତ୍ୟ ଯୁଗ ତାହାକୁ ହୋଇଲା ବୁଦ୍ଧି ସିଦ୍ଧି ।
ମହାନ୍ଦ୍ର ମଣ୍ଡଳେ ସେ ଅଟଇ ଅଧିପତି
ମଏ ଦାନବକୁ ପ୍ରଦାନ କଲା ତାହାର ଦୋହିତା ।
ସେ କନ୍ୟାର ନାମ ହୋଇଲାକ ଋଧି
ତାହାର ତହୁଂ ଜାତ ହୋଇଲାକ ବକ୍ରାଧି ।
ବକ୍ରସିଂଘର ନନ୍ଦନ ଯେ କପିଳ ସିଂଘର ରାଏ
ମଏଷାଂସୁର ଦାନବ ଯେ ତାହାର ତନଏ ।
ଏମନ୍ତ ଜପାସୁର ମଏଷାଂସୁର ପଣ ଅଜା
ପୀରତି ବଢ଼ାଇଂ ସେ କଲା ଅନେକ ପୂଜା ।
ସୋଗେଣ ଭୋଗ କରାଇଲା ଦତ୍ୟପତି
ଜପ ତପ ଛାଡ଼ି ସେ ମଏଷାଂସୁର ସେନାପତି । ୩୪୪୦
ଦକ୍ଷିଣ କୋଶଳ ମଣ୍ଡଳ ଅଧିକାରୀ
ପାଞ୍ଚ କୋଟି ଦାନେବ ଉପରେ ଦଣ୍ଡଧାରୀ ।

---

୧ — (ଖ) ଜପୁଂ ତାପ ତ ମୋଠିତ ନ କରିବ କିଛି ।

ଆହୋ ପରୀକ୍ଷ ଅନେକ ଭୋଗ କଲା ସେ ଜପାପାଦ
କର୍ମର ବିପାକେ ଆସି ପଡ଼ିଲା ପରମାଦ ।
ଆହୋ ପରୀକ୍ଷ ଜଗା ବଳସ୍ତ ଜାଣି ଜପାସୁର ସଇନ
ଘୋର ହସ୍ତ ଗୁଣ୍ଡଆଇଂ ସବୁ ମାଇଲା ହସ୍ତୀବାହେନୀ ।
ସଇନ ପଡ଼ନ୍ତେ ଜପାସୁର ବିମୁଖ
ବୋଇଲା କି ବୋଲି ଗୃହ୍ଣଂବ ଆହୋ ଦାନେବଙ୍କର ମୁଖ ।
ସମରେ ଧନୁ ଶହସ୍ର ସେ ନ ପାରଇ ଧରି
ପିତାକୁ ଲଏ କରି ବସିଲା କୁମଣ୍ଡଳ ଗିରି ।
ଆହୋ ପରୀକ୍ଷ ଅସୁର ନଷ୍ଟାପର ଦେଖି ସେ ହସ୍ତୀ ବାହେନୀ
ଆକର୍ଷି ଧଇଲା ସେ ଘୋର ହସ୍ତ ଘେନ ।
ଆକର୍ଷି ଜପାସୁର ସେ ଗୃହ୍ଣଂଛୁ ତାହାକୁ
ନିମିଷକେ ଗିଳିଲା ସେ ଜପାସୁରକୁ ।
ପରୀକ୍ଷ ଅଗ୍ରତେ ଶୁକ ମୁନି ବୋଇଲେ
ଦେବ ଅହବ୍ରତେ କ୍ଷଣକେ ନାଶ ଗଲେ ।
ଜପାସୁର ନାଶ ଗଲା ହସ୍ତିବାହେନୀର ହାତେ
ପୁରନ୍ଦର ପୁଷ୍ପ ବୃଷ୍ଟି କଲା ସୁବର୍ଣ୍ଣ ତାହାର ମାଥେ ।
ଆହୋ ମଏଷାଂସୁରର ସମ୍ପତ୍ତି ଏକା ଜପାସୁରର ଧର୍ମେ
ଶ୍ରୀ ଆଶ୍ୟ ହୋଇଲା ଅତି ଉତ୍ତକର୍ମେ । ୩୮୫୦
ଜପାସୁରର ପଡ଼ନ୍ତେ ଅମଙ୍ଗଳ ହୋଇଲା ରାଜ୍ୟ
ଦାନବ ବଧୂ ସେ ହୋଇଲେ ହୀନ ବୀର୍ଯ୍ୟ ।
ଦାନବ କୁଳେ ପୁଣ ଲାଗିଲାକ ଶୋକ
ଅନେକ ସମ୍ପର୍କ ସେ ଛଳେ ବୃନ୍ଦାଅର୍କ ।
ଆହୋ ପରୀକ୍ଷ ଅଠାଇଶ ସେନାପତି ଯେ ଏ ତାହାର ଗଲା
ସତାଇଶ ମାତାଙ୍କର ବଳରୁ ଜଣେହେଂ କେହି ନ ଉବୁରିଲା ।
ମେଦ ମେଦା ପୀଡ଼ିତ ହୋଇଲାକ ପୃଥି
ଅନେକ ଆନନ୍ଦେ ଚଳଇ ବସୁମତୀ ।
ଏଥୁଅନ୍ତରେ ସେ କାଳ ବିକାଳ ଦୁହେଂ
ଗୁପତେ ଥିଲେ ସେ ରଣଗିରି ନିକଟେ ହେ ।
ସନ୍ୟ ନିଧନେ ସେ ଅଇଲେ ଅତିବେଗେ
ଯାଇ ଜଣାଇଲେ ସେ ମଏଷାଂସୁରର ଆଗେ ।
ଅବଧାରବା ଗୋସାଇଂ ଆଠଯାକ ନିମନ୍ତ୍ରିଲେ ତୋର
କର୍ଣ୍ଣେଣ ବଚନ ନ ଶୁଭିଲା ତାହାର ।

ପୁଣ ଦାନବେ ଯେ କହଇ ବେଗ ବେଗ
ଅଠେଇଶ ସେନାପତି ହୋଇଲେ ଓଳେଗ ।
ମହାଅସୁର ବୋଇଲା ଓଳାଗନ୍ତୁ ଜା ଜମନ୍ତେ
ତ୍ରିଶୂଳ ସାଧ ମୋତେ ହୋଇବ ଯେମନ୍ତେ ।
ଗ୍ରୀମୁରେ ଜଣାଇଲା ସେ କାଳ ବିମୋଚନ
ସ୍ୱାମି ପ୍ରାଣତ୍ୟାଗ ହୋଇଲେ ତୋର ସେନାପତିମାନ । ୩୪୭୬
ଆହୋ ପରୀକ୍ଷ ରାଜା ଶୁଣିଲା ସମ୍ବାଦ ବୋଲି ପଡ଼ିଲା ନୃପମଣି
କାଳ ବିମୋଚନ ଧରି ନଉଡ଼ନ୍ତୁ ପାଣି ।
ସାଷ୍ଟମ ପାଏ ହୋଇ ସେ ଦୈତ୍ୟ କୁଳ ରାଏ
ଗ୍ରୁଡ଼ଇ ନିଶ୍ୱାସ ସେ ଗତ ପ୍ରାଣ ପ୍ରାଏ ।
ମୁଖେ ଜଳ ସିଞ୍ଚଇ ସେ ଧୂମଲୋଚନ
ଉଚସ୍ୱରେ ନିଶ୍ୱାସ ଗ୍ରୁଡ଼ଇ ଘନ ଘନ ।
ବିଞ୍ଚନ୍ତେଣ ମହାରାଜା ହୋଇଲା ସାଷ୍ଟମ
ଏବେ ସେ ବେଢ଼େହେରଣ କଲା ମୋର ପୁରେ ଯମ ।
ତିନି ବ୍ରହ୍ମାଣ୍ଡ ଜିଣି ପାରନ୍ତୁ ଏକା ଜଣେ
ତ୍ରିଶୂଳ ଲିଙ୍ଗ ଯୋଗେ ସେ ପଡ଼ିଲେ ଅକାରଣେ ।
ମଣିତ ନ ଗଲା ମୁହିଂ ଦେବତାଙ୍କର କୃଟ ଛନ୍ଦ
କର୍ମକଇ ନିନ୍ଦଇ ସେ ରୋଦଇ ନରେନ୍ଦ୍ର ।
କାଳ ବିମୋଚନ ବୋଇଲା ଯେବେ ବିଷ୍ଣୁଙ୍କୁ ଭଯ୍ୟେ ଜାଣୁ
ଚନ୍ଦ୍ରେଣ ବଧ ବୋଲି ଯେ ପଣମାଣୁ ।
ମହିଷାଂ ବୋଇଲା ମୁ ଅପାରକାଳ ବ୍ରହ୍ମାଙ୍କୁ ତପକଲି
ପୁରୁଷେଣ ଅବଧ ବୋଲି ବର ମାଗିଲି ।
ଅନେକ ମନ୍ତ୍ରୀ ଯେ କହିଲେ ନିର୍ଦ୍ଧାର
ବିଷ୍ଣୁ ହୋଇଲା ସେ ତ୍ରିଶୂଳ ଲିଙ୍ଗ ଅବତାର ।
ଅନ୍ଧ ବୋଲିଣ ମୁ ତାହାକୁ କଲି ମନ୍ଦ
ଅନମତି କାରଣେ ଶୁଣିଲି ମୋର ପାଦ । ୩୪୭୭
ମତ୍ତଗର୍ବ କରି ସ୍ତ୍ରୀଲିଙ୍ଗ କଲି ଗ୍ରର
ଯାହା ନିନ୍ଦା କଲି ତେଣେ ହୋଇଲି ଅପହାର ।
ଆହେ ବାନ୍ଧବେ ମୋର ପ୍ରାଣର ସଙ୍ଘାତ
ଏକାବେଳେକେ ମୋତେ କରିଗଲ ଅନାଥ ।
ଆରେ କାଳ ବିମୋଚନ ମୋତେ ଲାଗିଲା ବଡ ଭଏ
କେବଣ ସମୁଦ୍ରେ ମୋର ଲୁଚ୍ଛଇବ କାଏ ।

ଚିଘବଣ ଘେବଣ ସେନା ପ୍ରାଣ ତେଜ୍ୟା ହେଲେ ରଣେ
ଆବର ଜୀବନ ଜମ୍ଭୂତ କାରଣେ ।
କର୍ମ ଆଦର କର ସେ ଶିରେ ବେକ ଭୂଜ ତାଡଇ
ବିଜୁପାତ ପ୍ରାଏକ ସେ ଭୂମିରେ ପଡଇ ।
ରାଜାର ବଚନେ ସେ କାଲ ବିମୋଚନ
ଆପଣାର ଅଧମ ପଣେ ମଗ୍ଲଇଲୁ ସେନାପତି ମାନ ।
ଆଗହୁଂ କହିଲେ ତୋତେ ଚଣ୍ଡ ମୁଣ୍ଡ ଘେବଣ ପାଷା
ଆପଣେ ନ ଜାଣି ତୁ ଯେ କଲୁ ମୃତୁବାଞ୍ଛା ।
ତୁ ଆପଣେ ମାଇଁ ଯେ ମିଳନ୍ତୁ ତାହାର ଗ୍ରୁମୁରେ
ପରାକର୍ମ ରୂପ ତୋର ଦେଖନ୍ତା ପ୍ରଥମରେ ।
ପାମର ଦର୍ପ ବହି କଲୁ ବଡ଼ପଣ
ବଡ଼ିମା ପଣେ ବୋଇଲୁ ଚଣ୍ଡ ମୁଣ୍ଡ ବାଲ ଧରି ଆଣ ।
ତୁହି ସେ ଆପଣେ କଲୁ ହାଦେ ଦ୍ୱନ୍ଦ
ସେହି ବାକ୍ୟ ଗୋଟି ତୋତେ ହୋଇଲା ପ୍ରମାଦ । ଶ୍ଲୋ ୧୦
ଏବେ ନସତ କଥା ଦେବ କଦାଚ୍ଛିତେ ନ ବୋଲି
ଦଣ୍ଡ ସାଜ ସ୍ତ୍ରିଶି ବୃନ୍ଦ ଦେଖିବା ତବେଗେ ଗୃଲ ।
ଞ୍ଜିଗୃରକୁ ଯୋଗାଇଲେ ହୋଇବାକ ଦ୍ୱନ୍ଦ
ନଉଚେତ ନଇଲେ କରବା ଗୃଲ ସନ୍ଧ ।
ହେ କାଲ ବିମୋଚନ ମୁଖରୁ ଏସନକ ଶୁଣି
ମଏଷାଂସୁର ଦାନବ ସନମତ କଲା ପୁଣି ।
ଦୂନ୍ଦଭି ଶବ୍ଦ ବଜାଇଲେ ମହାରାଜା
ଆପଣେ ବୋଇଲେ ରେ ଦଣ୍ଡ ମୋର ସଜା ।
ସାରଥିର ନାମ ଯେ ଧୂମଲୋଚନ
ଅବିକାର ଦାନବ ସେ ତାହାର ନାହିଁ କର୍ଣ୍ଣ ଚକ୍ଷୁ ।
ଆହୋ ଖଗ ଗରେଡ ଯେହ୍ନେ ଆକାଶେ ଖେପଇ ଧୂମ
ଗଗନ ମେଖଳା ସେ ଦାନବଙ୍କର ବିକ୍ରମ ।
ତାହାଙ୍କୁ ରାଇଂ ଆଗ୍ୟା ଦେଲେକ ଦନୁଜ
ଆରେ ଧୂମ ରଥ ମୋହୋର ସାଜ ।
ରାଜା ଆଗ୍ୟାଂଏ ସେ ରଥ ସାଜିଲେ ସାରଥି
ସୂର୍ଯ୍ୟ ମଣ୍ଡଳ ରଥ ଯେ ଆଦ୍ଭତର ଜୋଡ ।
ଅନେକ ରତନ ସେ ମଣ୍ଡିଲିକ ହସ୍ତ
ଉଡନ୍ତି ପାତାଗ ·ଗଗନେ ବଜୁ ରେହ୍ମ ।

ଝଟକାନ୍ତ ଝରାଏ ରଥର ଚଉପାଶ
ଶାମଳ ମେଘେ ଯେସନ୍ତେ ଗମନ୍ତ ବଳାଅକ । ୩୪୯୦
ରଥର ଆଏତନ କହିତ ନ ପାର
ଦେବ ଦଳଣ ରଥ ଆଏତନ ସହସ୍ର ଗୁଣ ।
ମାରଗର ଅମୃ ନାଳା ରେଖ ଖଞ୍ଜିଲ
ମାଣିକ ଧାଡି ଧାଡ଼ି ସେ ପ ଦେକର ପୋଏଲା ।
ଝଲକନ୍ତ ରତ୍ନ ବଇଡୂର୍ଯ ଗ୍ରୁଏଣୀ ପାଣି ପାଟି
ରୂପାର ନିର୍ମାଣ ସେ ପାଙ୍କଛ ଚଉଷଠି ।
ଲମ୍ବନ୍ତ ଗଜ ମୁକୁତା ଚଉଫେର
ଅଷ୍ଟରତ୍ନ କଳସ ବସନ୍ତ ରଥର ଉପର ।
ନେତର ପାତାଙ୍କ ଯେ ଉଡନ୍ତ ଏକ ଲକ୍ଷ
ବାଳ ଅର୍କ କୋଟି କାନ୍ତି କରଣ ପ୍ରତକ୍ଷ ।
ରତ୍ନଗିର ସମାନେ୍ୟ ଅଦ୍ଭୁତେକ ରଥ ସାଜି
ରଥେ ଯୋଚଲି ମେଘନାଦ ସାରଥେ ନବ ସହସ୍ର ବାଜୀ ।
ସ୍ୱେତ ପାଟ ଗହଲେ ରଥ ଯେ ମୁରାଟ
ତ୍ରାଳମ୍ବ ଚାମର ସେ ରୂପାର ବନ୍ଧ ବେଣ୍ଟ ।
ମାଣିକ୍ୟର ପୁଞ୍ଜି ପୁଞ୍ଜି ଝଡା ମାଳେ ଝଳି
ଲମ୍ବନ୍ତ ଚାମର ମୁକୁତା ମାଳି ମାଳି ।
ସ୍ୱର୍ଣ୍ଣ ରତ୍ନ ପ୍ରବାଳ ଯେ ମୁକୁତାର ଝରା
ଇନ୍ଦ୍ର ଗୋବିନ୍ଦ ପାଟରେ ଚଉକଢ ଦେର ।
ନାନା ରତ୍ନ ମଣି ଯେ ଲମ୍ବନ୍ତ ଚଉପାଶ
ଯେସନେ ତାରାଗଣେ ଉଦଏ ଆକାଶ । ୩୫୦୦
ଦେବ ଖଣ୍ଡରୁ ଯେତେକ ଆଣିଥିଲା ରତ୍ନ
ନେଇଣ ସାରଥି ରଥେ ମଣ୍ଡିଲା ଅତି ଯତ୍ନ ।
ରଥରେ ଖଞ୍ଜିଲା ନେଇ ରତ୍ନ ବାରାନିଧି
ସେ ରଥ ବର୍ଣ୍ଣିବାକୁ କାହିଁ ମୋର ବୁଦ୍ଧି ।
ତ୍ରୈଲୋକ୍ୟ ମଧ୍ୟେ ସେ ଅମୂଲ୍ୟ ରତ୍ନସାର
ବିଶ୍ୱକର୍ମା ଖଞ୍ଜିଲା ଆଣି ସେ ରଥର ଉପର ।
ସଞ୍ଚକେତ ବିମାନ ଏହାକୁ ସମ ନୋହିଲା
ଏହା ଶୁଣି ନରେନ୍ଦ୍ର ଯେ ପରୀକ୍ଷ ବୋଇଲା ।
ହେ ପଣ୍ଡିତ ତୁମ୍ଭେ ସୁବୁଦ୍ଧି ବ୍ୟାସ ସୁତ
ବୋଇଲ ଯେ ଆଦ୍ଭୁତ ଦେବତାର ଏ ରଥ ।

ଅସମ୍ଭବ କଥା ତ ଶୁଣିଲି ମୋର ନାହିଂ
ଏ ରଥ ମଏସାଂସୁର ପାଇଲାକ କାହିଂ ।
ଶୁଣ ହେ ମହାରାଜ ବଦନ୍ତି ଶୁକବ୍ରହ୍ମା
ଯାହା ତୁ ପଗ୍ଭରିଲୁ ଶୁଣହି ମହିମା ।
ଆଦିତ ଦେବତାର ସୂର୍ଯ୍ୟ ମଣ୍ଡଳ ରଥ
ଏଥେ ଆରୋହଣ କରଇ ଦିନକର ନାଥ ।
ଉଦଏ ଗିରି ଭେଦ ପ୍ରକାଶଇ ଜଗତ
ସପ୍ତ ଅଶ୍ୱ ଯୋଡି ବାହାଇ ଅରୁଣ ସାରଥି ।
ଗୋଲୋକ ନାମ ବୃକ୍ଷ ତକ ସେହୁ ରଥେ
ସେଥି ପ୍ରଦକ୍ଷିଣ କରଇ ଦେବ ନିତ୍ୟେଂ । ଗ-୫୧୦
ଆହେ ପରୀକ୍ଷ ଆଦିତ ଦେବତାଙ୍କୁ ଧାଡ଼ି ଦେଲାକ ରାହୁ
ରଥ ଘେନି ସେ ଯେ ଅଇଲାକ ତହୁଂ ।
ବଗ୍ଭମାସ ଶୁକଳ ପୂର୍ଣ୍ଣିମୀର ଅନ୍ତେ
ପୂର୍ଣ୍ଣିମୀ ତିଥି ସେ ବାଇଶି ଦଣ୍ଡ ପରଯନ୍ତେ ।
ଭୃମିବାର ସେ ଦିନ ଦୁଜା ଯେ ନକ୍ଷେତ୍ର
ଦୁଜା ମେଷ ରାଶି ରାହୁ ଘରେ ଚନ୍ଦ୍ର ଉଦିତ ।
ସମ୍ପୂର୍ଣ୍ଣ ବେଳ ଯେ ଏକାଦଶ ଘଡ଼ି
ରାହୁ ଆଦିତ ଯେ ହୋଇଲେ ଭେଟା ଭେଟି ।
ଦେଖିଣ ଧାଇଂଲା ସେ ଦ୍ରପିଷ୍ଟ ଚଣ୍ଡାଳ
ରଥ ଗ୍ଭଡ଼ି ପଳାଇଲା ସେ ଦିଗପାଳ ।
କ୍ଷୀର ସମୋଦ୍ରେ ଆଦିତ ଦେବତା ଲୁଚଇ
ସୂର୍ଯ୍ୟ ମଣ୍ଡଳ ରଥ ଚିଳି ରାହୁ ଘୂଞ୍ଚଇ ।
ଆଦିତକୁ ନ ପାଇଲା ସେ ପକାଇଲା ରଥ ଉଦୁଗାରି
ରତନ ଗିରି ଶିଖରେ ସେ ଥିଲା ହାଦେ ପଡ଼ି ।
ବିଶ୍ୱକର୍ମା ସହିତେ ରଥ ଆଦିତ ଦେବତା ଚଢ଼ି
ଉଗ୍ଭଳିଲା ରଥ ବୋଲି ତାହା ଆଦିତ ନ ଚଢ଼ି ।
ରାହୁର ପୁତ୍ର ତା ଜମ୍ଭୁ ଦଇତ ନେଲା
ସମସ୍ୟେକ ରଥ ହାଦେ ତାହାର ତହିଂ ଥିଲା ।
ଜମ୍ଭୁ ଦଇତକୁ ଯେ ମାଇଲେ ସୁନାଶୀର
ଟ ରଥ ଥୋଇଲା ନେଇ ଅମର ସ୍ୱର୍ଗପୁର । ଗ-୫୨୦
ଜ ଦଇତର ପୁତ୍ର ମଏ ଦାନବ
ତ ଙ୍କୁ ବର ଦେଲା ଦେବ ସଦାଶିବ ।

ଅମରାବତୀ ପୁରକୁ ସେ ମଏ ଦାନବ ଦେଲା ଧାଇଁ
ଇନ୍ଦ୍ର ପଳାଇଲା ତେଜି ଅମରାବତୀ ପୁରୀ ।
ଅନେକ ରତ୍ନ ବସ୍ତୁ ଅସୁର କଲେ ଜୁର
ସୂର୍ଯ୍ୟ ମଣ୍ଡଳ ରଥ ନେଲା ମଏ ଦାନବ ଅସୁର ।
ଆହେ। ପରୀକ୍ଷ ଘୋମୁଖ କେଶବ ରୂପେ ଅବତାର ହୋଇ
ସେ ମଏ ଦାନବକୁ ମାଇଲେ ଚକ୍ରଧାରୀ ।
ସେ ମଏ ଦଇତର ଅନ୍ଧେକ ସନ୍ତତି
ସେ ଅନ୍ଧେକ ଦତ୍ୟକୁ ରଣେ ମାଇଲେ ବକୋଢ ।
ଅନ୍ଧେକର ନନ୍ଦନ ଯେ ହୋଇଲା ରକ୍ଷ ଭକ୍ଷ
ତାହାକୁ କୃଷ୍ଣ ରୂପେ ମାଇଲେ ଶ୍ରୀବତ୍ସ ।
ସେ ସୂର୍ଯ୍ୟ ମଣ୍ଡଳ ରଥ ଯେ ଆଣିଲା ଦାମୋଦର
ଯତନେ ଥୋଇଲେ ନେଇ ହିରଣ୍ୟ ଗର୍ଭପୁର ।
ରକ୍ଷ ଭକ୍ଷ ପୁତ୍ର ଯେ ହେତ ପ୍ରହେତ
ବିରଞ୍ଚିର ବରେ ସେ ଅନେକ କଲେ ଅନୀତ ।
ସେ ହେତ ପ୍ରହେତ ଧାଇଁଲେ ହିରଣ୍ୟ ଗର୍ଭ ପୁରକୁ
ସମରେ ଆଖଣ୍ଡଳ ଯେ ହାରିଲେ ତାହାଙ୍କୁ ।
ଦାନବର ଭୟେ ଇନ୍ଦ୍ର ସମର କଲା ତେଜ୍ୟା
ସେ ସୂର୍ଯ୍ୟ ମଣ୍ଡଳ ରଥ ଆଣିଲା ଦନୁଜା । ୩୫୩୦
ଆହେ। ପରୀକ୍ଷ ଦତ୍ତାତ୍ରେୟ ଅବତାରେ ସେ ଦେବ ଶୀରପତି
ସମରେ ମାଇଲେ ସେ ହେତ ପରହେତ ।
ସେ ସୂର୍ଯ୍ୟ ମଣ୍ଡଳ ରଥ ଆଣିଲେ ଚକ୍ରପାଣି
ଯଶୋବନ୍ତୀ ପୁରେ ସେ ଥୋଇଲେକ ପୁଣି ।
ହେତ ପ୍ରହେତ ପୁତ୍ର ବଜ୍ରାଙ୍ଗ କାଳାନଳ
ଯମକଇ ଜିଣି ଆଣିଲେ ରଥ ସୂର୍ଯ୍ୟ ମଣ୍ଡଳ ।
ସେ ରଥ ଉପରେ ସେ ଅସୁର ଆରୋହି
ତାହାର ଭଏ ଦେବ ନ ରହିଲେ କେହି ।
ଅନୀତ କର୍ମ ଦେଖି ଦେବତାଙ୍କ ଗୁହାରି
ନାରାୟଣ ଅବତାର ସେ ହୋଇଲେ ଚକ୍ରଧାରୀ ।
ସେ ବଜ୍ରାଙ୍ଗ କାଳାନଳକୁ ମାଇଲେ ଦେବ ଯୁଦ୍ଧେ
ସେ ସୂର୍ଯ୍ୟ ମଣ୍ଡଳ ରଥ ଥୋଇଲେ ନେଇ ପାତାଳ ବୈକୁଣ୍ଠେ ।
ବଜ୍ରାଙ୍ଗର ପୁତ୍ର ମାଳି ସୁମାଳି
ତାହାକୁ ବର ସେ ଦେଲେ ଅଂଶୁମାଳୀ ।

ଆଦ୍ଭତର ବନରେ ସେ ହୋଇଲେ ଜଗକର୍ତ୍ତା
ସମସ୍ତ ଋଷି ବ୍ରାହ୍ମଣଙ୍କର ଘେନଲେ ସେ ହତ୍ୟା । ୧
ବିଷ୍ଣୁ ଅବତାର ହୋଇଲେ ଜନାର୍ଦ୍ଦନ ରୂପେ
ହେଲେ ମାଇଲେ ସେ ବେନ୍ନ କଉଣୋପେ ।
କୃଷ୍ଣ ତହୁଂ ଅଇଲେ ଦେବ ରଥ ଘେନ୍ନ
ନେଇଂ ସମର୍ପିଲେ ସେ ଦେବତା ଚନ୍ଦ୍ରଯୋନି ।
ମାଲ୍ୟବନ୍ତ ପୁତ୍ର ମଧୁ ନାମେ ଦୈତ୍ୟ
ତପେଣ ତୋଷିଲା ସେ ଦେବ ଶୂଳହସ୍ତ ।
ସ୍ୱର୍ଗ ପୁରକୁ ସେ ବହୁତ ଦେଲା ଧାଡ଼ି
ପଳାଇଲେ ସ୍ୱର୍ଗଗ୍ରୁଡ଼ି ଗଗନ ଅଧିକାଶ୍ତି ।
ଅନେକ ଅପକ୍ଷରା ହରି ଆଣିଲାକ ବଳେ
ଷୋଳ ସହସ୍ର କନ୍ୟା ହରି ଆଣିଲେ ଗୃଣ୍ଡାଳେ ।
ସେ କନ୍ୟାନ୍ତ ବସାଇ ଆଣିଲେ ସୂର୍ଯ୍ୟ ମଣ୍ଡଳ ରଥେ
ଅନେକ କଉତୁକେ ସେ ବହୁଡ଼ନ୍ତ ଦଇତେ ।
ଗରୁଡ଼ ନାରାୟଣ ସେ ଆସନ୍ତି ଆକାଶେ
କନ୍ୟାଙ୍କୁ ଘେନି ରାକ୍ଷସେ ପଡ଼ିଲେ ଆଗେ ସେ ।
ସେ ମଧୁ ନାମେ ଦୈତ୍ୟକୁ ମାଇଲେ ଜନାର୍ଦ୍ଦନ
ତହୁଂ ସେ ନାମ ବହିଲେ ଶ୍ରୀମଧୁସୋଦନ ।
ଷୋଳ ସହସ୍ର ନାଏକା ସେ ଆଣିଲେ ଦେବହରି
ସୂର୍ଯ୍ୟ ମଣ୍ଡଳ ରଥ ଆଣିଲେ ଆଦ୍ଦ କରି ।
କନ୍ୟାନ୍ତ ଅମରେ ଗୁଡ଼ିଲେ ଦାମୋଦର
ସେ ସୂର୍ଯ୍ୟ ମଂଡ଼ଳ ରଥ ଥୋଇଲେ ବରୁଣ ପୁର ।
ସେ ମଧୁ ଅସୁର ପୁତ୍ର ଜଳତରଙ୍ଗ
ତପେଣ ତୋଷିଲା ସେ ଦେବ ଶଶାଙ୍କ ।
ବରୁଣ ପୁରକୁ ସେ ଜଳ ତରଙ୍ଗ ଦେଲା ଧାଡ଼ି
ଜଳ ଅନ୍ଧାର ନାଏକାକୁ ସେ ବଳେ ନେଲା ହରି ।
ସୂର୍ଯ୍ୟ ମଣ୍ଡଳ ରଥ ବରୁଣ ପୁରୁ ନେଲା
ଜଳ ଅନ୍ଧାର ନାଏକାକୁ ସେ ବେଳେ ଭୋଗ୍ୟ କଲା ।
ପୁଣ ଅବତାର ହରି ଦାମୋଦର ରୂପେ ଜଳେ
ଜଳ ତରଙ୍ଗ ରଜାକୁ ସେ ମାଇଲେ କୁତୋହଳେ ।

---

୧ — (ଝ) ସୋମପୁର ବ୍ରାହ୍ମଣୀ ।

ସୂର୍ଯ୍ୟ ମଣ୍ଡଳ ରଥ ଆଣିଲେ ହରି ଏକା
ଏହାର ନନ୍ଦନ ଉପୁଜିଲା ତାଡ଼କା ।
ସେ ବନ୍ଧେଧିଲା ସେ ଆକାଶ ଭୁବନ
ସ୍ୱର୍ଗ ତେଜ୍ୟା କରି ପଳାଇଲେ ମଘବାନ ।
ସେ ସୂର୍ଯ୍ୟ ମଣ୍ଡଳ ରଥ ଘେନିଲାକ ବଳେ
ଅନେକ ଅନାଚ କଲା ତ୍ରୈଲୋକ ମଣ୍ଡଳେ ।
ଆହେ। ପରୀକ୍ଷ କାମଦହନ କାଳେ କାର୍ତ୍ତିକ ଅବତାରେ
ସେ ତାଡ଼କା ଦଇତକୁ ମାଇଲେ କୁମାରେ ।
ସୂର୍ଯ୍ୟ ମଣ୍ଡଳ ରଥ ନେଂଇଣ ଦେବ ହରେ
ସେ ରଥ ଥୋଇଲେ ନେଇ ଅଳକାବତୀ ପୁରେ ।
ଆହେ। ଶମ୍ଭୁ ନିଶମ୍ଭୁ ଯେ ଆକାଶେ ହେଲେ ରଜା
ସେ ସୂର୍ଯ୍ୟ ମଣ୍ଡଳ ରଥ ଘେନି ଗଲେ ଦନୁଜା ।
ଏ ରଥ ଘେନିକଲେ ଆକାଶ ଦିଗ ବିଜେ
ଅନେକ ସମ୍ଭରେ ମହିଂଷାସୁରକୁ ଦେଲେ ମହାରାଜେ ।
ବ୍ୟାସଙ୍କର ନନ୍ଦନ ବଦନ୍ତି ଶୁକବ୍ରହ୍ମା
ଏ ରଥ ହାଦେ ଏସନକ ମହିମା । ୩୫୬୭
ତୁ ଯେ ପୁଚ୍ଛିକଲୁ ଏ ରଥ କାହିଂ ପାଇଲା ମହିଂଷାସୁର
ତେଣୁ କରି କହିଲି ମୁଁ ଶାହାସ୍ର ବିସ୍ତର ।
ଶୁଣି ସାନନ୍ଦ ଯେ ହୋଇଲେ ପରୀକ୍ଷ ରଜା
ଶୁକ ବ୍ରହ୍ମାର ପାଦେ ସେ କଲାକ ଦିବ୍ୟ ପୂଜା ।
ଅବିକାର ପୁରୁଷ ସେ ଶୁକମୁନି
ଋଷିକୁଳ ମଧ୍ୟେ ଯେ ମହିମା ତାର ଧନି ।
ଯାର ବାକ୍ୟ ଗୋଟି ଯେ ପାଷାଣର ରେଖା
ଯାବତ ଚନ୍ଦ୍ର ଦିବାକର ଯେହ୍ନୁଂ ସାଖା ।
ସେ ମୁନି ପଣ୍ଡିତ ସୁବୁଦ୍ଧି ମହାଭିଗ୍ୟଂ
ଭୂତ ଭବିଷ୍ୟ ଗ୍ୟାଂତା ଯେ ଅଟଇ ସର୍ବଗ୍ୟଂ ।
ଅପକ୍ଷ ସାଗରକୁ ଯେବଣ ମୁନି ଗ୍ୟାଂତା
ଗଙ୍ଗାବାଲି ସଂକ୍ଷେପ କରିବାକୁ କେହ୍ନୁଂ ସମରଥା ?
କଉତୁକ ପୁରୁଷ ତୁ ସର୍ବଦା ଆନନ୍ଦ
ମାନବ ଜନ୍ମକୁ ସ୍ତବନା ମହାବନ୍ଧ ।
ବ୍ୟାସକୁ ସକ୍ଷ ନାହିଂ ଯାହାର ମହିମା
ଶୁକ୍ରମୁନି ସାରସ୍ୱଳ ଦାସକୁ କରିବାକ କ୍ଷେମା ।

—୦—

## ମହିଷାସୁରର ଯୁଦ୍ଧେ ଗମନ

**ଶୁଣ ହୋ** ପରୀକ୍ଷ ଶ୍ରୀ ଦୁର୍ଗାର ଚରିତ
ଯେ ମନେ ବାଞ୍ଛା ହୋଇବାକ ପ୍ରାପତ ।
ଏଥୁ ଅନନ୍ତରେ ମହିଷାସୁର ରାଏ
ଶ୍ରୀ ବ୍ରହ୍ମା ଦେବତାଙ୍କୁ ସୁମର ରଥେ ବଜେ କଏ ।
ଦୁଷ୍ଟ ସମୋଦ୍ର ପ୍ରାଏକ ଦଶଇ ଅସୁର ବଳ ଥାଠ
ଗଗନ ଅନ୍ଧାର ହେଲା ଉଲ୍କାପାତ ସମ୍ଭାଷ୍ଟ ।
ଆଗିଆଣି ଥାଠରେ କାଳ ଦମୋଚନ
ଦଶ ଶହସ୍ର ସେନାପତ ଭୁଲେ ନବ ସାଗର ସନ୍ୟ ।
ମହିଷାସୁର ଡାହାଣ ପଖାଏ ଅସୁର ସିଙ୍ଘନାଦ
ସିନ୍ଧୁ ଉଛୁଳୁଚ୍ଛୁ ଥାଠ ଚଳିବା ଶବଦ ।
ସିଙ୍ଘନାଦର ଭୁଲେ ଗଜ ତୁରଙ୍ଗ ବେନ
ଦୁଇ ଲକ୍ଷ ଯୋଦ୍ଧା ସେ ପାଞ୍ଚ ମର୍ଭୁତ ସଇନ ।
ଆହୋ ଅସୁର ବାମ ପାଶେ ଯେ ଦୁନ୍ଦୁଭି
ଆକାଶ କମ୍ପଇ ସେ ଶବଦେ କମ୍ପଇ ଭୂମି ।
ଏହାର ଭୁଲେ ଯେ ଗୃଶକୋଟି ବର
ବେନ ସାଗର ସନ୍ୟ ଯେ କୋଟିଏକ ଅସୁର ।
ସିଂଘମୁଖ ଗୋମୁଖ ଦ୍ବେନ ସେନାପତ
ପଚ୍ଛୁଆଣି ଥାଠେ ଏକାମ୍ବର ଚକ୍ରବର୍ତ୍ତୀ ।
ଏହାଙ୍କର ଭୁଲେ ବାଘ ଲକ୍ଷେ ଥାଠ
ପୃଥିବୀ କମ୍ପିଲ ଯେ ସାଜନ୍ତେଣ ଥାଠ ।
ମହିଂଷାସୁର ସଙ୍ଗେ ଏଗାର କୋଟି ପାଞ୍ଚ ମର୍ଭୁତ ଅଠଷଠି ଲକ୍ଷ ହସ୍ତୀ
ଏକାଦଶ ଦିବସ ଯୁଦ୍ଧେ ଅନ୍ତେ ଅଇଲେ ଯେତେକ ବଳ ଘେନ ।
ଅହ୍ବବ୍ରତେକ କଳାଗୃମର ଚାଳନ୍ତି ବେନ ପାଖେ
ତାହାଙ୍କର ସଙ୍ଗତେ ଗଜ ମୁକୁଟା ଲକ୍ଷେ ଲକ୍ଷେ ।

ଢନ ଅହ୍ବବ୍ରତେକ ଯେ ମୟୂର ଝାଲ ଛତା
ନବ ଲକ୍ଷ ଶୁକଳ ବର୍ଣ୍ଣ ଗୃମର କୋଟିଏ ଗଣିତା ।
ଆଳମ୍ବ ଅହ୍ବବ୍ରତେକ କଲା ପାଟ ଉପରେ କୋଟି କୋଟି
କୃଷ୍ଣ ରାଏଟ ପାଟର ମେରଆ ଛନ୍ଦୀ ବେନ କୋଟି ।
ଅନ୍ତର୍ଗତେ ହାଦେ ଲକ୍ଷେକ ଉଦ୍ଦଣ୍ଡ
ଏମାନେ ସମସ୍ତେହେଂ ଧାମନ୍ତି ଗନ୍ଧର୍ବ ବାହାନେ ପ୍ରଚଣ୍ଡ ।

ପଞ୍ଚଷଠି ସହସ୍ର ବୀର ତୂର ପଞ୍ଚଷଠି ସହସ୍ର ବୀର ଢୋଲ
ପଞ୍ଚ ସହସ ନଶାଣ ପଞ୍ଚ ସହସ୍ର ଝମକ ବାଜନ୍ତ ଏମାନେ ହୋଇ ସମ ତୁଳ
କତା ଦାଉଂଛ ବଜ୍ରଘୋଷ ସମର ମର୍ଦ୍ଦଳ
ପଞ୍ଚଷଠି ସହସ୍ର ଙ୍ଟଂଙ୍ଗାଲ ପାଞ୍ଚ ସହସ୍ର କାହ୍ନାଲ ।
ବଦନ୍ତ ଶୁକ ମୁନ ଶୁଣ ହୋ ପରୀକ୍ଷ
ଛତ୍ରୀ ହାର ମାନେ ତନ କୋଟି ଆଠ ଅଷ୍ଟବୃତ ବେନ ଲକ୍ଷ
ବାଦ୍ୟକାର ମାନେ ତନ ଲକ୍ଷ ଆଠ ଅଷ୍ଟବୃତ
ପାଞ୍ଚ ଲକ୍ଷ ଅଶ୍ୱ ଚଳି ସବୁଙ୍କର ଆଗତ ।
ଆଗିଆଣି ଥାଟେ ସେ ସେ ଭଲୁଙ୍କ ବାହାନ
କଳା ଗୃମର ଧରି ବଳ ସମସ୍ତେ ବାଘ ବାହାନ ।
କଳା ବଗଲା କଳା ପରିହରଣ କଳା ତନୁ ଲୁହା ସାଞ୍ଜୁ ଅଙ୍ଗେ
କକଡ଼ା ମାସେ ଯେହ୍ନେ ଉଠନ୍ତ ହାଦେ ମେଘେ ।
ତଥିର ଉପରେ ରତ୍ନ ମେଖଳା ପଙ୍କ୍ତେଂ
ଶାମଳ ମେଘେ ଯେହ୍ନେ ଦେଖପନ୍ତ ବଳାହକେ । ୩୫୯୭
ଅସୁର ବଳ ଉଠନ୍ତ ଏକ ମୁଖ ହୋଇ
ମେଦନୀ ଦଲ ଦଲ ହୋଉଅଛୁ ମହା ଭାର ପାଇଂ ।
ଅମ୍ବିକା କହିଲେ ଗୋ ଶୁଣ ଦେବୀ ଦୁର୍ଗେ
ମହିଂଷାସୁର ବଳେ କଲା ମହା ସାଗ୍ରାଂମେ ।
ଯେସନେକେ ଅଧିର ହୋଅଇ କ୍ଷୁଧାର୍ଥ ପ୍ରାଣୀ
ପିଗୃଶୁଣୀ ବୃନ୍ଦ ତେସନ ହୋଇଲେ ଶୁଣି ।
ଯେମନ୍ତେ ସେ ଆଗ୍ୟାଂ ଦେବୁ ମହାଦେବୀ
ବନୁ ଆଗ୍ୟାଂ ଏକେ ନୋହୁନା ପ୍ରାଭବ ।
ମହାବଳୀ ଦାନବ ବସ୍ତ୍ରରୂପୀ ପ୍ରାକର୍ମ
ବସୁଧା ଶୁଖରୁ ଗଳଇ ନି ପଣ୍ଡ ମହାଧର୍ମ ।
ଦୁର୍ଗାର ଗ୍ରୀମୁରେ ବିନୋଦିଂ କହଇ ବସନ୍ଧର
ମାଗେ ଦୁଗୁଣ ଲଗିଲା ମୋତେ ଅସୁରଙ୍କର ମହାଭାର ।
ଦଲଦଳିତ ହୋଇ ମାଗୋ କମ୍ପଇ ନବ ସୃଷ୍ଟି
ଦେଖ ମୋହୋର ରୋମେ ରୋମେ ରୁଧିର ବୃଷ୍ଟି ।
ଦୁର୍ଗା ବୋଇଲେ ଆଜକ ତୁ ସହିବୁ ବସୁନ୍ଧର
କାଲିକ ଆଉ ତୋହର ତହିଂ ନ ଥିବ କିଛୁ ଭାର ।
ଦୁର୍ଗାର ମୁଖରୁ ଏସନକ ଶୁଣି
ଶରୀର ବଥାତ ଉଟପେଖିଲାକ ଧରଣୀ ।

ପୁଣ ହୋଦେ ଦୁର୍ଗା ମୋହିନୀ ରୂପେକ କଲ
ପରମା ବଇଷ୍ଣବୀ ପଣ ଯେ ଆପଣେ ସୃଜିଲ । ୩୬୦୦ ।
ଗହ୍ ଗହ୍ କରି ଡାକିଲେ ମହାମାଏ
ଅନନ୍ତ କୋଟି ମୁଖରୁ ଅନନ୍ତ କୋଟି ଜୁପୁଜାଏ ।
ପକ୍ଷୀଷ ପୁଚ୍ଛାକଲେ ଶୁଣନ୍ତେ ମହାବ୍ରହ୍ମ
ସେମନ୍ତ ଦେବୀଙ୍କର ହୋଦେ କିସ କିସ ନାମ ।
କେବଣ ବର୍ଣ୍ଣ କାନ୍ତ କେଦଣ ରୂପ
ଶୁଣି ଆପାଦ କ୍ଷୟ ଯାଉ ଛେପେଟ ସର୍ବ ପାପ ।
ଶୁକ ମୁନି ବୋଇଲେ ହୋ ମହାରଥୀ
ସଞ୍ଚିପି ଶୁଣ ତୁ ଦେବୀଙ୍କର କଥା ।
ପ୍ରଥମେ ଜାତ ଯେ ହୋଇଲେ ନର୍ମଦା ସରସ୍ୱତୀ
ଭୂଲେ ଜାତ ହେଲେ ସାରୋଳ ଚଣ୍ଡୀ ମୁଣ୍ଡ ।
ପୁଣ ଜାତ ହେଲେ ଅମ୍ବିକା ବଉଳାଇ
ଶାନ୍ତ କାନ୍ତ ମାଧବୀ ଉଖୁଳାଇ ଧାଇ ।
ଭୁଖାଇ ରଖାଇ ଯେ ଅବଲାଶକା
ମଧୁ ମାଧବୀ ଉଜଳି ବିକଳା କଲୋକା ।
ଭ୍ରାମି ସାମି ଉତ୍ତମା ପଲାଇ
ଦାରଣାଇ ବିରଙ୍ଗମାଳୀ ପିଙ୍ଗଳାଇ ।
ସଦାଇ ବିଦାଇ କାପରାଇଂ ତନାଇ
ଧମନ୍ତ ସୁମନ୍ତ ହାଥୀ ହିଗଂଳାଇ ।
କେତାଇ ମତାଇ ଅନନ୍ତାଇ ବିଜୟ
କାଳନ୍ଦୀ ତୁଳସୀ କାନ୍ତ ଯେ ଅଭୟ । ୩୬୧୦
ଅନ୍ଧାରି ସ୍ତ୍ରାମୁକ ସାରେଆ ବିପୁଳା
ଗଙ୍ଗା ଯମୁନା ମେଖଳା ମହାଖଳା ।
ଜପ କୁପାଇ ମାନସୀ ଚନ୍ଦ୍ରରେଖା
ମରୁଆ ମାରୁଆ ଗୋପାଳୀକା ମଦାନିକା ।
ସୁମତି ନନ୍ଦ୍ରାବତୀ କୃଷ୍ଣ ବର୍ଣ୍ଣ ମିଙ୍ଗଳା
ଅରୁଖା, ସୁରଧା ମହାଜାତ ତରକୀ ଦେବୀ ଅବଲା ।
ପ୍ରିୟମତୀ କୋଳ କମଳା ଶାଏନ୍ତା ।
ଧରମାଇ ଯମାଇ ଡାକେଣୀ ଭସ୍ମାଙ୍କାକ୍ଷୀ ଚଣ୍ଡପଦା
ଗାରକ୍ଷି ସଦାରକ୍ଷି ବନ ଦେବତୀ ବିପଦା ।
ଧବଳି ମଉଳି କୁରୁଳି ପାରେଖା ।

ସୁରସିଦ୍ଧ ମସ୍ତାଜିତା ଆରେକ ଦ୍ରୁଣନ୍ଦା
ସୁବ୍ରସୁର ଉତାଉଣ୍ଡୀ ଭଣ୍ଡି ଅପୂର୍ଣ୍ଣା ।।
ହଣ୍ଡାଇ ବଂଣ୍ଡାଇ ମାହ୍ଲାନ ଧାନକଳି
ମୂକଳି ଦଣ୍ଡୀ ପ୍ରଚଣ୍ଡୀ ଚକଗ୍ରାଳି ।
କ୍ଷୀର ବିଭକ୍ଷି ବପଦା ବାକ୍ଲୁଚ୍ଛି
ସୁମତ୍ର ବାମତ୍ର ଭାନୁମତୀ ପଦ୍ମାକ୍ଷି ।।
ସୁମତ୍ର ବମତ୍ର ଧନୁମତୀ ରେବତୀ ଗିରିଜା
ସିଂଘାରି ବଂଘାରି ଭଗଂାରି ସଚଳା ତନୁଜା ।।
ଶାକେମ୍ବରୀ ବାଙ୍କେଶ୍ୱରୀ ଯଯାତି ମାଳତୀ
ବାସୀ ସୁବାସୀ ରେବତୀ ଯଶୋବନ୍ତୀ । ୩୬୨୦
ଧରମାଇ କେମାଇ ଅଗିଂରାଇ ଅମାଇ
ଆନନ୍ଦାଇ ମୂରାଇ ଚଂରାଈ ବାରାଇ ।
ବିପାକ୍ଷି ଇନ୍ଦ୍ରାକ୍ଷି ଜଳରୌଦ୍ରୀ ପାବତୀ
ଉମା ଉପମା ବାସନ୍ତୀ ମାଳାବତୀ ।
ତଂଡସୁରୀ ବୀରାସୁରୀ ଶୂନ୍ୟେସୁରୀ ଅନେକ ଦେବୀ
ଲେଖନ୍ତେ ଅନ୍ତ ନୁହଇ କେତେ ମୁ ସଞ୍ଚପି କହିବି ।।
ଶ୍ୱେତ ପୀତ କୁଙ୍କୁମ ଶ୍ୟାମଳ ଗଉରୀ ବର୍ଣ୍ଣ
ପଞ୍ଚବର୍ଣ୍ଣ ଯେଜ ସେ ଉପୁଜିଲେ ମୋହିନୀ ଦେବୀ ମାନ ।।
ଏହାଙ୍କର ନାମ ସଂକେତ ନ କଲେ ପରମ ଧର୍ମ ମୋକ୍ଷ
ଏହି ସେ ମୋହନ୍ତି ମୋହନୀ ଇଚ୍ଛାଏ ସବୁ କରନ୍ତି ଭକ୍ଷ ।।
ଏ ଦେବୀମାନଙ୍କ ନାମ ସଙ୍କେତ ନ କରନ୍ତେ
ନାଶକର ଭଯ୍ୟରୁ କିସ ଚନ୍ତା ଜନ୍ମନ୍ତେ ।
ଏତେ ଦେବୀଙ୍କର ପାଦପଦ୍ମେ ରଜ ଯେଜ
ବନ୍ଦନ୍ତି ସାରୋଳ ଦାସ ଗର୍ଭିକ ଶୂଦ୍ରମୁନି ।

—୦—

# କାଳବଳମୋଚନ ବଧ

ଶୁଣ ହେ ପରୀକ୍ଷ ରାଜା ବଦନ୍ତି ଶୁକବ୍ରହ୍ମା
ନାନା ଆପଦ ପଡ଼ିଲେ ଏହି ସେ କରନ୍ତି କ୍ଷେମା ।
ଏକ ଆରକେ ସେ ରୂପେଣ ଜଗୁଜନା
ତ୍ରୈଲୋକ୍ୟ ମୋହନୀ ସେ କାମେଣୀ କାମସେଣା ।
ଜାତ ଅନ୍ତ ମଧ୍ୟେଣ ଅବସାନେଣ ଏହି
କରନ୍ତି ଗୃହବାସ ଏ ମାନୁଷ୍ୟନ୍ତ ମୋହି । ୩୭ଶ:୦

ଋଷି ବିପ୍ର ତପୋଧନଙ୍କର ଧ୍ୟାଏ ଭଞ୍ଜନୀ
ମତ୍ତ ଗର୍ବ ପୁରୁଷଙ୍କର ଦର୍ପ ଗଞ୍ଜନୀ ।
ହସନ୍ତ ହରାନ୍ତ ହସନ୍ତ ଗାବନ୍ତ
ଇଚ୍ଛାରଙ୍ଗେଣ କଉତୁକେଣ ଥାନ୍ତ ।
ଜାତ କାଳେ ଏମାନେ ମାତା ରୂପ ହୋଅନ୍ତି
ରତିକାଳେ ରୂପ ଏଯେ ହୋଅନ୍ତ ପ୍ରିଅବନ୍ତା ।
ଅନ୍ତକାଳ ରୂପ ଏ ହୋଅନ୍ତ କାଳିକା
ଶେଷକାଳେ ହିଙ୍ଗୁଳା ବହନ ହୋନ୍ତି ସଖା ।
ଏତେକ ରୂପ ଧରି ଏ ମୋହନ୍ତ ସଂସାର
ଏହି ସେ ନାଶପାନ କରନ୍ତ ମହୀଭାର ।
ଏହାଙ୍କର ରୂପ ଗୁଣ ସେ ଦେଖିଣ ଆଦନାସି
ଦୁର୍ଗା ଆଗ୍ୟା ଦେଲେ ଦେବୀନ୍ତ ହକାରି ।
ଆଲେ ଅସୁରଙ୍କର ଭାରା ଯେ ମେଦନୀ ନ ସହଇ
ଯାଅଲେ ଦାନବ ବଳ ତୁମ୍ଭେ ମୋହି ଯାଇ ।
ରାତ୍ରେଣ ସବୁଙ୍କର ରୂପ ଖାଅ କାଟି
ଏକାମାତ୍ର ଦାନବ ମହିଷାସୁରକୁ ଛାଡ଼ି
ଆହେ ପରୀକ୍ଷ ଦୁର୍ଗାର ଏସନ ଆଗ୍ୟା ପାଇଂ
ସର୍ବ ଦେବୀ ଅବତାର ହେଲେ ସେ ମାତଙ୍ଗୀ ପରମ ବୈଷ୍ଣବୀର ଛନ୍ଦି ।

ଆହେ ଦେବୀମାନେ ସୁନ୍ଦର ଏକୁ ଏକ ଯୁବା
ଦାନବ ବଳ ସଇନ୍ୟର ଆଗେ ହେଲେ ଉଭା । ୧୬୦
ଏକୁଏକ ବଳୀ ସେ ଦାନବ ମହାବଳୀ
ହୁଂକାର ଶବଦେ ସେ କରନ୍ତି କଳକଳି ।
ଗିରିବର ସମାନେ୍ୟ ରହିଥିଲେ କଉଣୋପେ
ଆକାଶ ଭୁବନ କମ୍ପୁଅଛୁ ଦାନବଙ୍କର କୋପେ ।
ଯାଢକାରେ ପଡ଼ିଲ ଯେହ୍ନେ ଖଗବର ପକ୍ଷୀ
ଅସୁରଙ୍କର ମତ୍ତଗର୍ବ ଭଗ୍ନହେଲା କାମାକ୍ଷି ଦେବୀଙ୍କି ଦେଖି ।
ଆହେ ଅସ୍ତ୍ର ଶସ୍ତ୍ର ପକାଇଂ ଛାଡ଼ିଲେ ରଥ ଯାନ
ହୋଇଲେ କାମ ବଶ୍ୟ ପୀଡ଼ିଲ ମଦନ ।
କେ ମଦନେ ଭଳଇ କେ ମଦନ ରସେ ବାଇ
କେ ବୋଲଇ ମାତା ଗୋ କରସି ଦାହି ଦାହି ।
ବୁଡ଼ିଲେ କାମ ଜଳେ ହୋଇଲେ ମତ୍ତ ଭୋଳ
ଯେ ଯାହାର ମନ ଇଚ୍ଛାଏ କରି ଲେଉଟନ୍ତି କୋଳ ।

ପ୍ରତଗ୍ୟାଂ କର ସେ ନଗରେ ହସ୍ତ ଦେଇଂ
ବାହ୍ୟାସ୍ୟଷ୍ଟ ଦେଇଂ ସେ ବକ୍ଷସ୍ଥଳେ ଛାଡ଼ି ।
କେ ବୋଲଇ ପ୍ରଥମେ ଝାସ କଲା ପୂର୍ବେ
ଏ ବାରଙ୍ଗନା ସ୍ତ୍ରିଙ୍କ ଭୋଗ କରିବ ଏବେ ।
ଅଥବା ଭୃତ୍ୟପଣେ ତୋଷିଲକ କାଶୀ
ସେହୁ ସେ ଏମାନଙ୍କୁ ପାଶବେ ବଳସି ।
ଗ୍ରଣ୍ଡିବ ଗୃହବାସ ଛଡ଼ି ରଙ୍ଗ ଭୋଗ
ପ୍ରାଣ ହିଂ ପଛେଯାଉ ଏମାନଙ୍କ ସଙ୍ଗ । ୩୬୫୦ ।
ସ୍ତ୍ରିଗ୍ଣ ବୃନ୍ଦ ଦେଖି ସେ ମଏଷାଂସୁର ବୋଇଲା
ଏଣେ ସେ ଅସୁର ବଳ ମୋହୋର ନାଶଗଲା ।
ଏହାଙ୍କର ରୂପ ଦେଖି ସେ ନ ପାରଲେ ଉଭୃତ
ଅନ୍ୟେ ଅନ୍ୟେ ଆପଣେ ସେ ହୋଅନ୍ତି ମରାମର ।
ଏଣେ ସେ ନାଶ ଗଲେ ସମସ୍ତ ଦନୁଜ
ମୁହିଂ ବୋଇଲି ସ୍ତ୍ରିଗ୍ଣ ମାନଙ୍କେ କସ ବଳ ଖାଁଟି ।
ବନ୍ଧ ନୟନେ ଗୃହିଲେ ପର୍ବତ ଉଠଇ
ଅବଲୋକନେ ଗୃହିଂଲେ ପାଷାଣ ଫୁଟଇ ।
ଆପଣେ ମଏଂଷାସୁର ବୋଲାକ ହାଦେ ଡାକେ
ସ୍ତ୍ରିଗ୍ଣ ବୃନ୍ଦମାନନ୍ତରେ ଭୋଗ କର ସୁଖେଂ ।
ରାଜାର ବଚନେ ସେ ଦାନବେ ଉପନ୍ତି
ଆନନ୍ଦେ ଧରନ୍ତି ଯାଇଂ କାମେମୀଙ୍କର ହସ୍ତ ।
ମାନଙ୍କ ରୂପ ସେ ହୋଇଛନ୍ତି ରୁନ୍ଦ
ଇଛାଏଁ ଗଲେ ସେ କାମେମୀ ମାନନ୍ତ ଭେଦ ।
ବହୁଇ ସରସ ବସନ୍ତ ଉଦ୍ଧାଲେକ ବନେ
କନ୍ୟାନ୍ତ ଭେଦ ପଶିଲେ ସମସ୍ତ ସ୍ୱର ମାନେ ।
ବଂନେ କଉରୁକେ ସେ ରାଜ ହିଂ ହୋଇଲା
ମନ୍ଦିର ରସରଙ୍ଗେ ମତାଇ ଲାଗିଲା ।
ମାତା ଗୋ ସିଦ୍ଧୋ ଉପ ସିଦ୍ଧୋ କାଳ ବମୋଚନ
କାଳ ବିକାଳ ତୁହେଂ ଧୂମଲୋଚନ । ୩୬୬୦ ।
ଆବର ରହିଲେ ବାଦ୍ୟକାରମାନ
ଏତେକ ମାନ ଅଛନ୍ତି ମାଏଂଷାସୁର ସନ୍ନଧାନ ।
ପୁଣ ସେ ଆନନ୍ଦେ କହଇ ବସୁମତୀ
ଛତା ହାରମାନେ ରହିଅଛନ୍ତି ମଏଂଷାସୁର କନ୍ତ ।

ବସୁଧ୍ୟା ବୋଇଲେ ମାତ ମହିଷା ବଣ୍ୟେ ଜନ୍ମ ତାହାଙ୍କରେ ରୂପ ଲକ୍ଷି
ତୋହୋର ଆଗ୍ୟାଂ ମାନଙ୍କେ ଅଛନ୍ତି ତାହା ରଖି ।
ଏଥୁ ଅନନ୍ତରେ ଯେ ଯାହାଲକ ଘାତ
ମହିଷାସୁର ଗ୍ରୁମୁକୁ ସେ ନଇଲେ ସେନାପତ ॥
ବୋଇଲା ଦାନବ ଦେଖିବା ଦଳବଳ
କେମନ୍ତ ରଙ୍ଗ ଉପୁଜୁଅଛୁ କୋଟୋହୋଳ ।
ଶାର୍ଦ୍ଦେଳକ ଆରୋହ୍ଣ ଶ୍ରୀକରେ ରତ୍ନ ଯାଠି
ବିଜଏ ମହିଷାସୁର ତୁଳେ ସୈନ୍ୟ ଲକ୍ଷେ କୋଟି ।
ଆହୋ ଲକ୍ଷ୍ମୀଭଦ୍ରା ନଦୀ ଦକ୍ଷିଣ ଭାଗ ଆଡ଼େ
ସୈନ୍ୟ ଦେଖିଲା ଯାଇଂ ମନୋହର ବନ କଣ୍ଡୁଡ଼େ ।
ରକ୍ତ ମାଂସ କର୍ଦ୍ଦମ ହୋଇଂ ବଳ ଅଛୁ
ଦେଖିଣ ଅସୁର ସେ ନ ଫୁରଇ କଚ୍ଛୁ ।
ଏସନେକ ଛନ୍ଦ ନୋହିଲା ସେ କାହାର ହିଂ ହେତୁ
ଏବେ ସେ ଜାଣି ପାରିଲି କଥା ତତ୍ତ୍ୱ ହେତୁ ।
ଯେସନେକେ ମାନୁଷେ ଚରଇ ନିଶାଚର । ୧
ସେହିମତ ହୋଇ ପଡ଼ିଅଛନ୍ତି ଅସୁର । ୩୬୭୦ ।
ଅସୁରଙ୍କ ବଧ ଦେଖିଣ ମହିଷାସୁର ରାଏ
ଶାର୍ଦ୍ଦୋଳ ପିଠିରୁ ପଡ଼ିଲା ସେ କାଳ ଅନୁପ ପ୍ରାଏ ।
ଅସୁର ବଳ ମାନନ୍ତ ସେ କୋଳ କରଣ ଧରାଇ
କାହାକୁ ବନ୍ଧୁଷ୍ଟଲେ ଘକାଇ ଉପରେ ଯଡ଼ଇ ।
ନିଳାଜ ଆତ୍ମା କର୍ମା ରହିଅଛୁ ମୁକୁଂ
ଭୂମିରେ କର ଦେଇ ସନ୍ତାପ କର୍ମକୁ ।
ଏସନ ହୋଇ ପ୍ରାଣୀକି ପଡ଼ଇ ପ୍ରମାଦ
ନାହିଂ ତ ଦେଖିଲ ମୋର ଏସନକ କୃଷ୍ଟ ଛନ୍ଦ ।
ଧିକ ଧିକ ହୋଉ ଯେ ମୋହୋର କପାଳ
ଛୁଡ଼ିବ ନିଜ ପ୍ରାଣେ ପଶିବ ଅନଳ ।
ମହାଂର ବିକଳ ଦେଖି କାଳ ବିମୋଚନ
କୋପେଣ ଧାଇଂଲେ ତପ ଦେବୀଙ୍କ ସନ୍ନିଧ୍ୟାନ ।
କାଳ ବିମୋଚନର ମହା ବହୁରୂପ ଦେଖି
ସମରେ ଆଗିଆଣି ହେଲେ ସେ ଶରଦ ଚନ୍ଦ୍ର ମୁଖୀ ।

---

୧ ଯେସନେ ମୀନ ଚରଇ ନିଷାଦ ।

ଯେବଣ ଦେବୀମାନେ ସେ ଜଗତ ମୋହନୀ
ସେ କାଳ ବିମୋଚନ ଆଗେ ମିଳଲେ କରେ ପଦ୍ମ ଘେନି ।
ଦେଖିଣ ବିସ୍ମରଇ ସେ କାଳ ବିମୋଚନ
ଏ ସନେକ କୁଟେ ଖାଇଲେ ସେ ଦାନେବ ବୀରମାନ ।
ତାହାଙ୍କୁ ଦେଖି ସେ ଅସୁର ରଥ କଲା ତେଜ୍ୟା
ନଶସ୍ତ୍ର ହୋଇ ଛେ ଧାଇଲା ଦାନୁଜା । ୩୬୮୦ ।
ସମରେ ସମ୍ମୁଖେ ସେ ନିକଟାସୁର ନାଥ
କୋଳ କରି ଧଇଲା ଦେବୀ ପଞ୍ଚଷଠି ମୂର୍ତ୍ତି ।
କୋପେଣ କାଳାନଳ ସେ ଦକ୍ଷିଣକୁ ମୁଣ୍ଡ କରି
ଫିଙ୍ଗି ପକାଇଲା ଦେବୀମାନଙ୍କ ଚରଣ ଧରି ।
ଆକାଶ ମାର୍ଗେ ସେ ଅସୁରଙ୍କ ପରିତାପେ
ନିର୍ଗତ ପ୍ରାଏକ ହୋଇ ପଡ଼ିଲେ ରକତ ଦୀପେ ।
ଅନନ୍ତା ବିଜୟା ତାରଣୀ କାମାକ୍ଷି
ବିରଳି କରଳି ମାତାଙ୍ଗୀ ତାରକ୍ଷି ।
ଶାମା ସୁବାମା କଳକାଲ ବାସୀ
ବୃଷାଳୀ ଅତାଗ୍ନି ମାରୁତ ସୁକେଶୀ ।
ସୀତା ଶାଏନ୍ତା ମାଳତୀ ମୁକ୍ତ ବେଣୀ
ଚନ୍ଦ୍ରା ଚନ୍ଦ୍ରାବତୀ ନଇରୃତ ପ୍ରସନ୍ନ ।
ମତ ମାତାଙ୍ଗି ଶରଧା ବିମଳାଇ
କୃତାଙ୍ଗି ଷଷ୍ଟାଗ୍ନି ତାରକ୍ଷି ତନୁଆଇଂ ।
ତନୁ ସ୍ତନୁ ମେଧା ସୁମେଧା ଶରଧା
ହୀରା ପ୍ରରା ରାଧା ସୁରାଧା
ଲଳିତା ସୁଲତା ସୁପ୍ରରେଖା
ଶରଣ ଶଶୀମୁଖି ବାଶେଳୀ ଚନ୍ଦ୍ରରେଖା ।
ଇନ୍ଦ୍ରାଇ ଚନ୍ଦ୍ରାଇ ବିନ୍ଦାଇ ଶ୍ୱେଟାଇ
ସନ୍ତୁଆ ପାରୁଆ ଷଡ଼ଙ୍ଗି ମୋଟାଇ । ୩୬୯୦ ।
ଉଚ୍ଛୁର ଛଳନ୍ଦୁରୁଣୀ ଆବର ବିକଟାଳି
ଭ୍ରୂଟାଇ ଅରୂଟାଇ କାପାଳୀ କଟାଳୀ ।
ଶୁଣ ହୋ ପକ୍ଷୀକ୍ଷ କାଳବିମୋଚନର ପ୍ରଥମ ଯୁଦ୍ଧ୍ୟେ
ଏତେକ ଦେବୀ ପଡ଼ିଲେ ରକତ ଦୀପର ମଧ୍ୟେ ।
ପୁଣ ସେ ଦେବୀମାନଙ୍କୁ ଧଇଲା ଅତିବେଗି
ଦକ୍ଷିଣ ଦିଗକୁ ସେ ପକାଇଲା ଫିଙ୍ଗି ।

ଗଗନେ ଉଡ଼ିଲେ ସେ କାଳାନ୍ଧମୋଚନର କୋପେ
ସେ ମୋହନୀ ଦେବୀମାନେ ପଡ଼ିଲେ କୁଶଦ୍ୱୀପେ
ଶଙ୍ଖିନୀ ସଭିନୀ ଧିତକାତକ ପରବାଠୀ
କାମୀ ଭ୍ରମୀ ବିଷଆଡ଼ିକା ଉତକାଟି ।
ଅସିତା ଦମିତା ଆବର କାଳିକା
କାଳନୀ ସାତମୁଗ୍ଧ କାଂପି କାମ୍ନିକା ।
ଅଗ୍ନାବଳୀ ରେଖି ସୁରେଖି ନମାମ୍ନି ନଟକୁଣ୍ଠ
ଚଣ୍ଡୀ ଘୃମଣ୍ଡି ବଦଣିକା ସବୁ ନଷ୍ଟ ।
ମାଧବୀ ସାଧବୀ ତାଗ୍ର ସୂତା ଦ୍ୱାରା
ରେଖା ଦେଖି ଅମୁଅ ମୂଳା ବିକରା ।
ଗବନ ଗବନା ଦୃଷ୍ଟାଇ ମାରତଣ୍ଡ
ବିରନ୍ଧ ବିଧାତା କାଳଦଣ୍ଡ ପ୍ରଚଣ୍ଡ ।
ତାନୁକ କାନୁକ ପ୍ରିୟୁ କାଳନ୍ଦୀ
ଧାମା ସଙ୍କରମା ଧମାଇ କଷ୍ଟ ମୁକୁନ୍ଦୀ । ୩୭୦୦ ।
ଘୃମର ମଇସୀ ବିଷ୍ଟୁ ଭଦ୍ରା ଦମାଇସୀତା
ଭଦ୍ରାତା ଆଡ଼ିର୍ଣ୍ଣି ବିମଳାଇ ମାରଜ୍ଞିତା ।
ଆବର ଜାଗ୍ରନ୍ନ ଜାଇସୀ କାନ୍ତାମା ଶୁକ ମୁନ୍ଦ
ଶୁକଦ୍ୱୀପେ ପଡ଼ିଲେ ସେ ସ୍ୱହସ୍ରେକ କାନ୍ତାମା ।
ପୁଣି ଦବଣ୍ଡି ଧରି ଯେ ଫିଙ୍ଗିଦେଲା ଅନ୍ତରୀକ୍ଷେ
ଗ୍ରିଞ୍ଚଦ୍ୱୀପେ ପଡ଼ିଲେ ଯାଇ ଲକ୍ଷେ କୋଣେ ।
ଧାଇଂ ସେ ଦେବୀମାନଙ୍କୁ ଧରଇ ଅନ୍ତରୀକ୍ଷେ
ଅବିଶ୍ରାମ ଚକ୍ର ଜାଣି ବୁଲଇଲା ତମେ ।
ଢଳାଇଂଣ ଫିଙ୍ଗିଦେଲା ମହା କୋପେ
ନବ ସହସ୍ର ଦେବୀ ପଡ଼ିଲେ କରଞ୍ଚ ଦ୍ୱୀପେ ।
ପୁଣ ବୁଲାଇଂଣ ଫିଙ୍ଗିଦେଲା ରାକ୍ଷସେ
ନବ ସହସ୍ର ଦେବୀ ପଡ଼ିଲେ ଯାଇ ବିଳଙ୍କ ଦେଶେ ।
ପୁଣ ଦେବୀନ୍ତ ଯେ ଧଇଲା ଦବଣ୍ଡି
ଉତ୍ତରକୁ ଫିଙ୍ଗି ଦେଲା ନବ ସହସ୍ର ଚଣ୍ଡୀ ।
ଲେକା ଅମ୍ବିକା ପୋଟଲିକା ସୁଣୀ
ଅଭଏ ବିରୂପା ଆବର ହସ୍ତୀବାସେନୀ ।
ନୀଳା ମଙ୍ଗମିଞ୍ଚା ସରୂପା ବୃଷଳାଇ
କାମାଶ କାମାକ୍ଷି ତାରାକ୍ଷି ବଉଳାଇ ।

ମେଖଳା ଉପଳା କୋକଳା ବକଳା
ଷଠୀ ଦୁଉଗ୍ର ଲେଉଟାଇ କମଳା ।
ଅଢାର ସୁଖାର ଚକଡାଇ ଅଉରାଇ
ନାଗେନ ନାଗେଶ୍ୱରୀ ତମ୍ଭାଇ ରୁପାଇ ।
ଘନନ୍ତା ବନନ୍ତା କେନ୍ଦୁକାଇ ରଙ୍ଗାଇ
ପଞ୍ଚାସିନୀ ସୀତାସିନୀ କଙ୍କାଇ ବେଡ଼ାଇ ।
ପଣ୍ଡାଇ ଗଣ୍ଡାଇ ମଠ ପ୍ରସନ ହିଙ୍ଗୁଳା
କାଶୀ ଧବଳାଙ୍ଗୀ ମାରୁଚୀ ପିଙ୍ଗଳା ।
ଜାନୁକା ତାନୁକା ଝୁମାମା କାଠକା
ଦ୍ଭଶରୂପା ଅରୂପା ସଭଜନକା କଠକା ପ୍ରାକୃତ ଲଗିକା
ଲୋଟାସନୀ ଅବାସନୀ ଓ କେସ୍ତୁରୀ ଖଲୁଂକା, ଖାଙ୍ଗେଂଶୀ
କାଙ୍କଣୀ ଶତାସନୀ ପ୍ରିୟା ନର୍ମଦା ପିତାସନୀ ।
ମେଖଳା ମହାଖଳା ଜନତା ଖେଚରେଶ୍ୱରୀ
ସୁମତ ଚନ୍ଦ୍ରାବତୀ ଘୋରରୂପା ଭୂତରାଇ ।
ଦକ୍ଷିଣା ମନ୍ତ୍ରରୂପା ସତୀ ଶାବେନ୍ଦ୍ରୀ
ରଥ ଦମନ୍ତୀ ଜଗତୀ ସଚଳା ସମ୍ପାଦ ଜନୁମତୀ ।
ଜତା ଜରତା ଜିପା ବସ୍ତ୍ରଳା
ସଦା ଆଲଲୀ ହରିଆ କମଳା ।
ଆହୋ ପରୀକ୍ଷ କାଳ ବିମୋଚନର ଘାଏ ପଡ଼ିଲେ ଗଗନ ମେଖଳା ଦେବୀ
ଏତେ ଦେବୀ ପଡ଼ିଲେ ଜମ୍ବୋଦ୍ୱୀପର ପୃଥିବୀ ।
ଏ ମୋହନୀ ଦେବୀମାନେ ମୋହୁଥିଲେ କପଟେ
ଅସୁର ବଳ ଭେଜନ ଯେ କରୁଥିଲେ କୁଟେ ।
ଏମାନେ ହିଁ ଦେ ଯେ ମୋହୁଥିଲେ ପୃଥ୍ୱି
କୁତ୍ସିତ କର୍ମ ଦେଖାଇ ସେ ଉପଦର୍ପ କରନ୍ତି ।
ରୂପେଣ ମୋହୋନୀ ଯେ ଅଟନ୍ତି ନବଯୁବା
ହୁଂକାର ଖାଆନ୍ତି କାହାକୁ ନୋହନ୍ତି ଭବା ।
ମଏଷାଂସୁର ଆଠ ଯାକ କଲେ ସେହୁ ଜ୍ଞାନ
ଏହାଙ୍କର ପ୍ରସାଦେ ଅସୁର ବଳ ହୋଇଲେ ଚୂର୍ଣ୍ଣ ।
ସକଳ ମୋହିଲେ ଏ ଏକା ଅବତାରେ
କାଳ ବିମୋଚନକୁ ହାରିଲେ ସମରେ ।
ସାତ ଦ୍ୱୀପକୁ ଚଣ୍ଡୀମାନଙ୍କୁ ଦେଲ ଫିଙ୍ଗି
ଅନେକ ଦୁର୍ଗମେ ଯାଇ ପଡ଼ିଲେ ସବୁ ଦେବୀ ।

ଝର୍ମାଢ଼ ପ୍ରାଏକ ଯେ ପଡ଼ିଲେ ଦୂରେ ଦୂରେ
ଉଠି ନ ପାରିଲେ ସେ ପଡ଼ିଲେ ସେହିଠାରେ ।
ମୁହଁ ବନ୍ଦ କାହାର ଅଧଖଣ୍ଡ କାଏ
କାହାର ହସ୍ତ କମ୍ପଇ କାହାର ଭଗ୍ନ ବେନି ପାଏ ॥
ପେଟ କୋଡ଼ କାହାର ପିଠି ହୋଇଲା କୁଜା
କେହୁ ଅଷ୍ଟ ବଙ୍କ ହୋଇଲେ ଅପୂଜା ।
ମୁଂହ ଭଗ୍ନ କାହାର ହେଲା ଆଖି କାଣ
ଯେ ଯହିଁ ପଡ଼ିଲେ ରହିଲେ ସେ ଠାବେଣ ॥
କଳୁଶର ପ୍ରାଏ ପଡ଼ିଲେ ବନିତା
କାହାର ଅର୍ଦ୍ଧଅଙ୍ଗ କାହାର ଶ୍ୟାମର ଯାକ ପୋଡ଼ା । ୩୭୬୦ ॥
ଶୁଣ ହୋ ପରୀକ୍ଷ ରଜା ବଦନ୍ତି ଶୁକବ୍ରହ୍ମା
କାଳ ବିମୋଚନର ହାଦେ ଏସନେକ ମହିମା ।
ମଏଷାଂସୁର ଗ୍ରାମୁରେ ଜଣାଇଲା କାଳାଞ୍ଜନ
ଅସୁର କୁଳ ମଧ୍ୟେଂ ତୋର ଧନ୍ୟ କାଳବିମୋଚନ ॥
ଯୁଝ ଯେ ଗୋଡ଼ାଇଲା ସହସ୍ରେକ ଦେଖା
ଆକାଶ ମାର୍ଗକୁ ସେ ଉଠିଲା ପରଭବ ।
ଷଷ୍ଠ ସମବର୍ଷ୍ଟ୍ରେ ସେ ପଡ଼ିଲେ ଘୋର ବନେ
ବନ ଦେବତା ହୋଇଲେ ସମସ୍ତ ଦେବୀମାନେ ।
କାମାକ୍ଷି ରୂପ ଧରି ସେ ଗହନ ବନେ ଥାନ୍ତି
ପ୍ରୀତି ବଢ଼ାଇ ସେ ମାନୁଷ୍ୟ ଭକ୍ଷନ୍ତି ।
ଆବର ଅବଶେଷ ଯେତେକ ଦେବୀ ଥିଲା
କାଳ ବିମୋଚନ ଦୈତ୍ୟ ସବୁ ହିଂ ମାଇଲା ।
ସମୁଦ୍ରେ ପଡ଼ିଲେ ସେଂ ତିନି ସହସ୍ର ଦେବତା
ଏମାନେ ସମସ୍ତେ ହେଂ ହେଲେ ଜଳଦେବତା ॥
ମଳୟ ବସନ୍ତ ଚିତ୍ରେଖା ଚଳଲୋଚନା
ଦୂମତା ମଲ୍ଲିକା ଭଦ୍ରବର୍ଷ ମଦନା ।
ଶୋକୁଲା ପାଲାଗ୍ନି ଅଦ୍ଭୁତା ସଙ୍ଘିକା
ଶିବ ଭୈରବ ସେ ବରେ ହୁଅନ୍ତି ବରହ୍ନିକା ।
ପଦ୍ମାର ମହାଗ୍ନି ସିଦ୍ଧ ଯେ ବାସେନୀ
ସାତମା ମାରଣା ରସିତା ସତାଇନ । ୩୭୪୦ ॥
ହିଜଟା ହିକୁଣ୍ଠା ନାଗସ୍ତି ବଉଳ ଧଳା
ଛେଜ୍ୟା ସନ୍ତାନୀ ଯେ କର୍କଶ ପିଙ୍ଗଳା ॥

ଏମାନଙ୍କ ମୂଳେ ଶତେ ଶତେ ଦେବତୀ
ଏତେକ ଦେଖି ସେ ହୋଇଲେ ଜଳ ଦେବତା ।
ଆହୋ ପରୀକ୍ଷ ବହୁଡ଼ଇ ଦାନବ ରଣକ୍ଷେତ୍ର ଭଗେ
ଖରବର ପ୍ରତାପ୍ୟାଂ ବହଇ ଯାଇଂ ମହେଷାସୁରର ଆଗେ ॥
ଶତେ କୋଟି ସୁବନ୍ୟ ନେଇ ଜଉକ୍ଷଳ ମାଥେ
ଅନେକ ରତ୍ନ ଦେଇ ସେ କରଇ ପୁରୁଷାର୍ଥେ ।
ତୋହୋରେ ସେ ମୋତେ ମୁକତ ହୋଇଲି ଦଶଦଶ.
ପ୍ରାଣର ଠାକୁର ତୁ ବୋଲିବା ତୋତେ କାଯ ।
ଛନ୍ଦି ଖୀର ଯୋଦ୍ଧୋଡ଼ ତୁ ଛନ୍ଦି ବୀର ବାହୁ
ତୁ ସେ ସିଂଘଜା ଉଧର କୁଳ ରାହୁ ।
ଅଗ୍ୟାଂନ ମଧ୍ୟ ପଶେ ମୁ ସକଳ ନାଶକଲି
ପ୍ରଥମ ଯୁଦ୍ଧ କାଯାଂ ତୋତେ ମୁକୁଟ ନ ବାନ୍ଧିଲି ।
ତୁ ସେ ଦାନବ ବଂଶକୁ ପରମ ମହାଯୋଧ
ସଖାନ୍ତ ମରଇଲି କଲି ମନ୍ଦବୁଧି ।
ହୃଦ୍‌ଇଶ ବୁଦ୍ଧି ଶିଖିଲି କାହିଁ ତ କଲି ନାଶ
ତୋହୋର ବାହୁବଳକୁ ଏବେ କରିଥିବ ଆଶ ।
ଏ ପଞ୍ଚ ନଗ୍ରକୁ ଦୁହିଁ ସେ ଦାନବ
ଏକା ଜଣକେ ମାଇଲୁ ପିଶୁଣି ଦୁଷ୍ଟ ବୃନ୍ଦ । ୩୭୫୦ ॥

ଅସୁର ସାଗରକୁ ଅଟ୍ଟୁ ତୁହି ସେ ରଣ ରଙ୍କା
ଏତେ ବଡ଼ ବଂଶକୁ ଉଧାରିଲୁ ତୁ ଏକା ।
କାଯ ଅବା ପୁରୁଷାର୍ଥ କରିବଇଂ ତୋତେ
ସର୍ବଦା ଅନୁଗ୍ରହ କରିଥିବୁ ମୋତେ ।
ପାତାଳ ଆକାଶ ଯେ ମର୍ତ୍ତ୍ୟେ ବେନ ସ୍ୱର୍ଗ
ଦୁଇ ବାହାକୁ ଛତେ ମୁ ଦେଲି ରାଜ୍ୟ ଭୋଗ୍ୟ ।
ଅଢଥ ପ୍ରାର୍ଥନା ମାଗଇ ତୋତେ ବାବୁ
ସେ ମୋତି ନାଗେଶ୍ୱରୀଙ୍କ ଆଣି ମୋତେ ଦେବୁ ।
ରାଜାର ବନସ୍ତ ଦେଖି ସେ ତୋଷ ହୋଏ ମନ
କରପଦ୍ମ ଯୋଡ଼ି ବୋଲଇ କାଳବିମୋଚନ ।
ନିଶ୍ଚିନ୍ତେଣ ଥାଅ ତୁ ଯୁଗେ ଯୁଗେ କରଣ ରାଜ୍ୟ
ତୈଲୋକ୍ୟଶ୍ୱର ତୁ ହୁଅ ଅହସନ୍ଧି ।
ଯଦ୍ୟପି ସଂଗ୍ରାମେ ମୁ ନ ପାରଇଂ ଦେବୀ ଦୃଷ୍ଟେ
ବାହୁଡ଼ି ନ ଆସିବ ଜୀବନ୍ତେ ତୋର ଆଗେ ।

ବଦନ୍ତି ଶୁକ ମୁନି ଉପାଏନ ଶୁଣ ହୋ ପରୀକ୍ଷ ରାଜା
ଦୁରାନ୍ତେକ ପ୍ରତଗ୍ୟାଂ କର ସେ ଦନୁଜା ।
ଆଠ ସନ୍ୟ ଚଜ ରଥ ନାହିଁ ନା ସଙ୍ଗରେ
ଲୁହାର ବେଙ୍କ ଗଦା ଧରି ସେ ଧାମନ୍ତଂ ଏକ ସରେ ।
ରହିଛି ଶିଖରେ ବିଜଏ ଦେବୀ ଦୁର୍ଗେ
ନବକୋଟି କାନ୍ତାଏମା ଅଛନ୍ତି ଶୂନ୍ୟ ସ୍ୱର୍ଗେ । ୩୬୬ ।
କେବଣ ହିଂ ଦେଖା ନାହିଂ ନା ସଙ୍ଗରେ
କାଳବିମୋଚନ ଯାଇଂ ପ୍ରବେଶ ସମ୍ମୁରେ ।
ମନ୍ଦର ତୁଲେ ବିକାଶଇ ତାହାର କାଏ
ଦୁର୍ଗାଙ୍କୁ ଚୋଟିଲ ସେ ରାହୁର ତେଜ ପ୍ରାଏ ।
ଗଦା କରେ ବୁଲାଇ ସେ ଅଧରେ ଦନ୍ତ ଚପି
କୋପେ ପ୍ରତଗ୍ୟାଂ ସେ କରଇ ଅତି କୋପି ।
କାହିଂଣ ଆସିଲୁ ଲେ ଧ୍ୱୋଇଲ ଅଦ୍ଭୁତେ
ମରନ୍ତେକୁ ଆସେ କରୁ ଅନମିତେ ।
ତିନି ଭୁବନରେ ଏ ମହାପ୍ରଭୁ ରାଜା
ଅନେକ ଭୋଗ ଭୁଞ୍ଜନ୍ତି ତୁ ହୁଅନ୍ତି ଯେବେ ଭାରଯା ।
କାଳବିମୋଚନ ବୋଇଲା ଅଛୁକ ତୋର ଇଛା
ନେଇଂ ସମର୍ପିବି ସମଏ ହୋଅ ରକ୍ଷା ।
କାଳବିମୋଚନ ତାହିଂ ଯେ ନିଷ୍ଠୁର ବାଣୀ ଶୁଣି
ଦ୍ରହସିତ ହୋଇ ବୋଇଲେ ଦୁର୍ଗତିତାରେଣୀ ।
ତୁ ଯେ ରାଜାର ହୋ ମୃତ୍ୟୁବନ୍ତ ନୋହୁ
ତେଣୁ ସେ ମତେ କଣ୍ଟାଳ କରି କଥା କହୁ ।
ଜାଣିମା ହୋ ରାଜା ଯେବେ ତୋହର ବିଶ୍ୱାସ
ମଏଷାସୁରକୁ ଯେନ ମୋହୋର ସମ୍ମୁଖକୁ ଆସ ।
କାଳବିମୋଚନ ବୋଇଲ ତୁ ସ୍ତ୍ରୀ ଜନ୍ମ ନୋହୁ
ମଏଷାସୁର ଦାନେବଙ୍କୁ ମହାଦର୍ପ କହୁ । ୩୬୭
ଯାହାର ସ୍ୱଲାନ୍ତେ କମ୍ପଇ ଇନ୍ଦ୍ର ରୁଦ୍ର ବ୍ରହ୍ମା ହରି
ତୋହର ତହିଂକିଂ କେମନ୍ତେ ଆସିବ ବିଜେ କରି ।
ଅଥବା ଭଲେ ଯେବେ ନ ଯିବୁରେ ବାଳୀ
ଏହୁକ୍ଷଣି ହୋଇବୁ ତୁ ପ୍ରପଞ୍ଚ ଯେ ପଞ୍ଚାଳୀ ।
ତାହା ଶୁଣି କୋପ ଯେ ଦୁର୍ଗତିତାରେଣୀ
ଆଲ ଉଗ୍ରତାର ବାଶେଲୀ ନା...

ଅସୁରଙ୍କ ଦର୍ପ ଧ୍ୱଂସିବାକୁ ରହିଂଥିଲେ ଅନ୍ତରୀକ୍ଷେ
ଶୂନ୍ୟରୁ ଖସି ପଡିଲେ ଦେବୀ ଲକ୍ଷେ ।
ପାତାଳବାସେନୀ ଆକାଶେଣ ଶିର
ବଜ୍ରଧର କୋଦଣ୍ଡ ଗାଣ୍ଡିମ ମୁଦ୍ଗର କର ।
ହାଣ ହାଣ ବୋଲି ସେ ଶୁଭିଲକ ବାଣୀ
ମୁଦ୍ଗର ନେଇ କାଳବଟ୍ମୋଚନକୁଂ ମାଇଲେ ନାରାଏଣୀ ।
ତ୍ରିଶୂଳ ନେଇଂ ସେ ପହୁଡ଼ିଲେ ଭଇରେବୀ
ବାଶେଳୀ ନେଇଁ କର୍ତ୍ତିକଟାରୀ ପ୍ରାଭବ ।
ନାଗଫାଶ ବନ୍ଧନ ଯେ ବାନ୍ଧିଲେ ତ୍ରିପୁରା
ବଜ୍ର ଶକତ ଘେନ ଯେ ପିଟିଲେ ଉଗ୍ରତାରା ।
ବ୍ରହ୍ମଶର ଘେନ ସେ ମାଇଲେ ନାରାଏଣୀ
ତ୍ରିଶୂଳ ଶକତ ଘେନ ଭୁଷିଲେ ଇନ୍ଦ୍ରାଏଣୀ ।
ସୂର୍ଯ୍ୟ ବଜ୍ରଗଦା ନେଇଁ ମାଇଲେ ଭ୍ରମଣ୍ଡା
ମାରକମା ଅ.କ୍ଷେସି ନେଇ ମାଇଲେକ ଖଣ୍ଡା ।
ଶୁଣ ହୋ ପରୀକ୍ଷ ବଦନ୍ତି ଶୁକବ୍ରହ୍ମା
ଦକ୍ଷିଣ ଭୁଜ ନେଇଂ ଡାର ହାଥିଲେ ମାରକମା ।
କୋଠ ରେକ ଘେନ ସେ ମାଇଲା କେଠାରୀ
ବାମ ଭୁଜେ ନେଇଂ ମାଇଲା ଦଇତାର ।
ପୁଣ ବାଶେଳୀ ନେଇଂ ମାଇଲା ଅର୍ଧଚନ୍ଦ୍ର ଖଂଡ
କାଳବମୋଚନର ଛେଦ୍ଧି ପକାଇଲା ମୁଂଡ଼ ।
ପିଗ୍ରଶୁଣୀମାନେ କଲେ ଆସି କେଳି
ରକତ ମଂାସ ଖାଇବାକୁ ହୋଇଲେ ମତୁଆଳା । ୧
କାଳବମୋଚନକୁ ଡନ ପଦ୍ଧ ଚଂଡୀ
ଚଡାକୁହିଂ ରକ୍ତ ମଂାସ ନ ଅର୍ପିଲା କଲେ ଖଂଡ଼ି ।
କାଳବମୋଚନ ଦଣ୍ଡ୍ୟ ପଡ଼ିଲାକ ରଣେ
ଆକାଶେ କସ୍ମୁ ବୃଷ୍ଟି କଲେକ ଦେବଗଣେ ।
କାଳବମୋଚନ ପଡିବା ଦେଖି ସାନନ୍ଦ ଦେବଗଣେ
ମେରୁ ଖଣ୍ଡରେ ଯାଇଂ ପଶିଲେ ବୃନ୍ଦାଅର୍କ ରତନେ ।
ଲକ୍ଷେ ଶତଷଠି ବରଷ ପରଯନ୍ତେ ନଥିଲା ଦେବ ସଙ୍ଗ
ଏବେ ସେ ଆକାଶକୁ ବଶିଲକ ଶୋଭା ।

---

୧ । (ଖ) ବାରୋଆଳା

ଅମର ବିଳାସୁଣୀ ଚଉଷଠି କୋଟି
ନାରଦ ନଟ ନାଏକ ସପତ ସ୍ୱରେ ଝଟି । ୨
ଅନେକ ଉତସଲ୍ୟ ସେ ପୁଣ ପୁଣ ସ୍ୱର୍ଗେ
ମଳୟ ବସନ୍ତ ସେ ହକାର କହନ୍ତ ଗନ୍ଧର୍ବେ । ୩୭୯୦

## ମହିଷାସୁର ବଧ

ଏଥୁ ଅନନ୍ତରେ ଅସୁର କୁଳ ଧଂସନ
ମହିଷାଂସୁରକୁ କହିଲେ ବହନ ।
ସ୍ୱାମି କାଳବ୍ରମୋଚନ ନାଶ ଗଲାକ ଅଖଡେ । ୩
ସ୍ତ୍ରି ଗିବୃନ୍ଦ ସେ ମାଇଲେ କୁତୁହଳେ । ୪
ଶୁଣି ମୃଷାଗତ ସେ ମହିଷାସୁର ରାଏ
ଆସ୍ତାନୁ ପଡ଼ିଲ ରାଜା କର୍ତ୍ତୀତ ଶର ପ୍ରାଏ ।
ତକାଲ କରି ଧରିଲ ସେ ଦାନବ ଧୂମ୍ରଲୋଚନ
ମୁଖରେ ଜଳ ସିଞ୍ଚିଲେକ ହେଲ ଚେତନ ।
ଅନେକ କ୍ରୋଧ କରଇ ସେ ମହିଷାସୁର ନୃପତ୍ତି
ଆପଣାର ଶିର ଆପଣେ ବକୋଡ଼ି ।
ନିଳଜ ଆତ୍ମା ମୋର ମିଳାଇଣ ଯାଉ
ଏ କଷ୍ଟ ଦେଖିବାକୁ କିଂପା ରହି ଥାଉ ।
ବାବୁ କାଳବମୋଚନରେ ପ୍ରାଣର ମୋର ବନ୍ଧୁ
ଜେନାବନ୍ତ ନଗ୍ରକୁ ମୋର ଉଦ୍ଧତ ପୂର୍ଣ୍ଣ ଇନ୍ଦୁ ।
ଦେହ କମ୍ପା ରହିଛୁ ତୋହୋର ଅଭାବେ
ନିଶ୍ଚଏ ଜାଣିଲି ମୋର ମରଣ ପ୍ରାପତ ଏବେ ।
ଅଥବା ଯଦ୍ୟପି ବ୍ରତବ କାଳଜ
କାହାକୁ ଘେନ ମୁଇଂ କରିବଇଂ ରାଜ ।
ଆହୋ ଧୂମ୍ରଲୋଚନ ତ ସିନ୍ଧୋ ଉପସିନ୍ଧୋ ତନ
ସମଏକ ପଳାଅ ଯା ବ୍ରତ ଦେହ ଘେନ । ୩୮୦୦ ।
ଏ ଘାନ୍ତ ରଣ ଯୁଧ୍ୟ କରିବି ମୁହି ଏକା
ଗୁଣ୍ଡିଲ ମାୟା ମୋହ ମରଣକୁ ନିଶଙ୍କା ।
ଆହୋ ଏଡ଼େ ଏଡ଼େ ଯୋଧ୍ୟାଏ ଥିଲେ ଭୂତ ଭବିଷ ଗ୍ୟାଂତା
ଏଡ଼େ ବଡ଼ ମନ ବୋଲି କେହି ନୋହିଲେ କହନ୍ତା ।

---

୨ । (କ) ନାରଦ ବାଏ କମ ଗୃମର ଝଂଟି ।
୩ । (ଙ) ଅଖଡ଼େ ।
୪ । (ଖ) ସଙ୍କୋଡ଼େ (ଗ) ତାକୁ ରଣେ ।

ଦେବ ଦାନବ ମୁଁ ଜିଣିଲି ବାହୁବଳେ
ଦଇବକୁ ହାରିଲି ମୁଁ କର୍ମର ଅବଳେ ।
ଏନ୍ଧ୍ରାକ ବନ୍ଦ ସେ ଦେବତାଙ୍କର ଅଛି
କେଉଁ ମୋତେ ଜାଣି ନ କହିଲୁ ନ ଜାଣିଲି କିଛି ।
ଅପ୍ରାଭବ ନ ଚେତିଲି ମୁଁ ସେନାପତିଙ୍କର ଦର୍ପେ
ଏଥକୁ ଦଇବ ସେ ବର୍ଦ୍ଧିଲା ଅନୁକର୍ମେ ।
ମୁହିଁ ହେ ସବୁଙ୍କର ଦେଖିଲି ମରଣ
ଜୀବ ଧରିଅଛି ମୋହୋର ନିଲଜ ପଣ ।
କାନ୍ଦଇ ମହିଷାସୁର ଶୀର୍ଘ୍ୟର ବଡ଼ ବ୍ୟଥା
ଛନ୍ଦୀ କୃଳେ ହେ ଦୁଃସହ କର୍ମ କଥା ।
ଅଥବା ଏତେ ସମ୍ପଦ ଯେ ଗଲା ମୋର ନାଶ
ସାମାନ୍ୟ ହାରିଲେ ମୋତେ ନାହିଁ ଯଶ ଅପଯଶ ।
ପାମରୀ ଦୁରାତ୍ମା ସ୍ତିରୀ ମାନ୍ଦ ଗ୍ଛର
ଆନ କର୍ମମାନେ ରହିଲେ ଏତେ ସମ୍ପଦ ମୋହୋର ।
କେ ବୋଲଇ ଅପାର କେ ବୋଲଇ ଏକା
ସ୍ତିରୀ ହୋଇ ପୁରୁଷକୁ କେମନ୍ତେ ନାହିଁ ଶଙ୍କା ।
ଆହୋ ବସ୍ତୁ ଯେ ମୋହୋର ଅଟଇ ବଇରୀ
ତାହାର ଯୋଗେ କମ୍ପା ନ ଗଲା ମୋର ଶିରୀ ।
ବିଷ୍ଣୁର ହସ୍ତେ ଯେବେ ହୁଅନ୍ତି ମୁହିଁ ବଧ
କାଳଦଣ୍ଡ କୋହେ ନୁହନ୍ତି ନା ବିରୋଧ ।
ମୁହିଁ ଯେବେ ବିଷ୍ଣୁଙ୍କୁ ପାରନ୍ତି ହାଦେ ଜିଣି
ତ୍ରିଲୋକେ ଜଗନ୍ନାଥ ମୋତେ ସାଧୁ ସାଧୁ ବାଣୀ ।
ପୁରୁଷେଣ ବଧ୍ୟ ବୋଲି ମାଗନ୍ତି ଯେବେ ପୂର୍ବେ
ବିଷ୍ଣୁର ଚକ୍ର ହାଦେ ପାବନ୍ତି ନା ଏବେ ।
ଏବେ ସେ ନିକଟ ହୋଇଲି ମୋର ମୃତ୍ୟୁ
ଅଦୋଷେ ନାଶ ଯାଉଅଛି ଏ ଦେବଙ୍କର ହେତୁ ।
କହୁଁ କହୁଁ କୋପିତ ସେ ଦାନବ କୁଳ ଖଣ୍ଡା
ଧବଳ ପର୍ବତ ଉପରେ ନେଇ ପ୍ରହାରିଲା ଝଣ୍ଡା ।
ଅହୋ ପଞ୍ଚ ନଉ ଯୋଜନ ହେବଣ ଟଳିଲା ଶାସ୍ତ୍ରଳ
ମହିଷାସୁର ଖଡ଼ଗ ପଡ଼ନ୍ତେ ହୋଇଲା ବେନ ଫାଳ ।
ଆକାଶେ ଦେଖିଲେ ସମସ୍ତ ବ୍ରହ୍ମାଅର୍କେ
ସାଧୁରେ ମହିଷା ବୋଲି ପ୍ରଶଂସା କଲେ ଦେବ ଲୋକେ ।

ସେହୁ ଖଡ୍ଗ ଧରି ବୁଲଇ ବାହୁଳା ଆକାଶକୁ
ଆଜ ସେ ମାରିବ ସମସ୍ତ ଦେବତାଙ୍କୁ ।
ବ୍ରହ୍ମାର ମୁଣ୍ଡ ମୋଡ଼ିବ ଏହିକ୍ଷଣି
ଏକ ଜଣକେ ନ ଥୋଇବି ବିହନ୍ତାପଣ ପୁଣି । ୬୮୨୦ ।
ଆହୋ ପକ୍ଷୀ ଶୂନ୍ୟ ଭୁବନେ ଯହୁଂ ମହିଷାଂସୁର ରୂପ ଦେଖି
ଦେବତାଏ ପଳାଇଲେ ଗଗନ ଉପେକ୍ଷି ।
କେଶ ବାସ ଅସମ୍ଭାଳ ହୋଇଣ ବିବୁଧେ
ସମସ୍ତେ ଶରଣ ପଶିଲେ ଯାଇଂ ଦୁର୍ଗାର ସନ୍ନିଧେ ।
ଦେବୀଙ୍କର କଷ୍ଟ ଦେଖି ସେ ଧାଇଁଲେ ନାରାୟଣୀ
ଆରେ ଆରେ ବୋଲି ଧାଇଂଲେ ଉଚ୍ଚସ୍ୱରେ ବାଣୀ ।
ଅବଚ୍ଛିନ୍ନେ ବାଣ ଯେ ବିନ୍ଧିଲା ଉପର
ଆକାଶ ମଣ୍ଡଳ ଯାକ କଲା ହାଦେ ଶର ।
ଅଶୀ ଶତ ଯୋଜନ ନବ ଶତ ଯୋଜନ ବହଳ
ଏତେ ଆକ୍ରାନ୍ତ କଲା ଶର ପୀଡ଼ା ଆକାଶ ମଣ୍ଡଳ ।
ଯାଇଂ ନ ପାଇଂଣ ଭୂଲଇ ତ୍ରିପିଷ୍ଟ
ରୁନ୍ଧିତ ହୋଇଲା ସେ ସ୍ୱର୍ଗପୁର ବାଟ ।
ଅନେକ ମନ୍ତ୍ରୀଙ୍କି କହିଲା କରିବା କେବଣ ବୁଧି
ସ୍ୱର୍ଗକୁ ବାଟ ନାହିଁତ ହୋଇଲା ସବୁ ରୁନ୍ଧି ।
ଅନେକ ବୋଇଲା ହୋ ତୁ କହିଲେ ନ ଜାଣି
ସ୍ତ୍ରୀ ଲିଙ୍ଗ ବୋଲି ସେ କହୁ ପୁଣି ପୁଣି ।
ତୁ ଯେ ବୋଇଲୁ ହୋ ଏ ନୋହଇ ବସ୍ତୁ ନାଥେ
ପ୍ରତକ୍ଷେ ଦେଖସି ହାଦେ ଶଙ୍ଖ ଚକ୍ର ଗଦା ଗାଣ୍ଡିବ ଧନୁ ହସ୍ତେ ।
ଏହା ବଚନର ସେ ବହୁଏ ମନେ ପୁଣି
ପ୍ରସନେ ବିଶ୍ୱନାଥ ଅବତାର ହାଦେ ଦେଖି ନାରାୟଣୀ । ୬୮୩୦
ଏତେକ ବଚନନ୍ତେ ହୋଇଲାକ ରାଢ
ବାହୁଡ଼ଇ ମହିଷାଂସୁର ଆକାଶରୁ ଧାଢ ।
ଶଉଚବନ୍ତ ହୋଇ ସେ ପିତାଙ୍କୁ ଲୟ କରଇ
ଗିରିବର ସମାନ୍ୟେ ସେ ମହିଷି ରୂପ ଧରଇ ।
ରତ୍ନଗର ଶିଖରେ ବଇସେ ମାହେଶ୍ୱରୀ
ଯୋଗ୍ନୀ ବୃନ୍ଦ ଘେନି ସେ ମଦିରା ପାନ କରି ।
ମହିଷି ରୂପ ଧରି ସେ ଦାନେବ ମହାବଳୀ
କଣ୍ଠୟୁ ଗିରି ପର୍ବତ ସେ ପକାଇଲା ଖୋଳି ।

ଶତେ ଯୋଜନ ପୋତା ସେ ବେନ ଯୋଜନ ସ୍ଥୂଳୀ
ଉଚ୍ଛର୍ଗ ବେନ ଶତ ଯୋଜନ ପଞ୍ଚଶତ ହସ୍ତ ଅଗୁଳି ।
କେଞ୍ଚିକରି ମହିଷାସୁର ଯେ ପର୍ବତ ଉପାଡଇ
ଫୁଲ ମନ୍ଦା ପ୍ରାଏ କରି ସିଙ୍ଘେଣ ଘୋଟଇ ।
ଯାତ ପଦ୍ମ ପନ୍ଦର ମେରୁକ୍ଷ କୋଟି କାନ୍ତାମି ଯୋଗ୍ନି
ଦୁର୍ଗାର ଗୁମୁରେ ଖେଳ କରନ୍ତି ଏତେକ ବଳ ଘେନି ।
ଦେଖ ହୋ ବଳବନ୍ତା ସେ ଦାନବ କୁଳ ସ୍ୱଏ
ପର୍ବତ ସିଙ୍ଗର ମୂଳ ଧରିଅଛୁ ମୃତ୍ତିକା ଖଣ୍ଡ ପ୍ରାଏ ।
ଭୂମିରେ ହାଣିଲେ ଯେତେକ ସିଙ୍ଘରେ ଲାଗଇ ମାଟି
ସେହିମତ ପ୍ରାଏ ହୋଇଲା ରତ୍ନଗିରି ପର୍ବତ ଗୋଟି ।
କରପତ୍ର ଯୋଡ଼ି ଯେ କହଇ ମାର୍କମା
ମହିଷାସୁର ଅହ୍ଲାରି ବଳେ କରି ଅଇଲା ଗୋ ମା । ୩୮୪୭
ଉଠିଲେ ଦେବୀମାନେ ଡାକଲେ ବୀର ଡାକେ
ବ୍ରହ୍ମାଣ୍ଡ ଉଚ୍ଛୁଳିଲା ସେ ଦେବୀମାନଙ୍କର ହାକେ ।
ଅନ୍ତରୀକ୍ଷେ ମଏଷାଂସୁର ପର୍ବତ ଘେନି ଆସଇ ବେଗି
ରତ୍ନଗିରି ବେଗେ ପକାଇଲାକ ଫିଙ୍ଗି ।
ଆହୋ ମହାହଟକା ବଳ ଯେ ପଶ୍ଚିମ ସମୁଦ୍ରେ
ସେ ପର୍ବତ ପଡ଼ିଲା ଅସ୍ଥିଧ ବନର ତଟେ ।
ଆହୋ ପକ୍ଷକ୍ଷ ନବ ସହସ୍ର ଯୋଜନ ଅନ୍ତରେ
ରତ୍ନଗିରି ପର୍ବତ ପଡ଼ିଲା ଯାଇ ଏତେକ ଦୂରେ ।
ନମସ୍ତେ କାନ୍ତାସ୍ୱମି ଗୋ ଅନାଦ୍ୟ ପରମ ଯୋଗୀ
ଭବ ନିବାରଣ ଅର୍ଥେ ମହୁମାଂସ ଭୋଗୀ ।
ଆପଦର କାଳେ ତୁହି ହେ ହାଦେ ରଖୁ
ଅପାର ଅରିଷ୍ଟି ନାଶ କରି ଦୁଷ୍ଟର ବଳ ଭକ୍ଷୁ ।
ପରମ ମହେଶ୍ୱରୀ ହୋଇଂ ସର୍ବ ଲୋକ କରୁ ଚିନ୍ତା
ବୁଡନ୍ତେ ମହାଭବ ଗୋ ତୁହି ସେ ଉଧରନ୍ତା ।
ଯାହାକୁ ଲଏ ଗୋ କରନ୍ତି ବେଦ ବ୍ରହ୍ମା
ମୁହିଁ କିସ ବର୍ଣ୍ଣିବି ଗୋ ତୋହର ମହିମା ।
ଦୁର୍ଗାକୁ ଶତ ସହସ୍ର ପ୍ରଣମ୍ୟ ମୋର ନିତ୍ୟ
ବଦନ୍ତି ଶୂଦ୍ରମୁନି ସାରଳା ଦାସ ଭବନ୍ତି ଦୃଢ଼ ଚିତ୍ତେ ।।

— ୫ ✳ ୫ —

ଶୁଣ ହେ ମହାରାଜା ବଦନ୍ତି ବ୍ରହ୍ମବେତ୍ତା
ତୁ ଯାହା ପୁଚ୍ଛା କଲୁ ବସ୍ତୁ ପୁରାଣ କଥା । ୩୮୫ ।
ଗିରି ପର୍ବଙ୍କଂ ସେ ମହିଷାସୁର ଆସି
ଅର୍ଦ୍ଧ ରାତ୍ର ଆସିଣ ସେ ହୋଇଲାକ ନାଠି ।
ଧୂମ୍ର ବୋଇଲା ଦେବ ରାଜ୍ୟ ଯିବା ନିଜ ଭୁବନେ
କାଏ ବଳା ଭୂମିରେ ନଥାଇ ଏକ ଦିନେ ।
ଭଲ ବୁଦ୍ଧି କହିଲା ସେ ମନ୍ତ୍ରୀ ଦାସର ନାଥ
ନିଜ ପୁରେ ବେଳେ କଲାକ ଦୈତ୍ୟପତି ।
ସ୍ନାହାନ ଭୋଜନ ସାରିଣ ମହାରାଏ
ନିଅବକାଶ ମନ୍ଦିରେ କଲାକ ବିଜଏ ।
ଆହୋ ଭାଳନ୍ତି ଦେବୀମାନେ ଅସନ ବିହୁନେ
ବିଟଂଗିରି ଶିଖରେ ସେ ରହିଲେ ଦେବୀମାନେ
ଦେବତାଏ ଦେଖିଲେ ଯେ ଦୁର୍ଗାଙ୍କର ଶୂନ୍ୟ ଗଡ଼
ଖେଚରୀ ବିବାନ ଆଣି ଦେଲେ ସୁରପତି ।
ଏ ବିବାନର ମଧ୍ୟେ ବିଜଏ କର ମହାମାଏ
ମନ ପବନ ଦଣ୍ଡ କ୍ଷଣକେ ଅନ୍ତର୍ଧାଏ ।
ଅନେକ ବିନୋଇ ସେ ବୋଇଲେ ମଘବାନ
ଦୁର୍ଗା ଆରୋହିଲେ ସେ ସଞ୍ଜୁକେତୁ ବିମାନ ।
ଏକା କ୍ଷଣକେ ସପ୍ତ ଦ୍ୱୀପକୁ ଅନୁକ୍ରମି
ଘଣ୍ଟାକର ମଧ୍ୟେ ସେ ଯେ କୋଟି ବ୍ରହ୍ମାଣ୍ଡ ଭ୍ରମି ।
ଖେଚରୀ ବିମାନରେ ବିଜଏ ଜଗତ ମାତା
ଆନେକ ଅବଶେଷ ଆଣି କଲେକ ଆଦ କରତା । ୩୮୬ ।
ଶୁଣ ପରୀକ୍ଷ ରାଜା ବଦନ୍ତି ଶୁକ ମୁନି
ଏକାନ୍ତେ ବିଚାରଇ ମହିଷା ଧୂମ୍ରଲୋଚନକୁ ଦେଖି ।
କ୍ଷଣକେ ହସଇ କ୍ଷଣକେ କୋପ କରଇ
ଆପଣାର ଦେନ ଭୁଜ ଚାଡ଼ି ସନ୍ତାପ କରଇ ।
ଆଗହୁଂ କପାଂ ମୁଁ ନ ଗଲି ସାଗ୍ରାମକୁ
କର୍ମର ଅବଳେ ବୁଦ୍ଧି ପ୍ରସର ନୋହିଲା ମୁକୁ ।
ମୁହିଂ ସେ ସ୍ତ୍ରୀ ବୃନ୍ଦ ମାରନ୍ତା ରଣେ
ସଖାନ୍ତ ମରାଇଲି ଆପଣା ଅଧମ ପଣେ ।
ଏସନ ବିଚାର କରନ୍ତେ ସେ ପାହିଲାକ ରାତି
ଶଙ୍ଖଧ୍ୱନି ଶବଦ ପୂରିଲା ହୋଇଲା ପାହାନ୍ତି ।

ଶେଯ୍ୟା ତେଜିଣ ସେ କୋପ କରି ଉଠଇ
କରେଣ ଗଦା ଘେନିଣ ସେ ବାହ୍ୟାସ୍ୟେ ଦଉଡ଼ଇ ।
ସ୍ୱାହାନ ଦେବାଙ୍କ ସାରଣ ବିଗ୍ରହ
ବ୍ରହ୍ମାଙ୍କୁ ସ୍ତୁତି କରି ବହୁରୂପ ଧରଇ ।
ଚିତାକୁ ଲାଏ କରଣ ହୋଇଲା କାମରୂପୀ
ମହା ପ୍ରଳୟ ମେଘ କି ହୋଇଲା ବହୁରୂପୀ ।
ପୃଥିବୀ ଘୋଟିଲା ସେ ଯେ ଏକାକେ ଶରୀର ତାହାର
ଶରୀର ବଢ଼ାଇଲା ସେ ସୁବନ୍ୟ ଚୂଡ଼ ଗିରି ।
ଯହିଁ ଯେ ବିଜେ କରିଅଛନ୍ତି ଦେବୀ ଦୁର୍ଗେ
ମହିଷାସୁର ଦାନବ ସେ ମିଳିଲା ଅତି ବେଗେ । ୩୭୯ ।

ଆକାଶ ଘୋଟିଲା କି ସିଂହର ପରାକ୍ରମ
ଜାଣି ପଞ୍ଚାନ୍ତର ସେ ବିଶ୍ୱରୂପ ଯମ ।
ଦେବୀମାନେ ସହି ନ ପାରିଲେ ତାହା ଦେଖି
ଧାଇଁଲେ ଦେବୀ ବୃନ୍ଦ ବାହାନ ଉପେକ୍ଷି ।
ଦୁର୍ଗା ବୋଇଲେ ସେ ରହ ରହ ନାରାଏଣୀ
ମହିଷାସୁର ସଙ୍ଗେ ଯୁଦ୍ଧ କରିବ ଏହିକ୍ଷଣି ।
ମୁହିଁ ସେ ମହିଷାସୁରକୁ ମାରିବଇଁ ସତ୍ୟ
ଆଗହୁଁ ଦେବତାଙ୍କର ଆଗେ କରିଅଛୁ ବ୍ରତ ।

ଦେବୀନ୍ତ ଚୁହାଇଣ ଆମତେ କାମରୂପୀ
ମହା ସିଂହକ ହୋଇଲେ ଗଗନ ଝେପି ।
ବିନ୍ଧ୍ୟଗିରି ସମାନେ ବଢ଼ାଇଲେ କାଏ
ପୃଥିବୀ ପୂରିଲା ଦୁଇ ସିଂହର ତେଜ ମଏ ।
ଯେସନେକ ମେରୁ ମନ୍ଦର ହୋଅନ୍ତି ଏକ ଭେଟ
ଏ ମହୀ ମଣ୍ଡଳେ ଗୋପ୍ୟ କଲା ବେନି ସିଂହର ଚୋଟ ।
ବେନି ସିଂହର ଶିର ପଡ଼ିଲା ଏକ ଘାନ୍ତ
ବ୍ରହ୍ମାଣ୍ଡ କମ୍ପିଲା ବସୁମତୀ ଚହଲିକ ଶଙ୍କି ।
ନଖେଣ ବିଦାରଣ କଲେ ବେନି ଅଙ୍ଗ
ଗଳିତ ଶ୍ରୋଣିତ ଜାଣି ଉଦଏ ଶଶାଙ୍କ ।
ତୁଣ୍ଡ ବିସ୍ତାରନ୍ତେ ତ୍ରିଭୁବନ ପଶଇ ଗର୍ଭେ
ଭଏ ଆକାଶ ଗୁଡ଼ିଲେ ତ୍ରିଦଶ କୋଟି ଦେବେ । ୩୮୦ ।
ଚରଣ ଘୃପନ୍ତେ ପାତାଳ ସର୍ଗ ପୂରି
କଣ୍ଠେ ଟେକନ୍ତେଣ ହୋଇଲା ବ୍ରହ୍ମାଣ୍ଡ ସରି ।

ତ୍ରିଭୁବନ ଶରୀର କି ଅଭେଦ କପଟ ସେନାହା
ନିଳଗିରି ପ୍ରାଏକ ତାହାର ମୂର୍ଚ୍ଛନା ।
ନିଶ୍ୱାସ ଘାତେ ଉଡ଼ଇ ବ୍ରହ୍ମାଣ୍ଡ ସଙ୍ଗ
ଗର୍ଜନ ଶୁଭଇ କି ପ୍ରଳୟାନ୍ତ କାଳ ମେଘ ।
ଦେହ ଶିର ତଡ଼ାତଡ଼ି ହୋଇଲେ ଘଡ଼ିତାଳ
ତିଟିଲିକ ବହ୍ନନ ପ୍ରଳୟାନ୍ତ କାଳ ଅନଳ ।
ଟଗ ଘାତେ ଚରଣ ନ ଲାଗଇ ପୃଥି
କର୍ଣ୍ଣ ଝୋଟେ ଲାଗିଲେ ସେ ଦେବା ମାନଙ୍କର ମୃଡ ।
ଏମନ୍ତ ସମର ହୋଇଲା ଦିବା ରାତ୍ର ପର୍ଯ୍ୟନ୍ତେ
ଛୀରୋଦ୍ରେ ପଶିଲେ ସେ ଚନ୍ଦ୍ର ସୂର୍ଯ୍ୟ ସହିତେ ।
ନାହିଂ ଦିବସ ନାହିଂ ରାତ୍ର ନାହିଂ ଚନ୍ଦ୍ର ନାହିଂ ସୂର୍ଯ୍ୟ
ଏକା ମାତ୍ର ବ୍ୟାପିଲା ସେ ଦୁହିଙ୍କର ତେଜ ।
ଶୂନ୍ୟ ଭୁବନ ତେଜ ସେ ଲୁଚିଲେ ଅଜଗାଂ
ନବ ଖଣ୍ଡ ମେଦନୀ ସେ ହୋଇଲେ ଭଡ଼କା ।
ଜୀବନ୍ତା ଜୀବମାନେ ମୋହେ ପଡ଼ିଲେ ଜଳଜନ୍ତୁ
ପବନ ବନ୍ଦକେ କାହାର ହିଂ ନାହିଁ ଜୀବ ହେତୁ ।
ଦାନବ ସିଂହକୁ ଛାଡ଼ି ଦେବୀ ଦୁର୍ଗେ
ବକ୍ଷସ୍ଥଳେ ମାଡ଼ି ବସିଲେ ଅତି ବେଗେ । ୩୮୯୦ ।
ନଖେଣ ବିଦାରନ୍ତେ ନ ତୁଟଇ ତାହାର କାୟେ
ଦାନ୍ତେ କାମୋଡ଼ନ୍ତେ ସେ ବଜ୍ରଗିରି ପ୍ରାଏ ।
ନଖ ଦନ୍ତେ ବିଦାରନ୍ତେ ନ ତୁଟଇ ଯହୁଂ ତାହାର କାଏ
ବିମୁଖ ପାଇଲେ ଦୁର୍ଗା ମହାମାଏ ।
ଅନେକ ବାଗେ ବିଦାରଣ କଲେ ବୁକୁ
ବକ୍ଷ ସ୍ଥଳେ ବସି ସେ ପ୍ରଶଂସା କଲେ ମହିଷାକୁ ।
ସାଧୁରେ ମହିଷାସୁର ଜୀବନ ତୋର ଧନ୍ୟ
କେତେଂ ଲକ୍ଷଣେ ଜନ୍ମାଇଲୁ ଦେବ ପଦ୍ମଯୋନି ।
ସ୍ୱହସ୍ତେକ କରି ତୋତେ ପିତା ଦେଲା ବର
ବଜ୍ରେଣ ନିର୍ମିତ ଯେ ତୋହାର ଶରୀର ।
ଆରେ ପ୍ରତକ୍ଷେ ଦିଶୁ ତୁ ମୋହୋର ସିଂହ ପ୍ରାଏ
ନିରେପିଣ ଶରୀର ତୋର ବସିଲା ବଡ଼ ଦାଏ ।
ଅହୋ ପରୋକ୍ଷ କରିତରଣେ ବସିଥିଲେ ଦାନବ ଶରୀର ମାଡ଼ି
ହୃଦଏ ଭାବ କରି ତାଙ୍କୁ ଦେଲେ ଛାଡ଼ି ।

ପଳାଇଲା ମହିଷାସୁର ମହାରଣୁ
ଶଙ୍ଖର ଅସାକ୍ରମ ହୋଇଲା ଉଦଏ ହୁଅନ୍ତେ ଭାନୁ !
ନିଜ ରୂପ ଗୁଡ଼ି ପଳାଇଲା ତରେ
ନିଶ୍ୱାସ ଝରନ୍ତର ମେ ପଶଇ ଅନ୍ତପୁରେ ।
ଅର୍ଘ ଦେଗନ ବଜଏ କାଳୀକଟାଳି ବେନି ଭାରଯା
ମୋହନ୍ତେ ଅମ୍ବାଷ୍ଟମ ଯେ ମହିଷାସୁର ରାଜା । ୩୯୦୦ ।

ସଙ୍ଗ ସହୋଦର ନାହିଂ ଅନ କେହି
ଏ ମୋହୋର ଅବସ୍ଥା ସେ କାହାର ଆଗେ କହି ।
ନିକାର ବଷାଙ୍କ ଦେଖି ସେ ବଦନ୍ତି ପ୍ରିଅବନ୍ତି
ଶରଣ ପଶିବା ଯାଇଂ ଗୁଡ଼ି ମନ ଭ୍ରାନ୍ତି ।
ସ୍ୱାମି ଗଳାରେ କୋଠାଶ ବାନ୍ଧି ଦାନ୍ତେ ତରଣ ଘେନି
ଗୃଳ ସ୍ରୀମୁଖେ ଯାଇଂ କରିବା ଦଇନି !
ଅନେକ ବିନୋଦ ବୋଇଲେ ବେନି ବାମା
ତୃଷ୍ଟ ଅନୁମତେ ବର୍ପିଲ ଗୁଡ଼ିଲା ଗାରମ ।
ପଶିବଇଂ ଶରଣ ଯେବେ ମାଗିବଇଂ ଧର୍ମ ବାଟ
ଅସୁର କଳ ଗୋଷ୍ଠକୁ ଆମର ହୋଇବ ବଡ଼ ଘାଟ ।
ସ୍ତିରୀ ଲିଙ୍ଗ ହୋଇ ପାଷାଣ ପ୍ରାଏ ତାର ହିଆ
ନ ପୁଣ ମୋତେ ସେ ନ କରଇ ଦୟା ।
ଆହୋ ନାନା ଜନ୍ତୁ ମଧ୍ୟେ ସ୍ତିରୀ ଲିଙ୍ଗ ହିଂ ସେ ସ୍ଥାନ
ଏଡ଼େ ବଡ଼ ବାଟକୁ କସ ତାହାର ଗ୍ୟାଂନ ।
ତୁଷ୍ଟ ହୋଇଂ ସେ ମୋତେ ନ କରିବ ଦଏ
ନିଷ୍ଟଏ ଜାଣିଲି ମୋର ମରଣ ଯୁଗତଏ ।
ନିସତ ହୋଇକରି କରିବାକ କସ
ଛଡ଼ି କୁଳକୁ ସେ ଅଟଇ ଉପହାସ ।
ଆହୋ ରାଜନ ମହିଷା ଭାଲନ୍ତେଣ କହି
ସିହୋ ଉପସିହୋ ଦୁଇ ସେନା ହୋଇଲେ ଆସି । ୩୯୧୦ ।

ଷାଲୁଙ୍କ ବାହାନ ହୋଇ ସେ ଦଶ ଲକ୍ଷ ରଥୀ ।
ଯୋଜନ ତିଶ ଉପରେ ସେ କଟୁଆଳ ସେନାପତି ।
ନଗ୍ର ଦଣ୍ଡପାଟେ ସେ ନଗରେ ଅଧିକାରୀ
ପୁର ରକ୍ଷାପାଳକ ସେ ପ୍ରତାପ ଦଣ୍ଡଧାରୀ ।
ରାଜାର ଆକୁଳ ଶୁଣିଲେ ସେ ନଗ୍ର ଭ୍ରମଣିର ବେନେ
ନଜଗ୍ରୁଲି କରି ଶୁଣିଲେ ଗୃଣ୍ଡାଲେ ।

ମହା ମତ୍ତୁଆଳା ସେ ମଦିରା ରସ ଖାଇ
ଅମରାପର ପରବେ ଚେତନା ଗ୍ୟାନ ଗୋଚର ତାର ନାହିଁ
ସିନ୍ଧୋ ଉପସିନ୍ଧୋ ଦୁହେଂ ଗ୍ରୀମୂରେ ପରଣାମି
ଆମ୍ଭର ଆତ୍ନେ ତନ୍ୟା କାହାକୁ ଦେବ ସ୍ୱାମୀ ।
ସ୍ୱାମି ଅନେକ ଭେଗ୍ୟ କଲୁ ତୋହୋର ବାହୁବଳେ
ଭେଗ ଶୋକ ଯମଦଣ୍ଡ ନାହିଂ କେହୁଣିସି କାଳେ ।
ଏତେବେଳେ ଯେ ଅପରାଧେ ନାଥ ତୁମ୍ଭଙ୍କୁ
କେଉଣ କାଳକୁ ଆନେ ପୋଷିଅଛୁ ଯେ ଆମ୍ଭଙ୍କୁ ।
ନାଥ ମାଗରୁ ଋଷି ବୃନ୍ଦ ନ ଥୋଇବୁ ଚହ୍ନ ବର୍ଣ୍ଣ
ଦେଖ ହେ ଆମ୍ଭର ପ୍ରତଗ୍ୟା ବଳମାନ ।
ସେନାଙ୍କର ବଚନେ ମହିଷାସୁର ଭାଳଇ
ଏତେବେଳେ ଉଦ୍ଧତ ହୋଇବ ଧର୍ମବଳଇ ।
ଏତେ ବର୍ତ୍ତିଶ ନିସ ଅସୁର ଅଧିକାରୀ
ଶ୍ରୀ ହସ୍ତେ ସେନାନ୍ତ ସେ ରାଜା ଦେଲା ଶାଢ଼ୀ । ୩୯୨୦ ।
ରତ୍ନ ବସ୍ତ୍ର ଅଳଙ୍କାର ଅନେକ ଦେଲା ରାଏ
କାପୁର୍ଣ୍ୟ ହୋଇ କହଇ ସେ ଭୃତ୍ୟର ଭୃତ୍ୟ ପ୍ରାଏ ।
ବାଭ ହେ ! ବୃଦ୍ଧଳ ବଂଶ ଯେବେ ଉଧରବ ମୋହୋର
ଯୁଗେ ଯୁଗେ ରହିବ କରଣ୍ଣ କୁମ୍ଭର ।
ରାଜାର ବଚନ୍ତ ଦେଖି ସେ ଅସୁର ସେନାପତି
ପଙ୍କଭର ଦକ୍ଷିଣ ଆଡ଼ରେ ଦଣ୍ଡ ଯେନ ଚଳନ୍ତ ଉଡ଼ତି ।
ବାଜନ୍ତ ବଜ୍ରଘୋଷ ଢମକ ନିଶାଣ
ଆକାଶେ କମ୍ପିଲେ ଦେବ ସୁରଗଣ ।
ଅହୋ ସିନ୍ଧୋ ଉପସିନ୍ଧୋ ବୋଲି ଯେବଣ ଦାନବ
ଯେତେକ ଯେତେକ ଚରଣେ କ୍ଷେପ ଅଷ୍ଟ ଅଷ୍ଟ ଭୁଜ ।
ଗଦା ଶକତି ଯେ କୋନ୍ତ ଅସିବର
ଦଶ ଲକ୍ଷ ଯୋଧ୍ୟା ଯେନ ସେ ହୋଇଲେ ବାହାର ।
ବେଜନ ଲକ୍ଷ ଯୋଧ୍ୟା ଯେନ ସେ ଧୂକାସୁରେ
ରକ୍ତ ପଙ୍କତେ ସେ ଦେଖିଣ ଆଡ଼ରେ ।
ବେନ ଲକ୍ଷ ଯୋଧ୍ୟା ଯେନ ସେ ଅସୁର ଭକ୍ଷ
ବିଷଂଗିର ସନ୍ଧ୍ୟେ ସେ ଲଗିଲା ରାକ୍ଷସ ।
ବେନ ଲକ୍ଷ ଯୋଧ୍ୟା ଯେନ ସେ ସିନ୍ଧୋ ସେନାପତି
ପଙ୍କତ ଦକ୍ଷିଣ ଆଡ଼ରେ ଲଗିଲେ ମହାରାଠ ।

କୋପ ବଢ଼ଇ ଦେବୀର ଅସୁର ବଳ ଦେଖି
ଘୋର ଲକ୍ଷ ବେତାଳ ଘେନି ଲେ ଯାଅ ଚନ୍ଦ୍ରମୁଖି । ୬୧୬୯ ।
ଅସୁର ବଳ ସଇନ ଦେଖନ୍ତି ଲେ ବେଗେ
ମହିଷାସୁର ଥିଲେ କହ ମୋର ଆଗେ ।
ଶିଖରର ଉପରେ ଉଠଇ ବେତାଳୀ
ଏକା ଦୃଷ୍ଟିକେ ସନ୍ୟ ସରଜିଲା ।
ଦେଖଇ ଜଣେ ଜଣେ ମହିଷାସୁର ନାହିଁ
ଦୁର୍ଗାର ସମ୍ମୁଖରେ ସେ କହିଲା ବେଗେ ଯାଇଁ ।
ନଗ୍ର ରକ୍ଷପାଳକ ସେ ସିନ୍ଧୋ ଉପ ସିନ୍ଧୋ ବେନି
ଏହୁ ଦୁହେଁ ତହୁଁ ଅଇଲେ ଥାଠ ଘେନି ।
ସେନମଧ୍ୟ ଖଇଲେ ସେ କୋଠାଖ ଉଗ୍ରତାସ୍ୱ
ତ୍ରିକାଳାଅମ୍ବିକା ନମସ୍ତା ତ୍ରିପୁର ।
ତୁମ୍ଭେ ପାଞ୍ଚେ ହେ ଯାଅ ଲୋ ସମରେ
ମାର ଯା ଦାନବ ବଳ ଯାଅନ୍ତୁ ଅସୁରେ ।
ଏସନେକ ଆଜ୍ଞା ପାଇ ସେ ଉର୍ଦ୍ଧ ଦୃଷ୍ଟି
କରେ କୃପାଣ ଘେନି ସେ କଲେ ଦୃଢ଼ ମୁଷ୍ଟି ।
ଆକାଶେଣ ଓଷ୍ଠ କାହାର ପାତାଳେଣ ଦୃଷ୍ଟି
ଏକ ନମିଷକେ ଶୂନ୍ୟ ଭୁବନ ଘୋଟି ।
ଆହୋ ପଞ୍ଚକ୍ଷ ସନ୍ୟ ବଢ଼ାଇ ପ୍ରତାପ
ଦେବୀ ମାନଙ୍କର ଭାଜିଲା ଦେଖି ଦର୍ପ ।
ସମୋଦ୍ର ପ୍ରାଏକ ସେ ପଡ଼ିଲେ ଗଳଗାଜି
ଗରୁଡ଼ ଦେଖି ଯେହ୍ନେ ସର୍ପଙ୍କର ଦର୍ପ ଭାଜି । ୬୧୭୦ ।
ରେ ରେ କାର ଶବଦେ ପାଶିଲେ ଘୋର ରଡ଼ି ଡାକ
ବ୍ରହ୍ମାଣ୍ଡ ଉଛୁଳିଲା ସେ ଡାକେଶ୍ୱରୀ ଡାକ ।
ଧାଇଁଣ ଦାନବ କଲେ ଶର ବୃଷ୍ଟି
ଜଳିଗଲେ ନାଗସମାନେ ଦେବୀଙ୍କର ଦୃଷ୍ଟି ।
ଧାଇଁଣ ଆକ୍ଷେପି ସେ ଧଇଲେ ଦର୍ପଣି
ହସ୍ତେ ବଦାଶ ସେ କରନ୍ତି ଝର୍ଣ୍ଣି ଝର୍ଣ୍ଣି ।
ହ ଫେଡେଇଂ ସେ ଧରନ୍ତି ବେନି ହସ୍ତେ
ଯୋଡ଼ି ବେନି ଖଣ୍ଡ ସେ କରନ୍ତି କ୍ଷଣ ମାତ୍ରେ ।
ଶିରେ ନଉଡ଼ନ୍ତି ରାକ୍ଷସଙ୍କ ଶ୍ରୋଣି
ଯେସନେ ଚଳଇଂ ଆହ୍ୱାନକ ଜଳ ପାଣି ।

ମୁଣ୍ଡମାନ ମୋଡ଼ି ସେ ଗୁନ୍ଥନ୍ତି ମାଳ ମାଳ
ନାଚନ୍ତି ରଣରଙ୍ଗେ କଉତୁକେ କୁତୋହଳୀ ।
ଆହୋ ପଟ୍ଟିଶ ଯାଠି ଶକ୍ତି ଗଦା ମୁଦ୍ଗର
ଗିରିବର ସମାନେ ସେ ପିଟନ୍ତି ଅସୁର ।
ବଜ୍ରଘାତ ଜାଣି ପଡ଼ଇ ଦେବୀଙ୍କର ମୁଣ୍ଡ
ଭାଜିଣ ସହସ୍ରମାନ ହୁଅନ୍ତି ଶତେ ଗୁଣ୍ଡ ।
ଆହୋ ଅଗ୍ନିରେ ପଡ଼ିଲେ ଯେସନ୍ତ ନ ରହଇ ତୃଣ ରାଶି
ଦେବୀଙ୍କର ଦେହରେ ପଡ଼ି ସେ ହୋଇ ସର୍ବଧ୍ୱଂସି ।
ଶସ୍ତ୍ର ଭଗନେ ହୋଇଲେ ଶୂନ୍ୟ ହସ୍ତ
ମାଲ ବନ୍ଧାଣ ଗୁରୁଦା ପ୍ରହାର କରନ୍ତି ମୁଥ ।
ପାଦ ଉଞ୍ଚାବନ୍ତି ମାରନ୍ତି ନେଇ ବାଧା
ଗୃଡ଼ପୋଡ଼େ ମାରି କେ ପ୍ରହାର କରନ୍ତି ଗୁରୁଦା ।
ଆହୋ ପଟ୍ଟିଶ ଲୋହ ଗିରି ଚୂର୍ଣ୍ଣ ହୋଇଲା ଅଙ୍ଗେଣ ପଡ଼ି
କରେ ପ୍ରହାର କରନ୍ତେ କିସ ହୋଇବ ତାହାଙ୍କର ।
ରକତ ପିବନ୍ତି ସେ ବୁଡ଼ାଇଣ ମୁହ
ମହା ବିକଟାକ୍ଷି ରକତ ବର୍ଣ୍ଣ ଦେହ ।
ଚରଣ ଧରି କେ ଫିଙ୍ଗନ୍ତି ଆକାଶେ
ଅସ୍ଥି ଚର୍ମ ମାଂସ କେ ଲେହ୍ୟ କରନ୍ତି ପୁଣ ଗ୍ରାସେ ।
ବାଜନ୍ତି କଡ଼ା ବଜ୍ରଘୋଷ ମର୍ଦ୍ଦଳ
ମଧୁ ମାଂସ କରି ସେ କରନ୍ତି କୁତୂହଳ ।
ଅତି ହରଷେଣ ସାନନ୍ଦେଣ ଖେଳି
ଜଣକେ ଗୀତ ଜଣକେ ନାଟ ଜଣକେ ହୁଳହୁଳି ।
ଉଲଗ୍ନ ସାଙ୍ଗ ହୋଇ କରନ୍ତି ପୁଣ ଗ୍ରାସ
କ୍ଷଣକେ ନ ଲକ୍ଷଣ କ୍ଷଣକେ ଘୋଟନ୍ତି ଆକାଶ ।
ଅଦଭୁତେ ହୁଅନ୍ତି ଅଦଭୁତ ଜନ୍ମ
କହନ୍ତେ ଅନ୍ତ କରି ନୁହଇ ମତି ଭ୍ରମ ।
ରଣ ଅଭଙ୍ଗ ସେ ଅଭଏ ମହାମାଇ
ଫେଡ଼ନ୍ତି ଦୁର୍ଗତି ସେ ଭକତ ଜନଗୋସାଇଁ ।
ନାହିଁ ନାହିଁ ଚଣ୍ଡୀ ଯୁଦ୍ଧେ ଶୁଣନ୍ତେ ଆପଦ
ରୋଗ ଶୋକ ବ୍ୟାଧି ଯେ ନ ଥାଇ ପ୍ରମାଦ ।
ଚଣ୍ଡୀର ସଂଗ୍ରାମ ଯେ ଶୁଣ ଏକ ଚିତ୍ତେ
ଜନ ମନ ରଞ୍ଜନ ଏ ପୁରାଣ ସଙ୍ଗତେ ।

ଏ ପ୍ରଭଗ୍ୟାଂ ବଢ଼ାଇ ସେ ପରମ ସାନନ୍ଦୀ
ଭାବ ଛନ୍ଦ ବୁଧ ଜନେ ପ୍ରଖର ହେଉ ବୁଦ୍ଧି ।
ନମାମି ଦୁର୍ଗେ ସେ ବାଞ୍ଛା ଶିରୋମଣି
ଧନ ପୁତ୍ର ଲବ୍ଧ ଯେ ଚଣ୍ଡିକା ଶାସ୍ତ୍ର ଶୁଣି ।
ଶତ ଶହସ୍ର ଦଂଡ଼ ପ୍ରଣମିତ ଦେବୀଙ୍କର ପାଦପଦ୍ମେ
ବନ୍ଦନ୍ତ ଶୂଦ୍ର ମୂଢ଼ ସାରଳା ଦାସ ଦୁର୍ଗାର ପ୍ରସାଦେ ।

— ॥ ✳ ॥ —

**ଏହା ଶୁଣି ବୋଇଲେ** ସେ ଅଭିମନ୍ୟୁର ବଚ୍ଛ
ଧର୍ମ ଅର୍ଥ କାମ ମୋକ୍ଷ ଚ଼ାରି ବର୍ଗ ଅଛୁ ।
ତୁମ୍ଭେ ବ୍ରହ୍ମ ଦେବତା ମୋତେ ଧର୍ମ ଦେବତାଙ୍କ ନିହରଣ୍ଡା ୧
ପାପ ଉପରେ ମୋର ନବ ନଶୀ ଖଣ୍ଡା ।
ଯିସ ଅବା ମମ ଗ୍ୟାନେ ଅଗ୍ୟାନ ପାପ
ପ୍ରେରଣେ କର ଭଞ୍ଜିଲ ସେ ସବୁ ତାପ ।
ଅମୃତ ନଦୀ ବୁହାଇବାକୁ ମୁନି ହେ ତୁମ୍ଭେ ସେ ଅଟ ରହ୍ମ
ସଂକ୍ଷେପି କରଣ ସେ ମୋତେ ମହିଷାସୁର ବଧ୍ୟ କହ ।
ରାଜାର ବଚନେ ସେ କହନ୍ତ ଶୁକ ଯତି
ଶୁଣ ତୁ ସାବଧାନେ ଅଭିମନ୍ୟୁର ସନ୍ତତି ।
ଆହୋ ପରୀକ୍ଷ ଥିଲେ ଯେ ଧନ ଲକ୍ଷ ଯୋଧ୍ୟା
ରକତ ମାଂସ ଭୋଜନ କଲେକ ସବ ସିଧ୍ୟା । ୬୯୬୦ ।
ଖଡ଼୍ଗରେ ହାଣିଲେ ସେ ଛେଦିଲେ ବାଣେ
ଅସ୍ଥି ମାଂସ ଆଦି କରି ସେ ଖାଇଲେ କବନ୍ଧ ରଣେ ।
ସିଦ୍ଧୋ ଅପସିଦ୍ଧୋ ଅସୁର ଦେବୀ ଦେଖି
କୋପେଣ ଧାଇଲେ ସେ ଜୀବନ ଉପେଖି ।
ଦେବୀଙ୍କି ଚୁହାଇଲେ ନିପୁର ଉଗ୍ରତାର
ଧାଇଂଣ ଆବୋରିଲେ ସେ ବେନି ଅସୁର ।
ଆହୋ ପରୀକ୍ଷ ସେ ଲୁହାର ରଥେ ଦୁହେ ଛନ୍ତି ଚଢି
ରଥରେ ଯୋଚିଲେ ଅଛୁ ଗର୍ଦ୍ଦଭ ସହସ୍ର ଗୁରି ।

---

୧ । (ଖ) ମୋତେ ଧର୍ମକଇ ତରଣ୍ଡା
(ଗ) ଧର୍ମକଇ ପ୍ରଚଣ୍ଡା

ରଥ ଦେଖିଣ ଧାଇଂଲେ ବେନି ଦେବୀ
ଉପରେ ଗିରି ଟଳ ପାଟି ହୋଇଲାକ ଭୂମି ।
ନବ ସହସ୍ର ହାଥ ଆଏତନ ରଥ
ଏକା ଗ୍ରାସକେ ଗିଳିଲେ ଦେବୀ ସାମ୍ରଥ ।
ଆହୋ ପରୀକ୍ଷ ସେ ରଥ ଗ୍ରସ୍ତି ପଳାଇଲେ ବେନି
ଧାଇଂଣ ପିଟିଲା ସେ ଲୁହାର ବେନି ଗଦା ଘେନି ।
ଗିରିବର ସମାନେ ତାହାଙ୍କର ଗଦା ଯେବଣ ମୋଟ
ଗଦା ପଡ଼ିଚୂର ଗଲେ ସେ ଦେବୀଙ୍କର ଶିର ତଟ ।
ଆହୋ ପରୀକ୍ଷ ରେରେକାର କରି ସେ ଉଠିଲେ ଗୋସାମିଣି
ହାତେ କର୍ତ୍ତ୍ରିକଟାର ଘେନି ସେ ବେଗେ ହାଣି ।
କଣ୍ଠ ଛିଣ୍ଡିଣ ସେ ପଡ଼ିଲାକ କ୍ଷିତି
ଗର୍ଭରୁ ମୁଣ୍ଡେକ ହୋଇଲା ଉତପତି । ୩୯୮୦ ।

ପୁଣ ଶହସ୍ର ଧରି ଯେ ଧାଇଂଲେ ଦନୁଜେ
ଉଗ୍ରତାରା ଉପରେ ପିଟିଲେ ଗୁରୁଜେ ।
ଦେବୀଙ୍କର ଉପରେ ପଡ଼ି ଚୂରି ହୋଇଂଗଲେ ଭାଜି
ପୁଣ କଟାର ଘେନି ଉଠିଲେ ଗଜଗାଜି ।
ମୁଣ୍ଡ ଛିଣ୍ଡିଣ ସେ ପଡ଼ିଲେ ଦନୁଜଇ
ହୁଂକାର ଶବଦ କରି ମୁଣ୍ଡେକ ଉପୁଜାଇ ।
ପୁଣି ହୁଂ ଦାନବ କରେ ଘେନିଲେ ମୁଷଳୀ
ନିପୁରି ଉଗ୍ରତାରା ଉପରେ ପିଟିଲେ ଗଦା ତୋଳି ।
ମୁଷଳ ଚୂର ଗଲା ପଡ଼ି ଦେବୀଙ୍କର ଲଲାଟେ
ପୁଣି ହୁଂ କଟାର ଦେବୀ ମାଇଲେ କଣ୍ଠ ତଟେ ।
ପୁଣ ଶୀଘ୍ରେ ପଡ଼ିଲାକ ଢଳି
ଖେଚରୀ ଭୂଚରୀ ହୋଇ ନାଚନ୍ତି ମଶାସ୍ଥଳୀ ।
ହେ ବୁଧ ଜନେ ଦୁରାପଦ କଥା ନ ସରଇ କହନ୍ତେ
କେହୁ ଏହା ଅନ୍ତ କରିବ ଲେଖନ୍ତେ ।
ଆହୋ ପରୀକ୍ଷ ହୁଂକାର ଶବଦେ ସେ ଗର୍ଭୁଂ ଜାତ ମୁଣ୍ଡ
ଲକ୍ଷେକ ବେଳ ଛେଦିଲେ ସେ ଥାଇ ଏକ ପିଣ୍ଡ ।
ଆହୋ ଯେତେକ ଶିର ଛେଦନ ହୋଥଇ ରଣେ
ସେମାନେ ହୋଇଲେ ଜ ମହା ଭୀଷଣେ ।
ଏକ ଶରୀରୁଂ ଲକ୍ଷେକ ଶିର ଯାଏ
ଶଣେ ବିମୁଖ ହୋଇଲା ମହାମାଏ । ୩୯୯୦ ।

ଆହୋ ପରୀକ୍ଷ ଚେତନୀ ନାମେ ସେ ଏକଇ ମୂରତି
ଉଗ୍ରତାର ଗ୍ରୀଷ୍ମରେ ହୋଇଲା ଅଦଭୂତେ ଦେବତା ।
ସେ ବୋଇଲା ତ୍ରିପୁରା ଗୋ କିମନ କଂପାଧରୁ
ଅସୁରଙ୍କ ତପବଳ ହୃଦରେ ଚିଗୁରୁ ।
ଏ ହାଦେ ବେନି ଘାଇ ଅମର କପଟର ନାତି
ଜପାସୁର ଦାନବର ଏ ଅଟନ୍ତ ସନ୍ତନ୍ତ ।
ମାଗୋ ଜପାସୁର ଦାନବ ହୋଇଲ ମହାତପୀ
ରଣସ୍ତମ୍ଭ ପର୍ବତେ ସେ ତପ କରଇ ଅଦ୍ୟାପି ।
କର ପ୍ରସ ରଣ ସେ ଧ୍ୟାନ କରଣ ଥାଇ
ପବନ ଦେବତାଙ୍କୁ ନତ୍ୟେ ଅନ୍ନ ଦଅଇ ।
ଯିସ ଅବା ତାହାର ହସ୍ତରେ ପଡ଼ଇ
କ୍ଷୁଧାଅର୍ଥେ ତାହା ସେ ଆହାର କରଇ ।
ଶ୍ରୀକରେ ଅଜଗବ ଧନୁ ଘେନ ଗୋ ଉଗ୍ରତାରୀ
ଦେବ ଶକତ ବେଗେ ଗୋ ଯୋଡ ମହାଘୋରୀ ।
ଲଭରେ ପଡ଼ିବ ଯେବେ ଶୂଳ ଶକତ
ହୃଦଗତେ ପଡ଼ିବ ଯେବେ ବଜ୍ର ଶକତ ।
ବ୍ରହ୍ମ ଶକତ ପଡ଼ିବ ଯେବେ କଣ୍ଠ ତଟେ
ଏତେ ବାଣେ ସେ ମରିବ ତ୍ରିପିଷ୍ଟେ ।
ମାଗୋ ଢନ ଶକତ ଢନଠାରେ ଥିବ ଫୁଟି
ଘୋବନା ଶବ୍ଦେ ତାହା ଉଡ଼ାଇବ ପିଣ୍ଡ ଗୋଟି । ୪୦୦୦ ।
ତାହାର ପିତାର ହାଥରେ ପଡ଼ିବ ଯାଙ୍ଗଂ ବନ୍ଧ
କ୍ଷୁଧାତୁରେ ସେ ତାହା କରିବ ଭକ୍ଷ ।
ଦାବାନଳ ଅଗ୍ନି ଯେ ଅଛୁ ତାର ଗର୍ଭେ
ତହିଂ ପଡି ଦହନ ହୋଇବାକ ତେବେ ।
ଆହୋ ପ୍ରତ୍ୟକ୍ଷ ସେ ଚେତନା କହିଲ ଏପନେକ ମୃତ୍ୟୁଭେଦ
ଏମନ୍ତେ ସେ ଦାନବକୁ ହୋଇବ ପ୍ରମାଦ ।
ଆହୋ ବ୍ରହ୍ମାଙ୍କଇ ମାଗିଲେ ବ୍ରହ୍ମ ଶକତ
ଆଚାଶୁଂ ଆଣି ଦେଲେ ତତକ୍ଷଣାନ୍ତ ।
ଈଶ୍ୱରଙ୍କୁ ମାଗିଲେ ସେ ଶକତ ତ୍ରିଶୂଳ
ତ୍ରିପୁର କରେ ନେଇ ଦେଲେକ ସୋଢ଼ଳ ।
ଶତେଧାର ଶକତ ଦେଲେ ସୁରପତି
ଅଜଙ୍ଗ ଧନୁରେ ଦେବୀ ଯୋଚିଲେ ଢନ ଶକତ ।

ଆହୋ ପକ୍ଷ ମନ୍ଦର ତୁଲିଲ ଯେ ଶକତ ଶରୁ
ତିନି ସହସ୍ର ଏକ କରି ଯୋଚଲେ ଯେତକରୁ ।
ଆହୋ ତ୍ରିପୁର ଯେ ଯେ ପ୍ରତକ୍ଷେ ମଣ୍ଡଳ ତ୍ରିପୁରର
ଉଗ୍ରତାପ ସେ ଯେ ପିତାମହ ସର ।
ଆହୋ ତିନି ସହସ୍ର ଉଗ୍ରତାପ ଯୋଚିଲେ ଯେତେବେଳେ
ଆଦିତ୍ୟ ଦେବତା ରହି ନ ପାରିଲେ ଗଗନ ମଣ୍ଡଳେ ।
ପୃଥିବୀ ଆପ ତେଜ ବାୟୁ ଆକାଶ
ପଞ୍ଚ ଧାତୁ ଜଡ଼ିତ ହୋଇଲା ମହାରସ । ୪•୧୦ ।
ଏ ତିନି ସହସ୍ର ଯନ୍ତ୍ରଂ ବାଇଲେ ଗୋସାମଣି
ଶୂନ୍ୟ ଭୁବନେ ଶୁଭିଲା ଅଦଭୁତ ବାଣୀ ।
ମାଗୋ ଏ ତିନି ଶେକତ ପଡ଼ିବ ଅସୁରଙ୍କର ହୃଦେ
ପୃଥିରେ ପଡ଼ିଲେ ବସୁଧା ପଡ଼ିବ ପାଦେ ।
ଆହୋ ପକ୍ଷୀ ଆକାଶ ବାଣୀ ଶୁଣିଲେ ମହାମାୟା
ତିନି ସହସ୍ର ଭେଦିଲା ସେ ଅସୁରଙ୍କର କାୟା ।
ସହସ୍ରକୁ ବୋଇଲେ ତୁମ୍ଭେ ଅସୁରଙ୍କର କାଏ ପଡ଼ି
ଜଡ଼ି ରହିବ ସେ ନୋହିବ ବାହାର ।
ମନଭେଦୀ ଶର ସେ ଅନ୍ତେ ସଭିଏ
ଯାଇଂ ଲାଗିଲା ସେ ଦୈତ୍ୟଙ୍କର ଦେହେ ।
ଦୁଇ ଦେହ ଜଡ଼ିତ ଏକ ହୋଇ ଫୁଟି
ହୃଦଗତେ ପଡ଼ି ସେ ନିକଳିଲା ପିଠି ।
ନାଭିରେ ପଡ଼ିଲା ସେ ଶୂଳ ଶକତ
ହୃଦଗତେ ପଡ଼ିଲା ସେ ବଜ୍ର ଶକତ ।
ବଜ୍ର ଶକତ ଯେ ପଡ଼ିଲା କଣ୍ଠ ତଟେ
ଦୁଇ କାଏ ଜଡ଼ିତ ହୋଇଂ ସେ ପଡ଼ିଲେ ତ୍ରିପିଷ୍ଟେ ।
ଉଡ଼ାଇଂଣ ନେଲେ ସେ ପବନର ଘାତେ
ଯାଇଂ ପଡ଼ିଲେ ସେ ଜପାସୁର ହସ୍ତେ ।
ଆହୋ ପକ୍ଷୀ ପବନର ଅଭ୍ୟାସେ ଜାଣିଣ ଅନ୍ତର
ଧାଡିକାତିର ତାହା କରେଣ ଗଣ୍ଡୁଷ କର । ୪•୨୦ ।
ମହା ଅନଳେ ପଡ଼ି ସେ ହୋଇଲେ ଦହନ
ଉପାଏ ନାଶ ଗଲେ ବେନି ଯେ ଦନୁଜ ।
ସିନ୍ଧୋ ଉପ ସିନ୍ଧୋ ଯେ ନାଶ ଗଲେ ରଣେ
ଅନେକ ଆନନ୍ଦ ସେ ହୋଇଲେ ଦେବଗଣେ ।

ଜୟନ୍ତୁ ତ୍ରିପୁର ବାଳା ଯେ ବରଧୂ
ଅଶେଷ କୋଟି ମହିମା ଯାହାର ସାଧୂ ।
ପିତାମହ ଯାହାର ମହିମା ନ ପାରିଲ ଅନ୍ତକରି
ମୂଢ଼ିଂ କିସ ତାହା ବର୍ଣ୍ଣନା କରିବି ମାନବ ଦେହ ଧରି ।
ଯମ ଦଣ୍ଡ ନ ଲାଗଇ ଯେବଣ ଦେବୀର ପ୍ରସାଦଏ
ଶ୍ରୀମୁନି ସାରଳା ଦାସ ବଦନ୍ତି ତ୍ରିପୁର ପଦ୍ମ ପାଏ ।
ଏ ଟି କଷ୍ଟ ପୁରାଣ ବଦନ୍ତି ଶୁକ ବ୍ରହ୍ମା
ଅସକ୍ଷ ଅଗୋଚର ଏ ଚଣ୍ଡୀ ଚରିତ୍ର ମହିମା ।



ସିନ୍ଧୋ ଋପସିନ୍ଧୋଡ଼ଶ୍ଵରେଣ କଥା
ମହିଷାଂସୁର ଦାନବକୁ ହୋଇଲା ବାରତା ।
ମହିଷାଂସୁର ବୋଇଲା ଆବର ଜୀବନେ ପ୍ରିୟୋଜନ କିସ
ଦିଅ ମୋତେ ବିଷ ଖାଇ ମରିବି ଅବଶ୍ୟ ।
ଖଟେ ପଦ୍ମ ସେନା ଏକୁ ଆରେକ ଜଣ!
ନରଲୋକେ ନାଗ ଲୋକେ ସେ ନ ଯାଇ ଗଣନା ।
କୋଟି ଷୋହଣି ଯେ ପାଦାନ୍ତ ବଳ ଥିଲା
ଚଉଦ ଦିବସ ସାଙ୍ଗ୍ରାମେ ସମସ୍ତ ନାଶ ଗଲା । ୪୦୩୦ ।
ପୃଥିବୀ ଘୋଟିଲା ସେ ଯାହାର ସନ୍ୟ ବଳ
ଅସ୍ଥି ଚର୍ମ କିଛି ନ ରହିଲେ ସକଳ ।
ଏତେ ଏତେ ସୋଦର ମରିଗଲେ ଆବର ଜୀବନେ କାର୍ଯ୍ୟ କିସ
ଆଜ ଅବଶ୍ୟ ଯେ ସମରେ ଦେବୀ ଘାସ ।
ପୁଣି ବୋଇଲା ମୁଁ ହର ପାପ ଆତ୍ମା ଥିଲେ
ଦିନେ ଦିନେ ଅନେକ ଚିନ୍ତା ସେ ହେଉଥିବ ଭଲେ ।
ଅବଶ୍ୟ ହେଲକ ସେ ହୋଇବ ମରଣ
ଆବର ଜୀବନ ମୋହର କେବଣ କାରଣ ।
ଅନ୍ତେଶ୍ଵର ପୁରୁ ବାହାର ହୋଇଲା ଦନୁଜ
ଧୂମ୍ରଲୋଚନ ସାରଥିକି ବୋଇଲା ରଥ ମୋର ସାଜ ।
ଅନେକ ପକ୍ଷ ଆକାଶରୁ ଆଣିଅଛି ସ୍ଵର୍ଗକେତୁ ବିମାନ
ମଣ୍ଡିଲା ସାରଥି ଯେ ଧୂମ୍ରଲୋଚନ ।
କୋଟେର ଭଣ୍ଡାର ଯେ ରଥରେ ଅଛି ଖଞ୍ଜି
ସେ ବିମାନକୁ ପଟାନ୍ତର କିସ ଅଛି ନମଞ୍ଜି ।

ଶୂନ୍ୟେଣ ଚଳଇ ମନ ପେ ପବନେ
ନିମିଷକେ ତୈଲୋକ୍ୟ ଖେପଇ ସେ ବାହାନ ବନ୍ଧନେ
ହୀର କେତନ ମୁକୁଟ ଆଭରଣ କଲା ମାଥେ
ହୀରା ପନ୍ତ୍ର ଖଞ୍ଜିତ ଜଡ଼ିତ ମରକତେ ।
ଶିରେଣ ସୀମନ୍ତମଣି ଯେ ଲଲାଟେ ସେ ପାଟି
ପଦ୍ମେକ ହୀରା ଜଡିତ ମାଣିକ୍ୟ ନବକୋଟି । ୪୦୪୧ ।
କୋଟିଏ ସୂର୍ଯ୍ୟ ଜିଣି ରଥ ଦିବ୍ୟ କୋଣ୍ଡ
ତିମିର ବିଦାରଣ ପ୍ରାଏକ ଶୋଭିତ ତେଜ କାନ୍ତି ।
ପଦେକ ଗଜ ମୁକୁତା ଯେ ଗଣ୍ଡସ୍ଥଳ ତଟେ
ଲମ୍ବିତ ଚନ୍ଦ୍ରହାର ସେ ବକ୍ଷସ୍ଥଳ ପୃଷ୍ଠେ ।
ହୀରା ଜଡ଼ିତ ଯେ ପଦେକ ମାଣିକ୍ୟ ମଣି
ବେନି ଭୁଜେ ବାହୁଟି ଆଭରଣ କରନ୍ତି ଆଣି ।
ତହିଁର ଉପରେ ହୀରା ପଦେକ ଗୋଟି
କରସ୍ଥଳେ ଶୋହଇ ଏ ବେନି କଟକି ।
ଜଡ଼ିତ ଅଷ୍ଟ ରତ୍ନେ ଅଙ୍ଗୁଷ୍ଠିର ଦିବ୍ୟ ମୁଦି
ଏକଇ ଶଙ୍ଖରେ ସେ ଖଞ୍ଜିଲା ଅଷ୍ଟନିଧି ।
ପାଦରେ ନୁପୁର ଚରଣରେ ବେନି ଝଞ୍ଜା
ଦିବ୍ୟ ବେଶ ହୋଇଲା ମହିଷାସୁର ରାଜା ।
ଶ୍ରୀ ଭୁଜରେ ଶୋଭୁବନ ଧନୁ ଆଦ୍ରାବଳୀ
କୋଟିଏ ସହସ୍ର ବଳ ଧନୁ ନବ ସହସ୍ର ଅଙ୍ଗୁଳି ।
ଧନୁର ଚଣ୍ଡିରେ ମାଣିକ୍ୟ ପୁଞ୍ଜି ପୁଞ୍ଜି
ଗଜ ମୁକୁତା ଉଳେ ସୁବର୍ଣ୍ଣ ଘଣ୍ଟି ଗଞ୍ଜି ।
ନବଶତ ପଦ୍ମପଟେ ମାଣିକ୍ୟର ପନ୍ତି
ବାଳ ଅର୍କ ଜିଣିଣ ଧନୁର ତେଜ କାନ୍ତି ।
ଆହେ ପରୀକ୍ଷ ଦେବଙ୍କୁ ଦୁର୍ଲଭ ଯେବଣ ଧନୁର ମହିମା
ତାହା ସେ ଜାତ କଲା କୁଣ କେଉଁ ନାମେ ବ୍ରହ୍ମା । ୪୦୫୦ ।
ଯେବଣେ ସେ ଜିଣିଲା ତେତିଶ ଦେବତାଙ୍କୁ
ସେ ଧନୁ ଦେଲେ ସେ ମହିଷାସୁର ଦାନବକୁ ।
ଆହେ ମେଖଳା ଗିରି ସେ ଜାଣି ଧନୁର ସଙ୍କେତେ
ସେ ଧନୁ ମହିଷାସୁର ଧଇଲା ବାମହସ୍ତେ ।
ଆହେ ପରୀକ୍ଷ ପାଞ୍ଚ କୋଟି ନାରାଜ କଟାଇଣ ପକ୍ଷୀଶର
ରତ୍ନେ ଜଡ଼ିତ କରି ଥୋଇଲା ତୋଣରେ ଭିତର ।

ସହସ୍ରେକ ଭୁଜ ପଞ୍ଚ ସହସ୍ର ଘଣ୍ଟା
ଅଭେଦ ସେହ୍ନା ଆଭରଣେ ବାହାନ କାଳଘଣ୍ଟା ।
ଅହୋ ପକ୍ଷୀ ଅନନ୍ତ କୋଟି ବ୍ରହ୍ମାଣ୍ଡ ଜିଣିଲେ ବାହୁବଳେ
ତାକୁ ଜିଣିବାକୁ ସାମରଥ କେହୁ ନବଇଲେ ।
ଏସନେକ ସ୍ୱରୂପ ବୀରବେଶ ବୀରମଣି
ରଥେ ବିଜୟେ ସେ ବଜ୍ରଦଣ୍ଡ ପାଣି ।
ବବରୁଂ ବାହାର ସେ ଅସୁର କୁଳ ବ୍ରହ୍ମା
ରଥେ ବିଜେ କରନ୍ତେ ଆକାଶ ଦିଶଇ ଧୂମା ।
ତପତ ଯେସନ ପବନ ବହଇ ଉତ୍ତରେ
କାଳାନଳ ଜିଣି ସେ ମିଳଇ ମଧ୍ୟପୁରେ ।
ଆହୋ ପକ୍ଷୀ ଅଶ୍ୱିନ ମାସ ଶୁକ୍ଳ ଅଷ୍ଟମୀର ଦିନ
ତିନି ଦିନ ମୂଳା ନକ୍ଷତ୍ର ବର୍ତ୍ତମାନ ।
ଆହୋ ପକ୍ଷୀ ମୂଳା ନକ୍ଷତ୍ର ଉଦୟରେ ପୂର୍ବାଷାଢ଼ା ନକ୍ଷତ୍ର
ମହିଷାସୁର ଦାନବ ବିଜୟେ କଲା ରଥ । ୪୬୦ ।
ଯୁଗତେ ଗ୍ରହଗଣ ନୀଚସ୍ଥାନେ ଅଛଇ
ମହିଷାସୁର ଦାନବ ଦକ୍ଷିଣ ମୁଖ ବାହଇ
ବିଷ୍ଟି ନାମେ କରଣ ଗଣ୍ଡ ନାମେ ଯୋଗ
ବିଜୟେ ମହିଷାସୁର କରିବ ରଣ ଯାଗ ।
ବାହିଲା ଯେ ଧୂମ୍ରଲୋଚନ ସାରଥି
କାମରୂପୀ ଦାନବ ନାହିଁ ଚିହ୍ନ ବର୍ଣ୍ଣ ମୂରତି ।
ଯେସନେକେ ଦିଶଇ ରକ୍ତ ବର୍ଣ୍ଣ ଶାଖା
କ୍ଷଣେକେ ଦୃଶ କ୍ଷଣେକେ ଅଦୃଶ ଗଗନ ଶିଖା ।
ପବନୁ ବେଗ ହୋଇ ସେ ବାହାଇ ରଥ ଯାନ
ତିନି ଦଣ୍ଡେ କଲା ସେ ରକ୍ତଗିରି ସନ୍ଧାନ ।
ଦୂତାର ମୁଖରେ ଯେ କହଇ ନାରାୟଣୀ
ମହିଷାସୁର ଦାନବ ଗୋ ବିଜେ କଲା ଗୋସାମଣି ।
ମାତ ଗୋ ସାଙ୍ଗେଣ ତାହାର ଯେ ନାହିଁ ଥାଠ ସଖା
ବିମାନେକ ଆରୋହି ସେ ମହିଷାସୁର ଏକା ।
ଆହୋ ପକ୍ଷୀ ରଥ ଯହୁଂ ଦିଶିଲା ସନ୍ଧାନ
ବିଜେ କଲେ ଦେବୀ ଖେଚରୀ ବିମାନ ।
ଶୁଣ ହେ ପକ୍ଷୀ ଗଙ୍ଗା ନଦୀର ତଟ
ଖେଚରୀ ବିମାନେ ଦୁହେଁ ହୋଇଲେକ ଭେଟ ।

ଆହେ। ପକ୍ଷୀକ୍ଷ ଜଗୁଜନ ମୋହନୀ ସେ ଦୁର୍ଗା ରୂପ ଦେଖି
ମଏଷାଂସୁର ଦାନବ ସେ କହଇ ଦୃଢ଼ ବାକ । ୪୦୭୦ ।
ଅଦଭୁତ ହୋଇଣ ଆଇଲୁଂ କେବଣ ଦେଶୁ
ସ୍ତ୍ରି ସ୍ତ୍ରୀ ଲିଙ୍ଗ ଦେଖାଇ ସଖା ମୋର ନାଶୁଂ ।
ଆଲୋ ଆଲୋ ମୋର ଯୋଦ୍ଧାନ୍ତ ମାଇଲୁ ଅଖଣ୍ଡେ
ହୀନ ଯଉବନ କହୁଂ ତୋର ବଶ୍ୱାସ ଘାତ ଏଡ଼େ ।
ପୁଣ ପୁଣ ଦାନବ କହଇ ଗଲଗାଜି
ଆଜ ମାଏଂସ ତୋର ଖାଇବ ମୁହିଁ ଭାଜି ।
ଆଲୋ ତୋହର ରୋଧରେ ଆଜ କରିବ ସ୍ନାହାନ
ତେବେ ସେ ପାଶୋରିବି ସଖାନ୍ତ ଦୁଃଖମାନ ।
ଆହେ। ପକ୍ଷୀକ୍ଷ ମଏଷାଂସୁର ବଚନ ଶୁଣିଲା ମହାମାଏ
କହନ୍ତ ଦୃଢ଼ ବାକ୍ୟ ସେ ଅଡହୁଂ ନର୍ଦ୍ଦଏ ।
ଆରେ ଦେବ ଲୋକ ଉରହଲ କାହୁଂକ ଆଜ୍ଞା ଯିବୁ
ସଖାନ୍ତ ମରାଇ ତୁ ଥାଇ ଏକା ଜସ କରିବୁ ।
ଏତେକ ଦର୍ପ ତୁରେ କହୁଛୁ ରାକ୍ଷସ
ତିଲ ପରମାଣେ କାଟିବି ତୋର ମାଏଂସ ।
ଯଣବନ୍ତୀ ପୁରେ ତୁ ଯାଇଂ କରିବୁ ବାସ
ଗର୍ଦ୍ଦଭ ଜମ୍ବୁକାରେ କରିବେ ତୋତେ ଗ୍ରାସ ।
ଦୁର୍ଗାର ବଚନେ ସେ କରେ ଧଇଲା ଧନୁ
ନାରାଚ ପୂରାଇଲା ସେ କପିଲ ସିଙ୍ଘ ତନୁ ।
ସହସ୍ର ଭୁଜେ ସେ ଦେଖିଲା ଦୁର୍ଗାଙ୍କୁ
ସହସ୍ର ସହସ୍ର ନାରାଚ ପେଷିଲା ସେ ଭୁଜକୁ । ୪୦୮୦ ।
ଆହେ। ପକ୍ଷୀକ୍ଷ ଅସୁର ନାରାଚ ଦେଖି ଗୋସାମଣି
ପାଞ୍ଚ ସହସ୍ର ଭୁଜେ ଧନୁ ଧଇଲେକ ଟାଣି ।
ଦୁର୍ଗାର ସହସ୍ର ଦେଖି ସେ ମଏଷାଂସୁର ରାଏ
ବେନ ସହସ୍ର ନାରାଚ ପେଷିଲେ ଅଭଏ ।
ଲକ୍ଷେକ ଶର ଘେନ ଦୁର୍ଗା ଛେଦଲା ତାର ସେହୁ।
ମଏଷଂାସୁର କପୋଲେ ବାଜି ସର୍ବ ଫେଲା ଚୂନା ।
ନବ ଲକ୍ଷ ଶର ଯେ ମଏଷାଂସୁର ବିନ୍ଧ
ଶୂନ୍ୟ ଭୁବନ ଆଦ କରି ମଏଷାଂସୁର ରୁନ୍ଧ ।
ଆହେ। ପକ୍ଷୀକ୍ଷ ଅସୁରଙ୍କର ଶହସ୍ରେ ଲାଗିଲା ଦୁର୍ଗାଙ୍କର ତେଜ
ଦୂରୁଂ ସର୍ବ ଶର ହୋଇଲା ଦହନ ।

କକଡ଼ା ମାସେ ଯେହ୍ନେ ଗଗନୁ ଜଳ ବୃଷ୍ଟି
ବେନ ବାଣ ଜାଳାବଳୀ ଶୂନ୍ୟ ଭୁବନ ଘୋଟି ।
ଲାଘବ ଶରେ ଯହୁଁ ନ ପାରିଲା କ୍ଷଣି
ଦେବ ସହସ୍ର ମାନ ଆଧାନ କଲା ଆଣି ।
ଆହୋ କୋପେଣ ଦାନବ ପର୍ବତ ଶରେକ ପେଷଇ
ଦୁର୍ଗାର ଝେଟଣୀ ବିମାନ ଉପରେ ପଥର ବରଷଇ ।
ଗତେ ତାଳ ଉଚ୍ଚ ହୋଇ ବରଷନ୍ତି ପାଷାଣ
ଏକ ଏକ ପଥର ଆଏତନ ଏକ ଯୁଣ ।
ପଥର ପଡ଼ନ୍ତେଣ ଦେଖିଲେ ଦେବୀ ଦୁର୍ଗେ
ବଜ୍ରାବଳୀ ଶସ୍ତ୍ର ଯେ ପ୍ରହାର କଲେ ବେଗେ । ୪୦୯୦ ।
ଆହୋ ପର୍ବତଙ୍କ ପକ୍ଷ ଛେଦିଲେ ଯେବଣ ଶସ୍ତ୍ର ପୂର୍ବେ ।
ସମସ୍ତ ପଥରନ୍ତ ଯେ ଛେଦିଲେକ ବେଗେଂ ।
ଆହୋ ଦୁର୍ଗା ମାଇଲେ ଯେ ଅଗ୍ନି ବାଣ ଗୋଟାଏ
ସମ୍ଭାଳ ସମ୍ଭାଳ ତୁରେ ମଏଷାସୁର ରାଏ ।
ଏକା ଅଗ୍ନି ବାଣ ଯେ ଶତେ ଶତେ ମୂର୍ତ୍ତି
ଦେଖି ପ୍ରଶଂସା ଯେ ବଜ୍ରସିଂଘର ନାଥ ।
ଆଗୋ ଏଣ୍ଟେକ ସୁଲକ୍ଷଣୀ ତୁ କାହାର କୁଳବଧୂ
ସ୍ତିରୀ ଲିଙ୍ଗ ବହୁ ତୁ ମହିମା ସାଧୁ ସାଧୁ ।
ନାହିଁ ନାହିଁ ଦେଖିଲା ମହିମା ଭୂଅନ୍ତଲେ
ଏତେ ଏତେ ଯେନାନ୍ତ ଜିଣିଲୁ ବାହୁବଳେ ।
କେହୁ ସେ ବୋଲନ୍ତି ଅବଳା ସ୍ତିରୀ ବାମା
ଆଗହୁଂ କହନ୍ତା ନୋହିଲା ଏଡ଼େକ ଗାରିମା ।
ପ୍ରଥମହୁଂ ଯେବେ ଜାଣନ୍ତି ତୋ'ର ଏଡ଼େକ କଥା
ମୁଇଂ ଶରଣ ପଶନ୍ତି ଅନେକ କାଯଁ ହୁଅନ୍ତା ।
ଏବେରେ ସୁନ୍ଦରୀରେ କହଇ ମୁହିଂ ତୋତେ
ନିହାଇବୁ କା ଭରସା ମୋର ଇଚ୍ଛା କଲେ ତୋତେ ।
ମଏଷଂା ବୋଇଲା ମୋତେ ମାଇଲେ ହେବୁକି ଜଗତେ ସେହ୍ନାଶ୍ରେ
ତୋତେ ମାଇଲେ ମୁ ହେବି ଜଗତେ ବିଖ୍ୟାତ ।
ଅନେକ ଭଗତ ଯେ ହୋଇବି ମୁହିଁ ତୋତେ
ବେଳେକ ସୁନ୍ଦରୀ ଗୋ ରକ୍ଷାକର ମୋତେ । ୪୧୦୦ ।
ଦୁର୍ଗା ବୋଇଲେ ହୋ କମ୍ପା ହେଉ ନସତ
ଉଭଏ କୁଳ ବିବାଦେ ତୋତେ ନାହିଁ ଜୀବନ୍ତ ।

ଅଥବା ତତେ ମୁ କରଇ ଅବା ରକ୍ଷା
ତୋହୋର ନମନ୍ତେଣ ଦେବତାଙ୍କର ବଡ଼ କକ୍ଷା ।
ଦେବତାଙ୍କୁ ଦୁଷ୍ଟ କରାଇଲୁ ବଇରାଗ
ତୋତେ ମାଇଲେ ସେ ଥିର ହେବ ସ୍ୱର୍ଗ ।
ଆହୋ ପରୀକ୍ଷ ଦୁର୍ଗାର ଏସନ ବାଣୀ ଶୁଣି
କୋପେଣ ଗର୍ଜଇ ମଏଷାସୁର ମଉ ନାଗ ଜାଣି ।
ଆହୋ ଯେବଣ ଅଗ୍ନିବାଣ ପେଷିଲେ ଦେବୀ ଦୁର୍ଗେ
ସେ ଅଗ୍ନି ଶର ନାଶଗଲା ଧୁମଲୋଚନର ଆଗେ ।
ମହିଷାଂସୁର ପେଷଇ ଅହିଶର
ଦୁର୍ଗାର ଶରୀରେ ସେ କରନ୍ତି ଶର ପୀଡ଼ା ।
ଗରୁଡ଼ାଶର ପେଷିଲେ ପନଗାଂଶର ଦେଖି
ହେଲେଣ ଗରୁଡ଼ାଶରେ ଗଲା ପନଙ୍ଗାଶର ଭକ୍ଷି ।
କୋପେଣ ଦୁର୍ଗା ଯେ ନର୍ଦ୍ଧାଙ୍କ ବାଣ ମାର
ଧୁମ ଲୋଚନ ସାରଥି ତାହା ବାମ ଭୁଜେ ଧର ।
ପୁଣ ମଏଷାଂସୁର ମେଘାଶକ୍ତିତ ପେଷଇ
ମୁଷଳ ଧାର ପ୍ରମାଣେ ମେଘ ବରଷଇ ।
ରୁଦ୍ର ଶରେକ ଯେ ମାଇଲେ ଦେବୀ ଦୁର୍ଗେ
ମେଘର ବୃଷ୍ଟି ନ ପଡ଼ିଲା ଦଶ ଦଗେ । ୪୧୧୦ ।
ଆହୋ ପରୀକ୍ଷ ବ୍ରହ୍ମ ଶରେକ ଯେ ମାଇଲେ ନାରାଏଣୀ
ଧୁମ ଲୋଚନ ସାରଥି ତାହା ପକାଇଲା ହାଣି ।
ଦୁର୍ଗା ଦେଖିଲେ ଧୁମଲୋଚନ ସାରଥି ମହିମା
ସାରଥି ହୋଇ ତୋର ଯେତେକ ଶାରମା ।
ହୁଂକାର ଶବଦ କଲେ ଦୁର୍ଗତି ତାରେଣୀ
ଶବଦୁଂ ଜାତ ହୋଇଲା କଙ୍କାସୁଣୀ ଲୋମସୁଣୀ ରାକ୍ଷସଣୀ ।
ମକ୍ଷେଣ ତଳ ପାଟି ଲାଗି ଆକାଶେଣ ଜାଭ
କଙ୍କାଲୋମସୁଣୀଙ୍କର ମହିମା ଯେ ଦେବଙ୍କୁ ଦୁଲଭ ।
ଆହୋ ବସୁ ବ୍ରହ୍ମ ତେଜ ଦେଖିଲେ ପ୍ରତକ୍ଷ
ବୋଇଲେ ତୁମ୍ଭେ ଦୁହେଂଲୋ ଧୁମଲୋଚନକୁ ଭକ୍ଷ ।
ସଞ୍ଚକେତୁ ବମାନ ଗିଳ ତୁମ୍ଭେ ରଥ
ମଏଷାଂସୁର ଦାନବର ଦେଖିବା ନଜ ଗାନ୍ଧ ।
ଦବ୍ୟ ବମାନ ଚଢ଼ି ଯୁଧ୍ୟ କର ବସଇ
ତେଣୁ ବର ଆମ୍ଭଙ୍କୁ ଲୋ ହେଲାକ ଅଦ୍ଭୁତଇ ।

କରପଦ୍ମ ଯୋଡ଼ି ସେ ବୋଲଇ କଙ୍କାପୁଣୀ
ଧୂମଲୋଚନକୁ ମୁ ଗିଳିବି ଏହିକ୍ଷଣି ।
ଚାମପୁଣୀ ବୋଇଲା ଯେ ଗିଳିବି ମୁହିଁ ରଥ
ପ୍ରତାପ୍ୟାଂ କରଣ ଦୁହେଂ ଧାଇଂଲେ ଶୂନ୍ୟପଥ ॥
ଦେଖି ମହିଷାଂସୁର ବର୍ଷିଲାକ ବାଣ
ସମସ୍ତ ପଶିଲା କଙ୍କା ରାକ୍ଷସୀ ତୁଣ୍ଡେଣ । ୪୧୨୦
ଆହୋ ଅସୁର ଶସ୍ତ୍ରକୁ ନାହିଂ ତାହାଙ୍କର ଭୀତ
ଧୂମଲୋଚନକୁ ଯାଇଂ ଗିଳିଲେ ତତକ୍ଷଣାନ୍ତ ।
ତୁରଙ୍ଗେଣ ଗିଳିଲା ଯାଇଂ ସଙ୍ଗେକେତୁ ବିମାନ
ଭୟେ ମହିଷାଂସୁର ଯେ ହୋଇଲା ଅନ୍ତର୍ଦ୍ଧାନ ।
ଦିବ୍ୟ ଚକ୍ଷୁ ଯୋଗେ ଦେଖିଲେ ଦେବୀ ଦୁର୍ଗେ
ମହିଷାସୁର ଦାନବ ରହିଅଛି ଶୂନ୍ୟ ସ୍ୱର୍ଗେ ।
ଅହୋ ଖେଚରୀ ବିବାନୁ ଯେ ଉତ୍ତର ମହାମାଏ
କେଶରୀ ବିମାନେ ବେଗେ କଲେକ ବିଜଏ ।
ଆକାଶେ ଗମଇ ସେ ଗଜରିପୁ ମହାବଳା
ମହିଷାଂସୁର ଦାନବକୁ ଦେବୀ କଲେକ କଟାଳ ॥
ଦେଖି କୋପାନଳା ସେ ବଜ୍ରସିଂଘର ନାଥ
କୋପେଣ ପେଷିଲା ସେ ସହସ୍ରଧାର ଶକତ ।
ଅମୋଘ ଶରେ ଯେ ମାଇଲେ ମହାମାଇ
ଦୁଇ ଶହସ୍ର ଯେ ହୋଇଲେ ଅନ୍ତର୍ଧାଇ ।
ପୁଣ ଶହସ୍ର ଯେ ପେଷିଲେ ମହାବଳୀ
ଧାଇଂଣ ପିଟିଲା ଗଦା ସୂର୍ଯ୍ୟବଳୀ !
ଦୁର୍ଗା ମାଇଲେ ଯେ ଗଦା ମୁଦ୍ଗର
ବେନି ଶର ପଡ଼ି ଯେ ହୋଇଲେ ଶତେ ଚୂର ।
ଗୃକୁନ୍ଦା ଶରେକ ଯେ ମାଇଲେ ଦତ୍ୟମଣି
ଭୁ ଦ୍ରାଶନର ତାହା ନିବାରଲେ ଗୋସାମଣି । ୪୧୩୦
କୋପେଣ ମହିଷାଂସୁର ଯେ କାଳ ଡଣ୍ଡ ପେଷି
ମହିଷାଂସୁର ଧନୁ ନୋଣ୍ଡ ପକାଇଲେ କାଟି ।
ପୁଣ ବାରୁଣା ଶରେକ ଯେ ପେଷିଲେ ଗୋସାମଣି
ମହିଷାଂସୁର ଗଦା ସଙ୍ଗ ଯେ ପକାଇଲେ ହାଣି ।
ଧନୁ ନୋଣ ଛେଦନ୍ତେ ସେ କପିଲ ସିଂଘର ବଳା
ମହା ମତ୍ତ ମଇଂଷି ଏକ ହୋଇଲା ସେ ଅନର୍ଗଳା ।

ଘୃତ ଚରଣ ଘୋଷିଲ ସେ ଜମ୍ବୋଦ୍ୱୀପର ପୃଥ୍ୱୀ
ମୁଣ୍ଡ ବେନି ସିଙ୍ଘ ଲାଗିଲା ଗଗନ ଗଡ଼ ।
ଶୀଘ୍ରରେ ଘୋଷିଲାକ ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣ ଚୃଗଦାଗ
ଏକ ଶୀଘ୍ରର ସେ ଘୋଷିଲ ଗୃଗ ସ୍ୱର୍ଗ ।
ଆହେ। ପରୀକ୍ଷ ଅନେକ ରତ୍ନ ଆଭରଣ ସେ ମଇଂଷି ସିଙ୍ଘର କାଏ
ପ୍ରତକ୍ଷେ ଦଶିଲ ସେ ଉଦଏ ଗିରି ପ୍ରାଏ ।
ସିଙ୍ଘେଣ ଭାଙ୍ଗିତ ଲୋଡ଼ଇ କଡ଼କଡ଼
ଢଳ ମନ୍ଦା ପ୍ରାଏକ ସେ ଦଶଇ ବସୁମତୀ ।
ମହିଷାସୁର ରୂପ ଦେଖି ଦୁର୍ଗାଙ୍କୁ ବୋଇଲେ
ଉପରକୁ ନ ଥିଲେରେ ତଳକୁ ନ ଥିଲେ ।
ପଞ୍ଚଶତ ଭୁଜେ ଧଇଲେ ଦେବୀ ଧନୁ
ନାରାଚ ପୂରାଇ ସେ ବିନ୍ଧିଲେ ଗଗନୁ ।
ବିସ୍ମ ବ୍ୟାପିତ ଦେବୀ ସହସ୍ରେକ ଭୁଜ
ମହିଷାଂସୁର ଉପରକୁ ଦେବୀ ବିନ୍ଧିଲେ ନାରାଚ । ୪୧୦୭
ଅବିଚ୍ଛନେ ନାରାଚ ହୁଅନ୍ତେଣ ବୃଷ୍ଟି
ମହିଷାଂସୁର ବଜ୍ର ଛଉଂଶରେ ପଡ଼ି ନ ଫୁଟି ।
ବିନ୍ଧଣ ମହାମାଇ ହୋଇଲେ ବିମୁଖ
ଦାନବ ଦେହରେ ନ ଭେଦଇ ଶର ତୀକ୍ଷ୍ଣ ।
ଏକ ଧନୁ ଏକ ଲକ୍ଷେକ ଶର ବିନ୍ଧି
ଶୂନ୍ୟ ଭୁବନ ଆଦି କରି ମେଖଳା ଗିରି ଭେଦି ।
ଯେସନେକେ ନଷ୍ଟଲେ ରହିଅଛି ମେରୁ
ବେଳକୁବେଳ ତେଜ ବଢ଼ାଇ ଅଧିକ ମହାମେରୁ ।
ସ୍ୱଗେଶ ଗୋସାମଣି ଯେ ଦେବ ସହସ୍ର କଲେ
ପାଣି ପ୍ରଶୁ ପରଘ ହାଦେ ସେ ପେଷିଲେ ।
ଆହୋ ପରୀକ୍ଷ ରାଜା ସହସ୍ର ମାନ ଯେ ଷେଷନ୍ତ କାନ୍ତାଙ୍ଗ
କପୋତଲ ପଡ଼ି ସହସ୍ର ମାନେ ହୋଅନ୍ତି ତେଜ ହାନି ।
ମହିଷାସୁର ଶରୀରେ ଅଭେଦ କପଟ ସେହ୍ନା
ଦେବ ସହସ୍ର ମାନେ ପଡ଼ି ହେଉଛନ୍ତି ଚୂନା ।
ନାରାଚକୁ ଭଏ ନକରି ସେ ମହିଷାଂସୁର ଧାମଇଂ
ଦୁର୍ଗାର ତ୍ରିମୁରେ ସେ ଜୁଗୁଟ ବିକମଇଂ ।
ମୁଖ ରବ କରି ସେ ଧାମଇଂ ଅତି ବେଗେଂ
ଦୁର୍ଗାର ବାହାନ ସିଂହକୁ ମାଇଲା ନେଇ ସିଙ୍ଗେ ।

ଦେଖିଣ ଗର୍ଜଇ ସେ କେଶରୀ ମହାବଳ
ଦୁର୍ଗା ବୋଇଲେ ରେ କେଶରୀ ତୁ ସମ୍ଭାଳ । ୪୧୫୦ ।
ମୁହିଂ ଯେ ବ୍ରତ କରିଅଛୁ ମାରିବ ମହିଂଷାକୁ
ମୋହୋ ହାଥେ ସେ ମାରିବ ଏହାକୁ ।
ଆହୋ ଦୁର୍ଗାର ବଚନେ ଶାନ୍ତ ହୋଇଲା କେଶରୀ
ପୁଣ ପୁଣ ମହିଷାସୁର କାୟା ଯେ ବିସ୍ତାରି ।
କୋପେଣ ଦୁର୍ଗା ଯେ ଲୁହାର ଗଦା ଘେନ
ମହିଷାସୁର ଉପରେ ପିଟିଲେ କାତ୍ୟାୟନୀ ।
ତ୍ରିହସ୍ର ଭୁଲବନ୍ତେ କମ୍ପଇ ବସୁମତୀ
ଭୁଲାଇଂ ମହାମାଏ ପ୍ରହାର କଲେ ଧାଇ ।
ଗଦା ବେନି ପଡ଼ିଲା ସେ ମହିଷାସୁର ବକ୍ଷସ୍ଥଳେ
ଭାଜିଣ ଗଦା ବେନି ହୋଇଲା ନବସ୍ଥଳେ ।
ମହିଷାସୁର ଉପରେ ସେ ପଡିଣ ଗଦା ବେନି
ଝଣ ଝଣିତ ପରି ହୋଇ ସେ ଉଠିଲା ବହ୍ନି ।
ଲୁହାର ଗଦା ଯହୁଂ ହୋଇଲା ଭଗ୍ନନଷ୍ଟ
ତ୍ରିଶୂଳ ଘେନ ପିଟିଲେ ଜଗତମାତା ।
ପୁଣ ଦାନବ ସେ କୋପେଣ ଧାଉଂଅଛି
ଶୂଲ ଶକତି ଖଡ଼ଗେ ସେ ନୋହିଲା ଛାଟ କିଛି ।
ପୁଣି ହିଂ ପିଟିଲେ ଦୁର୍ଗେ ବଜ୍ର ମୁଦ୍ଗର
ମହିଷାସୁର ଅଙ୍ଗେ ପଡ଼ିଣ ହୋଇଲା ଶତେଚୂର ।
କୋପେଣ ବୁଲାଇଲେ ଦେବୀ ଧୂର୍ଯ୍ୟା ଗଦାବଳି
ମଏଂଷାସୁର ଉପରେ ପ୍ରହାର କଲେ ତୋଳି । ୪୧୬୦ ।
ଆହୋ ପଶ୍ଚାନ୍ତ ଯେବଣ ଗଦାସ୍ତ୍ରେ ନାଶଗଲା ଅର୍କନାମେ ଦଇତ
ତହା ଚୂର ହୋଇଲା ସେ ମଏଂଷାସୁର ମାଥ ।
ପୁଣ ପ୍ରହାର କଲେ ନୀଳାମ୍ବର ପରିଘ
ସେହି ଚୂର ହୋଇଲା ମଏଂଷାସୁର ସିଙ୍ଗ ।
ବିନ୍ଧନ୍ତେ ଶହସ୍ର ଯହୁଂ ନ ଭେଦିଲା କାଏ
ଦେବ ଶହସ୍ର ଚୂର ଗଲା ପିଟନ୍ତେଣ ମହାମାଏ ।
ଏ ଶହସ୍ର ପଡ଼ନ୍ତେ ମଏଂଷାସୁର କୋପାନଳ
ଦେଖିଲେ ଦେଖିଲେ ତାହାର ତେଜ ଅନର୍ଗଳ ।
ଅଷ୍ଟାଙ୍ଗ ଦେବୀ ସେ ହୋଇଲେ କୋପାନଳ
କୋଦଣ୍ଡ ଧନୁରେ ବସାଇଲେ ଶର ମହାକାଳ ।

ପୂର୍ବଇ କରକୁ ଆଜ୍ଞାଂ ଦେଲେ ଗୋସାମଣି
ତୁ ଯାଇଂ ମହିଷାସୁର କନ୍ଧ ପକା ହାଣି ।
ଆହୋ ପରୀକ୍ଷ ଅନିବାରଣ ଶର ଅପାଲଟେକ ଅଟଇ
ଯାହାର ନାମ ଧରି ପେଷଇ ତାହାର ଶିର ଅବଶ୍ୟ କାଟଇ ।
ମନ୍ଦର ତୁଲେ ଯେବଣ ମହିଷାସୁର ଗ୍ରୀବ
ମହାକାଳ ବାଣ ହୋଇଲା ମେରୁ ତୁଲ୍ୟ ପ୍ରାଏ ।
ଶ୍ରୀକରେ ବଜ୍ରାବଳୀ ନବକଳସୀ କୋଠାର
କମ୍ପିତ ପ୍ରାଏ ମଣଇ ବ୍ରହ୍ମା ବିଷ୍ଣୁ ମହେଶ୍ୱର ।
ପ୍ରଳୟାନ୍ତକ ଶର ଯେ କଳିର୍କ ଅବତାର
ଯେସଣେ ଦଗ୍ଧ ହୋଅଇ ସଚରାଚର ମହୀଧର । ୪୧୭୦ ।

ଅହୋ ଦୁର୍ଗାର ଆଜ୍ଞା ପାଇ ସେ ଅସ୍ତ୍ର ମହାକାଳ
ମହିଷାସୁର ଉପରକୁ ଖେପିଲା କରବାଳ ।
ଘୋର ରୂପ ଦେଖି ସେ ଧାଇଂଲା ମହିଷା
ବେନି ଶିଙ୍ଗକୁ ମାଇଲା ସେ ଜୀବନକୁ ନିରାଶା ।
ଶିଙ୍ଗେ ମାଇଲା ସେ ଦାନବ ମହାବଳୀ
ବାମ ଭୁଜେ ମହାକାଳ ବାଣ ଧଇଲେକ ଟେକି ।
ଆହୋ ପରୀକ୍ଷ ମହାକାଳ ବାଣ ଧରନ୍ତେ ଧାଇଂଲେ ଦେବୀ ଦୁର୍ଗେ
ଅସୁରକୁ କଟାର ଯେନି ମାଇଲେ ଦେବୀ ବେଗେ ।
କଟାର ପଡ଼ିଲା ସେ ମହିଷାସୁର କନ୍ଧ
ବେନି ଖଣ୍ଡ ହୋଇଂ ସେ ପଡ଼ିଲେ କୋବନ୍ଧ ।
ମନ୍ଦର ଗିରି ପ୍ରାଏକ ହୋଇଂ ମହିଷାସୁର ପଡ଼ଇ
ବ୍ରହ୍ମାଣ୍ଡ କମ୍ପିଲା ସେ ପଡ଼ନ୍ତେଣ ତାହାରଇ
ଅହୋ ପରୀକ୍ଷ ଦେଖି ଆନନ୍ଦ ହୋଇଲେ ବୃନ୍ଦାରକେ
ସାଧୁ ସାଧୁ ବଚନ ସେ କଲେ ଦେବ ଲୋକେ ।
ଆକାଶୁଂ କଲ୍ୟେ ହୋଇଲେକ ବୃଷ୍ଟି
ବାଞ୍ଛା ସମାପତ ପୂରେଇଲେ ଅରିଷ୍ଟି ।
ଅହୋ ପରୀକ୍ଷ ଛେଦନ ଯତ୍ନୁଂ କଲେ ମହାମାଏ
ଗର୍ଭ ଭିତରୁ ସେ ବିକାଶିଲା ନିଜ କାଏ ।
ବାଳ ଅର୍କ ପ୍ରାଏ ମହିଷାସୁର ନିଜ ମୂର୍ତ୍ତି
ବାମ କରେ ପରଘ ଡାହାଣ କରେ କାତି । ୪୧୮୦ ।

ନିଜ ରୂପ ମହିଷା ବିକାଶିଲା ହାଦେ
ତ୍ରିଶୂଳ ଯେଜଣ ମାଇଲେ ଦେବୀ ହୃଦେ ।

ପୁଣି ଦେବୀ ଗୃପିଲେ ମହାବଳେ
ବିସ୍ତୁ ରୂପ ବିକାଶି ବସିଲେ ବକ୍ଷସ୍ଥଳେ ।
ମହିଷାସୁର ଉପରେ ସେ ବେନି ପାଦ ଦେଇଁ
ଡାହାଣ ପାଦ ଗଣ୍ଡସ୍ଥଳେ ମାଡ଼ିଲେ ନଠାଇଁ ।
ଆଙ୍କୁକ୍ଷିଣ ଶୂଳ ମାଇଲେ ନାରାୟଣୀ
ଊର୍ଦ୍ଧ ମୁଖେ ଡାକ ଦେଲେ ଦୁର୍ଗତ ତାରେଣୀ ।
ଆହୋ ପଞ୍ଚାକ୍ଷ ଦୁର୍ଗାର ଗୁଳେ ନବେ କୋଟି କାତ୍ୟାଙ୍ଗୀ
ଛପନ କୋଟି ପିଗ୍ଳୁସୁଣୀ ଚଉଷଠି ଯୋଗିନୀ ।
ନବ ମର୍ତ୍ତ୍ଧ ଶ୍ରୋହୋ ଜନ୍ମପଦ୍ମ ଚଣ୍ଡୀ
ଚଉଦ କୋଟି ଡାଙ୍କେଣୀ ଛପନ କୋଟି ଗ୍ରମୁଣ୍ଡୀ ।
ତ୍ରିପୁରା ଉଗ୍ରତାରା ଚଣ୍ଡୀ ଯେ କୋଠାଗ୍ରୀ
ଗୋଳମା ମାରକମା ଯମକାମା ମାହେଶ୍ବରୀ ।
କାଳୀ କଙ୍କାଳୀ ବେତାଳୀ ଭଇରବୀ
କଙ୍କସୁଣୀ ମୂଳେ ସାତ ସାଗର ଦେବୀ ।
ଅଠାର କୋଟି ରୁଦ୍ରାଏଣୀ ବ୍ରହ୍ମାଏଣୀ ବାବନ କୋଟି
ମହିଷା ଉପରେ ମାଡ଼ି ସେ ସର୍ଭେ ଉଠି ।
ନବ କୋଟି କାତ୍ୟାନୀ ଯେନ୍ନ କୋପାନଳେ
ଏତେ ଦେବୀ ମାଡ଼ି ବସିଲେ ବକ୍ଷସ୍ଥଳେ । ୪୧୯୦ ।
ଚଉଷଠି ଦେବୀ ଯେ ଧାଇଲେ ଶୂଳ ଗ୍ରୁପି
ବେନି ଭୁଜ ମାଡ଼ି ବସିଲେ ଶତେ ମର୍ତ୍ତ୍ଧ କାମରୂପୀ ।
ପାଞ୍ଚ ପଦ୍ମ ଡାକେଣୀ ମାଡ଼ିବସିଲେ ବେନି ଜାନୁ
ଶତେ ପିଗ୍ଳୁସୁଣୀ ମାଡ଼ି ବସିଲେ ତାର ତନୁ ।
ମହିଷାର ଶ୍ଚର ପାଦ ଧଇଲେ ଛପନ କୋଟି ଦେବୀ
ମୁଣ୍ଡ ମୋଡ଼ିଲେ ଚଉଦ କୋଟି ଭଇରବୀ ।
ଆହୋ ପଞ୍ଚାକ୍ଷ ତେତଣ କୋଟି ଦେବୀ ବାହାରେ ବସି ପିଠିରେ ମହିଷ ଭୁଞ୍ଜି
ସିଂହ ଦନ୍ତେ ଧଇଲା ବକ୍ଷସ୍ଥଳ କୁଞ୍ଚି ।
ଆହୋ ତକ୍ଷେକ ନାଗ ବେଢ଼ାଇଲା ଖତେପୁର
ବେନି ପାଟି ଗୃପିଲା ସେ ନାସିକା ଉପର ।
ବିଷ୍ଣୁ ରୂପ ଧରି ଦେବୀ ମହିଷା ଉପରେ ଗ୍ରୁପି
ତଦ୍ୟ ପି ମହିଷାସୁର ନ ରହଇ ବିସ୍ତୁ ବ୍ୟାପୀ ।
କୋପେଣ ମହିଷାସୁର ଦେହ ଦେଲା ଝିଙ୍କାଡ଼ି
ଛାଡ଼ିକ ଦେବୀମାନେ ବହୁତ ଦୂରେ ପଡ଼ି ।

ଅହୋ ପକ୍ଷୀଷ ପଦ୍ମଦ୍ୱୀପେ ପଡ଼ିଲେ ଲକ୍ଷେ କୋଟି ଦେବୀ
ଚନ୍ଦ୍ର ଦ୍ୱୀପେ ପଡ଼ିଲେ ଚଉଦ କୋଟି ଭଇରୋବୀ ।
କ୍ରୁଶଦ୍ୱୀପେ ପଡ଼ିଲେ ନବ ପଦ୍ମ ଚଣ୍ଡୀ
କରଞ୍ଜ ଦ୍ୱୀପେ ପଡ଼ିଲେ ତିନି ଶ କୋଟି ଗ୍ରାମଣ୍ଡୀ ।
ପଦ୍ମ ଦ୍ୱୀପେ ପଡ଼ିଲେ ଶତେ ପଦ୍ମ ଚିତ୍ରୁସଣୀ
କ୍ଷୀର ସମୁଦ୍ରେ ପଡ଼ିଲେ ଚଉଦ କୋଟି ରାକ୍ଷସଣୀ । ୪୨୦୦

ଆହୋ ଜମ୍ବୁ ଦ୍ୱୀପେ ପଡ଼ିଲେ ନବ କୋଟି କାନ୍ତ୍ରାଙ୍ଗ
ପଞ୍ଚେକ ଡାକେଣୀ ସେ ଚଉଷଠି କୋଟି ଯୋଗିନୀ ।
ବନସ୍ତେ ପଡ଼ିଲେ ତିନି ସାଗର ଦେବତା
ସେମାନେ ହୋଇଲେ ଯେ ବନ ଦେବତା ।
ବ୍ୟାଘ ଭଲ୍ଲୁକମାନେ ପଡ଼ିଲେ ବନସ୍ତେ
ସିଂହ ଯେଝା ଦୁର୍ଗା ମାନ ରହିଲେ ଏକାନ୍ତେ ।
ଯେବଣ ଦେବୀମାନେ ରହିଲେ ଯେବଣ ସ୍ଥାନେ
ଉଠି ନ ପାରିଲେ ସେ କର ଚରଣ ଭଗ୍ନେ ।
ଷଷ୍ଠୀ ଜାଣୀ କୁବ୍ଜା ଅପାରଗ କୁମ୍ଭା
ପଞ୍ଜର ଭଗନ ହୋଇ ଦଶନ୍ତ୍ର ବିରୂପା ।
ଯେ ଯେଉଁଠାରେ ପଡ଼ିଲେ ହୋ ପକ୍ଷୀଷ ରାଜା
ସବୁ ପାଷାଣ ହୋଇ ଘେନିଲେ ତହିଂ ପୂଜା ।

ଆହୋ ପକ୍ଷୀଷ ଦେବୀମାନେ ଯହୁଁ ଉଠିଲେ ଗଗନେ
ସିଂହକୁ ଯେଝା ଦୁର୍ଗା ରହିଲେ ମାଝା ଶୂନ୍ୟେ ।
ତ୍ରିଶୂଳ ମାତ୍ର ରହିଅଛନ୍ତି କାତ୍ୟାୟନୀ
ଭ୍ରମଇ ମହିଂଷାସୁର ନବ ଖଣ୍ଡ ମେଦିନୀ ।
ଆହୋ ପୃଥିବୀର ମଧ୍ୟେ ନ ପାରନ୍ତି ରହିଂ
ସମୋଦ୍ର ଭିତରେ ସେ ହୋଇଲେ ଜଳଶାହି ।
ମହାର୍ଣ୍ଣବ ଜଳେ ସେ ବଡ଼ବାନଳେ ପଡ଼ି
ଅଗାଧ ଗମ୍ଭୀର ଭିତରେଣ ଯେ ବୁଡ଼ି । ୪୨୧୦

ଆହୋ ପକ୍ଷୀଷ ନ ଯାଇ ଜୀବନ ସେ ବୁଡ଼ଇ ବିକଳେ
ଦୁର୍ଗା ଦେଖିହିଂ ବୁଡ଼ିଲେ ମହାର୍ଣ୍ଣବ ଜଳେ ।
ଶୂନ୍ୟେ ମାତ୍ର ବକ୍ଷସ୍ଥଳେ ଅଛନ୍ତି ଦେବୀ ଧରି
ଗୁଡ଼ିଲେ କୋଟି କଳ୍ପ ସେ ହୋଇବ ଦଇତାରି ।
ଯେବେ ନ ମରିବ ସେ ଦୁର୍ଗାର ହାଥେ
ତ୍ରୈଲୋକ୍ୟ ନାଶ ସେ ହୋଇବ ଦଇତେ ।

ଆଉର ଜଙ୍ଗମ କୀଟ ପତଙ୍ଗ ନ ରହିବ କିଛି
ସଚରାଚର ପୃଥ୍ୱୀ ଯିବ ସବୁ ଭକ୍ଷି ।
ଆହୋ ପରୀକ୍ଷ ଆକାଶେ ବାଣୀ ଦିଅନ୍ତି ସେ ସ୍ୱର୍ଗେ
ଅସୁରକଇ ନ ଯୁଝ ଗୋ ଗାଠେ ଗୃପ ଦୁଗେ ।
ଏ ଯାନ୍ତ୍ର ଫିଟିଲେ ଗୋ ହୋଇବ ନିର୍ଜୀବ
ଆମ୍ଭନ୍ତ ରକ୍ଷା ଗୋ କରିବା ମହାଦେବୀ ।
ଆହୋ ପରୀକ୍ଷ ସେ ଅନେକ ବଇକୁଳ୍ୟ ହୋଅନ୍ତେ ଦେବତାଏ
ବିମୁଖ ହୋଇ ଯୁଝି ଲେଉଟନ୍ତି ଅଭଏ ।
ପୁଣ ବୁଡ଼ଇ ବୀର ପୁଣ ଉପୁଚଆଇ ମହାଜଳେ
ଶହସ୍ରେକ ମାଡ଼ି ଅଛନ୍ତି ବକ୍ଷ ସ୍ଥଳେ ।
ବିମୁଖ ହୋଇ ଯେ ଭଲନ୍ତି ବୈଷ୍ଣବୀ
ନାଶ କରୁ ଦେବତାନ୍ତ ଯୁଝୁ ଏହାକୁ ଦେବୀ ।
ଦୁଗାର ମନେ ଯେ ଭଲନ୍ତି ବିକୃତ
ହୃଦରୁ ବାହାର କଲେ ସେ ଅଦ୍ଭୁତ ମୂରତି । ୪୨୨୦
ଚତୁର୍ଭୁଜ ଚନ୍ଦ୍ରବଦନ କୁଙ୍କୁମ ବଦନ
ରକତ ବସ୍ତ୍ର ପରିହରଣ ପଦ୍ମ ଯେ ଆସନ ।
ବେନି କରେ ଅଭଏ ଦାତା ବେନି ପାଣି
ଦେଖିଣ ପରିରଲେ ଦୁଗତି ତାରେଣୀ ।
ମୁହିଂ ତ ଦାନବକୁ ନ ପାରିଇ ମାରି
ଆଗାଧ ଜଳେ ପଡ଼ିଲି ସେ ଜଳ ଆଧାରି ।
ତୁ ଦେବୀ ଅଙ୍ଗୁଟେ ଅଇଲୁ ଗୋ କାହିଂ
ମୁହିଂ ହାଦେ ଜାତ ହୋଇଲୁ ତବ ଦେଖିଂ ।
ଏ ହାଦେ ବଳବନ୍ତା ଅଭଏ ଦଇତାରି
ଏ ଦାନେବ ଯୁରକୁ କପା ବିମନ ହୃଦେ ଧରି ।
ଅଥବା ଯଦ୍ୟପି ତୁ ଯୁଝିବୁ ଯେହାକୁ
କ୍ଷଣେକେ ଭକ୍ଷିବ ଏ ଦେବତାମାନଙ୍କୁ ।
ମାଗୋ ତୋହୋର ମନେ ଅନ୍ତର ଧରନ୍ତେ
ମୁହିଂ ତାହା ଜାଣିଲି ଗୋ ତୋହୋର ହୃଦଗତେ ।
ଦୁଗାଏ ବୋଇଲେ ଉତପତ୍ତି ହୋଇଲୁ ମୋହୋର ହୃଦରୁ
ମାରିବ ମଏଷ ଅସୁର ଯେ ତୋହୋର ପ୍ରସାଦରୁ ।
ଦୁଗାର ବଚନ ସେ ଶୁଣିଣ ଅନନ୍ତ ନାଗ
ଜଳ ଫାଶ ଯେନ ସେ ବାନ୍ଧିଲେ ଦଇତାରି ।

କ୍ଷୀରୋଦରୁଂ ବାହାର ହୋଇଂ ଓଟାରିଲା ଫାଶ
ଜଳର ଭିତରୁ ସେ ବାହାରିଲା ରାକ୍ଷସ । ୪୨୩•
ବାରାଣସୀର କୂଳେ କାଶୀ ନାମେ ଦେଶ
ମହେଷାଂସୁରକଇ ଗୃପି ରହିଲେ ଉଦେଶ ।
ଆହୋ ପରୀକ୍ଷିତ ମଏଷଂା ନ ରହଇ ଆକାଶକୁ ଝେଦଇ
ସେ ପଦ ଆସନୀ କହିଲେ ମୃତ୍ୟୁ ଭେଦଇ ।
ଶୁଣସି ମାତା ଗୋ ମଏଷାଂସୁରର ପୂର୍ବ କଥା
ସେ ଶିବ ଗର୍ଭ୍ଭଂ ସତ୍ୟ ଯୁଗେ ତୋଷିଲା ବ୍ରହ୍ମବେତ୍ତା ।
ଲକ୍ଷେ ଷାଠିଏ ସହସ୍ର ବରଷ କଲା ଘୋର ତପ
ପ୍ରସନେଣ ପିତାମହ ବର ଦେଲେ ତାହାଂର ଅନରୂପ ।
ଦକ୍ଷ ଲୋକେ ଅବଧ ମାଗିଲା ଏହୁ ବରେ
ବିଷ୍ଣୁ ସମାନ୍ୟ ମୋତେ ନୋହିବାକ ସମରେ ।
ମନ୍ତ୍ରୀ କହିଲାକ ମଏଂଷାସୁର ଆଗ
ସ୍ତ୍ରିଶ୍ରୀଙ୍କର ଯୋଗେ ତୋତେ ହୋଇବ ମୃତ୍ୟୁ ଯୋଗ ।
ମଏଷାଂସୁର ବୋଇଲା ତୋହୋସ୍ତୁର ପାମର ବୁଦ୍ଧି
ଏତେକ ପ୍ରଭୁଙ୍କୁ ମାଗିବ ସ୍ତ୍ରିଶ୍ରୀ ସ୍ତୁର ଅବଧି ।
ସ୍ତ୍ରିଶ୍ରୀ ସ୍ତୁର ପାମେଷ୍ଠି ସ୍ୱାନ ଜନ୍ମ କାଏ
ତାହା ସ୍ତୁରକୁ କିସ ମୋର ଭଏ ।
ବିରୂପାକ୍ଷ ମନ୍ତ୍ରୀ କହଇ ହାଦେ ଦେବତାଙ୍କର ଅଛଇ ଏମନ୍ତଡ଼ିଆଣ
ସ୍ତ୍ରିଶ୍ରୀ ରୂପେ ଅବତାରନ୍ତି ଦେବ ନାରାଏଣ ।
ଅନେକ ମନ୍ତ୍ରୀ ବଚନେ ମଏଷାଂକୁ ଲାଗିଲା ବଡ ଚନ୍ତା
ବୋଇଲା ସ୍ୱାମୀ ମୋତେ କଥାଏ ଦେବ ବ୍ରହ୍ମବେତ୍ତା । ୪୨୪•
ପିତାଏ ବୋଇଲେ ତୁ ମାଗିବୁନ୍ତି ଯାହା
ଆଦ୍ୟନ୍ତ ଅସ୍ତ୍ର ଯାଏ ମୁଂ ଦେଉଂଥିବ ତାହା ।
ସ୍ୱାମୀ ଯେବଣ ସ୍ତ୍ରିଶ୍ରୀ ଜିଣିମ ସମରେ ମୋତେ
ମୋହ ବଶ୍ୟ ହେବ ତାହାର ଭ୍ରମ ଦେଖନ୍ତେ ।
ମାତ ଗୋ ଏସନେକ ବର ବ୍ରହ୍ମାଙ୍କୁ ମାଗିଅଛୁ ପୂର୍ବେ
ତୁ ତାହା ବଧ କରି ଲୋଡୁ କେମନ୍ତେ ଏବେ ।
ଅଥବା ତୋର ନ ଦେଖିଲେ ଭବ ମାର୍ଗ
କୋଟିଏ ଯୁଗେଂ ଦାନେବକୁ ନାହିଂନ୍ତି ବିଯୋଗ ।
ମାତ ଗୋ ଏ ରୂପ ସ୍ତ୍ରୀଡ଼ ତୁ ହୁଅ ଉଲଗ୍ନ ଶାସ୍ତ୍ରୀ
ମଏଷାଂ ବଶ୍ୟ ହୋଉ ତୋର ଭବ ମୁଖ ଚାହିଂ ।

ଆହୋ ପରୀକ୍ଷ ଅଦ୍ଭୁତେ ଦେବସ୍ତ୍ରିଙ୍କ କହିଲେକ ବାଣୀ
ଦୁର୍ଗା ବିସ୍ମରିଲେ ତାହାର ବାକ୍ୟ ଶୁଣି ।
ଆହୋ ସୁରଲୋକ ନରଲୋକ ନାଗଲୋକ ଦେଖନ୍ତେ
ଉଲଗ୍ନ ସାଙ୍ଗ ମୁ ହୋଇବି କେମନ୍ତେ ।
ତୁ ଯେବେ ମାତ ଏଥିକୁ କରୁ ଚିନ୍ତା
ସକଳ ତ୍ରୈଲୋକ୍ୟ ଆବର ହୋଇଂ କ ରକ୍ଷା ।
ମାଗୋ ସତ୍ୟ ତ୍ରେତୟା ଦ୍ୱାପର ଯୁଗର କଥା
ମଏଷାଂ ବଧ ନୋହିଇ ଗୋ ଜାଣଇ ମୁହିଂ ସର୍ବଥା ।
ଆକାଶ ମାର୍ଗେ ଦେବତାଏ ଦେଲେ ଶୂନ୍ୟ ବାଣୀ
ଏ କଥା ସତ୍ୟ ଗୋ ଦୁର୍ଗତିତାରେଣୀ । ୪୨୫୦

ଜୟ ତୁ କାତ୍ୟାନୀ ଗୋ ସର୍ବ ମଙ୍ଗଳା ରୂପ
ସଦା ସର୍ବ ମଙ୍ଗଳା ରୂପ ସଦଏ ସ୍ୱରୂପ ।
ଶରଣ ଜନ ତାରଣ କଲା ଯାହାର ବୁଦ୍ଧି
ଯାହାର ନାମ ମାତ୍ରକେ ତୁଟଇ ସର୍ବ ବ୍ୟାଧି ।
ସର୍ବ ସିଦ୍ଧ ମାତ କାଲେ ଉତପତ୍ତି ଯାହାର ହେଲୁଁ
ଦୁର୍ଗାକୁ ତାରିଲେ ଯେ ଭୁବନ ଆପାଦ ଜଳୁଂ ।
ଏକ ଲୟେ କର ଶୁଣ ହେ ସର୍ବମଙ୍ଗଳାଙ୍କ ଜନ୍ମ କଥା
ଅଗାଧ ଦୁଃଖ ଖଣ୍ଡଇ ସେ ମାତା ।
ଜାତ ମଧ୍ୟେ ଅନ୍ତେ ଯେ ଅବସାନ ଏ ମୂଳ
ପ୍ରସନେ ଦାନୀ ଗୋ ଦ୍ରଶନେ ସୁଫଳ ।
ସର୍ବ ମଙ୍ଗଳା ସୁମର ନରେ ପ୍ରସର ହେଉ ବୁଦ୍ଧି
ସର୍ବ ମଙ୍ଗଳା ସୁମର ନରେ ଖଣ୍ଡଣ ହୋଉ ବ୍ୟାଧି ।
ଶ୍ରୀସର୍ବ ମଙ୍ଗଳା ଚରଣେ ଆନନ୍ଦେ
ଶୂଦ୍ରମୁନି ପଦ ଏକା ମୋହୋର ସର୍ବ ମଙ୍ଗଳା ପ୍ରସାଦେ ।
ଶୁଣ ହୋ ପରୀକ୍ଷ ବଦନ୍ତି ଶୁକବ୍ରହ୍ମା
ଦୁର୍ଗପଦ ମଏଷାଂସୁରର ହାଦେ ଏସନେକ ମହିମା ।
ଯେଉଣ ଉପାଏ ସେ କହିଲେ ସର୍ବ ମଙ୍ଗଳେ
ଦୁର୍ଗା ତରିଲେ ଯେ ମହାର୍ଣ୍ଣବ ଜଳେ ।
ସିନ୍ଧୁ ଉତ୍ତର ତଟେ ତଣ୍ଡୀକୁଳ ପାଇଂ
ମଏଷାଂସୁର ନ ରହିଇ ପବନୁ ବେଗ ଯାଇ । ୩୨୬୦

ସର୍ବ ମଙ୍ଗଳା ବୋଇଲେ ଗୋ ବିଳମ୍ବ ନ କର
ଏ ରୂପ ଗୁଞ୍ଜି ଉଭଳିତ ରୂପ ଧର ।

ଦୁର୍ଗା ବୋଇଲେ ତ୍ରୈଲୋକେ ଅସମ୍ଭବ କଥା
ଅଦୃଷ୍ଟି ଅସୁର ପାତେକ କେମନ୍ତେ କରି ମାରିବା ପାମର ଦଇତା ।
ନ ମରଇ କି ନା ଏ ପାମର ଦଇତ ଚଣ୍ଡାଳ
ନ ଥାନ୍ତୁ କି ନା ଏ ଦେବତାଏ ସ୍ୱର୍ଗ ମଣ୍ଡଳ ।
ନ ରହଇ କି ନା ଏ ନବ ଦୀପା ପୃଥି
ତ୍ରୈଲୋକ୍ୟ ଦୂର ହୋଇବ ମୋହର ଶକତ ।
ଦୁର୍ଗାର କାରଣ ପ୍ରତଉତ୍ତର ଶୁଣି
ଆକାଶ ବାଣୀ ପଡ଼ିଲ ଗୋ ଚଣ୍ଡ ଠାକୁରାଣୀ ।
ସର୍ବ ମଙ୍ଗଳାଏ ବୋଇଲେ ଯେତେହୁଁକ କୃତ୍ୟ ନ କରନ୍ତୁ ଆଦ୍ୟହିଁ
କାରଣ ହୋଇଂ ଦେବେ ଜଳଶାୟୀ ହୁଅନ୍ତେ ଆସନ୍ତେ କପାଂ ତହିଁ ।
ଜନ୍ମ ହୋଇ ପ୍ରସରିଲୁ ସହସ୍ରେକ ଭୁଜ
ଉପର ହସ୍ତ କରି ତୋତେ ଶହସ୍ର ଦେଲେ ଦେବରାଜ ।
ପ୍ରତଗ୍ରହ କରି ଘେନିଲୁ ଦେବତାଙ୍କର ତହିଁ
ପାଷାଣ ବଚନ ତୋହୋର ହୋଇବାକ ସେହୁ ।
ମାଗୋ କାଷ୍ଟିନ୍ତେ ରହିଲେ ସ୍ୱର୍ଗେ ତୋହୋର ବିଶ୍ୱାସୁଂ
ପୁଣ ଅନେକ ଦୋଷ ଯେ ଏବେ ହୋଇବ ଭୂମିର ସକାଶୁଂ ।
ମାଗୋ ପୂର୍ବ ଗୁଡ଼ ପଶ୍ଚିମେ ଯେବେ ଉଦୟ ହୋଇବ କରତାର
ଦକ୍ଷିଣ ଭୂମି ଗୁଡ଼ ସିନ୍ଧୁ ଯଦ ମାଡ଼ିବ ଉତ୍ତର । ୪'୭୦ ।
ପର୍ବତ ଉପରେ ଯେବେ ଫୁଟିବ ନଳଣୀ
କଦାଚିତେ ଅନ୍ୟର ହେବ କି ମହନ୍ତଙ୍କର ବାଣୀ ।
ଅନେକ କଟାଳ ସେ ଦେବତାଙ୍କୁ କଲେ ଦଇତେ
ତେଣୁ ମହତ କରି ଆଗ୍ରେ କଲେ ତୋତେ ।
ମା ଗୋ ଗୁଡ଼ ମନ ଭ୍ରାନ୍ତ ଖଣ୍ଡ ଅପଚଏ
ଏତେ ବୋଲି ସର୍ବ ମଙ୍ଗଳା ପ୍ରଣପତ୍ୟ ଦୁର୍ଗାଙ୍କର ପାଏ ।
ଆହେ୍ୱା ପଙ୍କ୍ଷ କ୍ଷଣକ ହିଂ ବିଶ୍ରାମ ନାହିଂ ଯାତୁଧାନ
ଦଶ ସହସ୍ର ଯୋଜନ ଗଲାଣି ଫୁଟି କାମେକ ନାମେ ବନ ।
ତାରେଣୀ ନାମେଣ ବହଇ ଏକ ନଦୀ
ସର୍ବ ମଙ୍ଗଳା ସନମତ କରାଇଲେ କଉତୁକେ ସମାଧ ।
ଅନେକ କାରୁଣ୍ୟ ବଚନ ଶୁଣି ସେ ଦୁର୍ଗତତାରେଣୀ
ଗୃମଣ୍ଡା ରୂପ ଯେ ଧରିଲେ ଗୋସାମଣି ।
ବିବସନ ହୋଇଲେ ଦେବୀ କେଶ ମୁକୁଳ
କାଛଟାଏ ପିନ୍ଧିଲେ ଦେବୀ ଦଶଇ ଜାନୁ ଯୁଗଳ ।

ସ୍ତନମାନ ସମସ୍ତ ଯେ ହୋଇଲେକ ଦୃଶ
ଯଇଲେକକୁ ମହାଭଏ ଲଭିଲେକ ତ୍ରାସ ।
ଅହୋ ପକ୍ଷୀଷ ସନ୍ଦେହ ଦେଖି ମହେଷାଂସୁର ରହଇ
ପଞ୍ଚଭୂତ ଆତ୍ମା ଦେଖି ହୋଇଲାକ ମୋହ ।
ଦେବଙ୍କୁ ଦୁର୍ଲଭ ଯେବଣ ଭବ ସ୍ଥାନ
ତାହା ଦେଖିବାକୁ ମୁଁ ଯେ ହୋଇଲି ସର୍ଜନ । ୪୨୮୦ ।
ସମରେଣ ବଧ୍ୟ ଯେଣୁ ନୋହିଲ ମୋର କାଏ
ମହାକୂଟ ପାତଲି ସେ ସ୍ତ୍ରୀଙ୍କର ଉପାଏ ।
ଅଥବା ଏହା ଯେବେ ନ କରିବଇଂ ଇଚ୍ଛା
ଅବସର୍ଜନ କାଳ ହୋଇବକ ଆବର ରକ୍ଷା ।
ମଏଷାଂସୁର ବୋଇଲା ଏ ମୋହୋର ପଞ୍ଚୁ ଆତ୍ମା ପଞ୍ଚୁ ମନ
ତଲଏ ଯାକେ କ ବିଶ୍ରାମ କରିବ ଜାନୁଥନ ।
ଆହୋ ପକ୍ଷୀଷ ଆତ୍ମାକୁ ନବେଗି ମଏଷାଂସୁର ରହଇ
ଦିବ୍ୟ ମୋହନୀ ରୂପ ଦେଖି ମହିଷାସୁର ମୋହ ହୁଅଇ ।
ନଷ୍ଟେଷ୍ଟେ ରହଇଂ ଦ୍ୱାର ତାରେଣୀ ନଦୀ କୂଳେ
ମାଡ଼ି ବସିଲେ ଦେବୀ ମହେଷାର ବକ୍ଷସ୍ଥଳେ ।
ଆହୋ ଊର୍ଦ୍ଧ୍ୱ ମୁଖ କରି ସେ ଗୃହ୍ନଂଲା ମହେଷାଂ
ସ୍ତ୍ରୀ ଲିଙ୍ଗ ଦେଖି ସେ ହୋଇଲା ନିଆଶା ।
ଆହୋ ପକ୍ଷୀଷ ଦୁର୍ଗା ଯେ ବେ ଇଲେ ଦେବୀଙ୍କ ମୁଖ ଗୃହ୍ନଂ
ତୋହୋର ପ୍ରାଏ ସବୁ ଚଣ୍ଡୀ ଦେଖିଲ ତ ନାହିଂ ।
ଅନେକ ଦେବୀ ମୁଂ କଲି ନାହିଂ କ ଜନ୍ମ
ତୁହି ସେ ଅଟୁ ନା ଦେବୀମାନଙ୍କର ଉତ୍ତମ ।
ସମସ୍ତ ସୁଲଭ ହୋଅଇନା ତୋହୋର ପ୍ରସାଦେ
ସର୍ବ ମଙ୍ଗଳା ନାମ ହୋଉ ତୁମ୍ଭର ହାଦେ ।
ଦେବଙ୍କ ଆପଦ ଖଣ୍ଡି ମୋହେର ଆପଦ କଲୁ ଯେଣୁ
ଏମନ୍ତେ ସକଳ ଜନଙ୍କର ହରିବୁ ଦୁର୍ଗତି । ୪୨୯୦ ।

ସମସ୍ତ ଜନେ ତୋତେ ଆରାଧନା କରନ୍ତୁ
ଅନେକ ଅରିଷ୍ଟି ଆପଦ ଖଣ୍ଡନ୍ତୁ ।
ଆକାଶେଣ ଅନେକ ବନୋଇଲେ ଦେବ ବ୍ରହ୍ମା
ତୋତେ ସର୍ବ ମଙ୍ଗଳା ନାମ ଦେଲେକ ଉତ୍ତମା ।
ଆହୋ ପକ୍ଷୀଷ ଅଚେଷ୍ଟ ହୋଇ ମହିଂ ଅସୁର ଗଲା ମୋହ
ଦୁର୍ଗାର ଭବ ଗୃହ୍ନଂ ବିସର୍ଜିଲା ଦେହ ।

ଦୁର୍ଗାଏ ବୋଇଲେ ଲୋ ରକ୍ତଗିରି ପର୍ବତ
ମହିଷାଂସୁରନୁ ମାଣ୍ଡି ଆମ୍ଭେ ବିଜେ କରିବା ଏଥ ।
ନାରାୟଣୀ ରୁଦ୍ରାଣୀ ଇନ୍ଦ୍ରାଣୀ ଭଇରବୀ
ବ୍ରହ୍ମାଣୀ ବାରାହୀ ଗୃଡକା ମାଧବୀ ।
କାଳୀ କଙ୍କାଳୀ ବେତାଳୀ ଉଗ୍ରତାରା
ସମାଧୀ ମାତଙ୍ଗୀ ଚଣ୍ଡିକା ତ୍ରିପୁରା ।
ବାମଚଣ୍ଡୀ ଜମଜ୍ଞାଇ ଶ୍ୟାମନ୍ତ ମାରକମା
କୋଠାଗ୍ନି ଅମ୍ବିକା ଏକ୍ଲେମା ଯେ ଗୋଲମା ।
ଭଣ୍ଟାଳେକ କାଳମା ରୁପା ବିରୂପା ଶ୍ୟାମା ସୁଭାନ୍ତ
ଏ ଛନଶାବଳୀ ବର୍ଷାଂବଳୀ ଅମାଛ ।
ପାଷେଣି ଷାରଙ୍ଗୀ ଚମ୍ପାଇ ରୂପାଈ
ଯମାଇ ବରୁଣାଇ ପିଚକାଇ ବାହ୍ମାଡ଼ାଇ ।
ଝୁଦାଈ ସଉରାଗୀ ସଉଡ଼ାଇ ଲେମୁଆ କେନ୍ଦୁଆଶୁଣୀ
ଅନ୍ଧାରି ଡାକେଣୀ ହାଥି ଯେ ବାସେନୀ । ୪୩୦୦ ।
ସାଧେବୀ ରୁଧି ଶାମୁକା ଶରବନ୍ଦା
ନୀଳା କମଳା ଯେ ଶୋଣେହା ମକୁନ୍ଦା ।
ଛିଗିଭା ମୁଣ୍ଡିତା ଜଗତାରା ନାଗନା ଖେପ
ମେଖଳା ମହାଖଳା ଘୋଣ୍ଟୀ ବନ୍ଦନା କାମରୂପ ।
ଚନ୍ଦମା ଯୁଆଳୀ ଆବର ତ୍ରିପୁରା
ଭାରେଣୀ ଧାରେ ଯାଉଆଳୀ ହିଙ୍ଗୁଳା ।
ଷ୍ଟୃରୁ ବ୍ରମଣ୍ଡୀ ବିକାଳ ଭଦ୍ରକାଳୀ
ଯକ୍ଷାର ସାଗରୀ ରୂପା ଜରକୁଳି ।
ସିଂହଳା ବରାହୀ ଅନନ୍ତାଇ ସାନ ଧ୍ୟାତେଶ୍ୱରୀ
ଏତେ ଦେବୀଙ୍କର ତୁଲେ ଅଇଲେ ଖର୍ବ ସ୍ବର ।
ଅହୋ ପର୍ଯ୍ୟନ୍ତ ଦେବୀମାନଙ୍କର ତୁଲେ ନବ କୋଟି କାତ୍ୟାୟନୀ
ପାଞ୍ଚ ପଦ୍ମ ପିରୁଷୁଣୀ ଚଉଷଠି ଯୋଗିନୀ ।
ଦୁର୍ଗା ଆଗ୍ୟା ଦେଲେ ସେ ଦେବୀ ମାନନ୍ତ ରାଇଂ
ଜେନାବନ୍ତ ନଗ୍ରକୁ ଲୋ ଧାଅଂ ବେଗ ହୋଇଂ ।
ଯେତେଣେ ଯେତେ ଦାନବ ଅଛନ୍ତି ପୁଣ ଆଦ୍ଧ କର
ସୁଖେ ବଳୀ ଭକ୍ଷ ଯାଅ ଅସୁର ଅସୁରୀ ।
ଏମନେକ ଆଗ୍ୟାଂ ଦେଲେ ଦେବୀ ଦୁର୍ଗେ
ଶେଣା ପକ୍ଷୀ ପ୍ରାୟେକ ଧାଇଂଲେ ଅତିବେଗେ ।

କୁଳବନ୍ତ ପାଟଣା ଯେ ଜେନାବନ୍ତ ନଗ୍ରି
ଚଉଡ ପୁର କରି ଯେ ବେଢ଼ିଲେ ମାହେଶ୍ୱରୀ । ୪୬୧୭ ।
ଯେ ଅବା ଥିଲେ ସେ ଅଶକତ ରାକ୍ଷସ
ନହେ ବଦାରି ସେ ଭକ୍ଷନ୍ତି ରକ୍ତ ମାଂସ ।
ଅସୁରନ୍ତ ସନ୍ଧତେ ସେ ଗିଳନ୍ତି ଗଳଗାଜି
ବାଳୁତ ପୁଅନ୍ତ ସେ ଖାନ୍ତି ସର୍ବଭଜି ।
ଆହୋ ପରୀକ୍ଷ ମେଦ ମେଦା ମାଂସ ଭକ୍ଷନ୍ତି ଦେଖି ମୂର୍ଚ୍ଛେ
ଜଣେ ହେଁ ଉଚ୍ଚୁରି ନ ପାରନ୍ତି ତାହାଙ୍କର ମୁଖେ ।
ଆହୋ ପରୀକ୍ଷ ଆଶ୍ୱିନ ମାହ ଅଷ୍ଟମୀର ରାତ୍ର
ଉତ୍ତରାଷାଢ଼ା ନକ୍ଷତ୍ର ଭୋଗ୍ୟ ସେହୁ ତଥି ।
ଯୁଗତେ ସେଦିନ ଅଟଇ ପଣ୍ଡିତ ବାରଇ
ରାତ୍ର ଅର୍ଦ୍ଧେ ମହିଂଷାସୁର ପ୍ରାଣ ଯେ ଭ୍ରଷ୍ଟଇ ।
ଅଷ୍ଟମୀ ଉତ୍ତାରେ ସେ ନବମୀ ପରବେଶ
ଲାଗିଲା ମହା ମାରୁ ନିଶି ହୋଇଲା ଅବଶେଷ ।
ଶୁଣ ହୋ ପରୀକ୍ଷ ବଦନ୍ତି ଶୁକ ବ୍ରହ୍ମା
ଚଣ୍ଡୀର ଯୁଧ୍ୟ ହାଦେ ଏସନେକ ମହିମା ।
ଅସଂଖ୍ୟ ଅଗୋଚର ଅପୂର୍ବ ଚରିତ
ଦେବଙ୍କୁ ଦୁଲଭ ଏ ସମର ଅପ୍ରମିତ ।
ଆଶିନ୍ୟ ମାସ ଶୁକଳ ପକ୍ଷ ଅଷ୍ଟମୀ ଦିନ ଟୋ ହୋଇଲେ ଉତପତ୍ତି
ନିଶାଅର୍ଦ୍ଧରେ ଦେବତାଏ ସେ କଲେ ଅନେକ ବହୁତ ସ୍ତୁତି ।
ସେହିଦିନ କେଶରୀ ଆରୋହେ
ରତ୍ନଗିରି ଶିଖରେ ସେ ବଜେ କଲେ ଦୁଢ଼େ । ୪୬୨୦ ।
ସେହିଦିନ ସେ ହୋଇଲା ସଂଗ୍ରାମ
ଶୁକଳା ଅଷ୍ଟମୀଯାଏ ମହାଶ୍ରମ ।
ନବମୀ ରାତ୍ରେ ଯେ ଅସୁର ଅସୁରୀ
କୁମାର କୁମାରୀ ଆଦି ଯେତେଥିଲେ ସେ ପୁର ଆଦିକରି ।
ନବମୀ ରାତ୍ରେ ଯେ ହୋଇଲା ମହାମାରୁ
ତେତେ କରି ମହାମେରୁ ସେ ହୋଇଲା ସଂସାରୁ
ଯେତେକ ଅସୁର କୁମାର କୁମାରୀ ଥିଲେ
ଯୋଗିନୀଙ୍କର ମୁଖରେ ସମସ୍ତ ପଡ଼ିଲେ ।
ସକଳ ବିନାଶ ହୋଇଲେ ଅବଶେଷ
ଦେବତା ଉଛବ ଯେ କଲେ ସ୍ୱର୍ଗବାସ ।

ଶ୍ରୀକରେ ଅର୍ଘ ଯେ ଦେଲେ ଦେବତାଏ
ବୋଇଲେ ଶାନ୍ତ ଗୋ ହୋଇବାକ ମହାମାଏ ।
ଆହୋ ସମସ୍ତ ଦେବତାଏ ମହା ଆନନ୍ଦେ
ବିନୟଭର ହୋଇଂ ସେବନ୍ତ ପଦ୍ମପାଦେ ।
ଦିବ୍ୟ ଅବତାର ହୋଇଂ ସେ ଅନେକ ବେଶନେ
ବହୁତ ବିନସ୍ତ ହୋଇଂ ସେ ବୃନ୍ଦାଅର୍କମାନେ ।
ଈଶ୍ୱରେ ବୋଇଲେ ତୁହି ସେ ମୋହୋର ଦିବ୍ୟ ଚକ୍ଷୁ
ମାରୁ ଅବା ତାରୁ ଅବା ଦୁର୍ଗା ସେ ମୋତେ ରଖୁ ।
ଆବର ସେ ଇଷ୍ଟ ଦେବତା ଅଛୁ ମୋର କାହିଁ
ମାରବୁ କି ତାରବୁ ଦୁର୍ଗା ତହୁଂ ଆନ ନାହିଂ ।
ଦୁର୍ଗାହିଂ ସେ ଧାତା ଦୁର୍ଗାହିଂ ସେ ବିଧାତା
ଦୁର୍ଗାହିଂ ସେ ପରମବ୍ରହ୍ମ ଆପ ତେଜ ବାୟୁ ଆକାଶ ଚନ୍ତା ।
ଦୁର୍ଗାହିଂ ସେ ଗ୍ୟାନ ଦୁର୍ଗାହିଂ ସେ ଧ୍ୟାନ
ଦୁର୍ଗାହିଂ ସେ ପରମ ତତ୍ତ୍ୱ ଧ୍ୟାନ ସାଧନ ।
ଦୁର୍ଗାହିଂ ସେ ସବୁ ସିଦ୍ଧି ଦୁର୍ଗାହିଂ ସେ ସାଧୁ
ଦୁର୍ଗାହିଂ ସେ ଧାରଣ ସେ ଯେ ପୁଣ୍ୟ ଇନ୍ଦୁ ।
ଦୁର୍ଗାହିଂ ସେ ତାପ ଦୁର୍ଗାହିଂ ସେ ତପ
ଦୁର୍ଗାହିଂ ସେ ପରମବ୍ରହ୍ମ ରୂପ ପରମ ରୂପ ।
ଦୁର୍ଗାହିଂ ସେ ଉତପତ୍ତି ଦୁର୍ଗାହିଂ ସେ ପରମ ଗତି
ଦୁର୍ଗାହିଂ ସେ ଭକ୍ଷନ୍ତ ଦୁର୍ଗାହିଂ ସେ ଶ୍ୟାନ୍ତ ମୂର୍ତ୍ତି ।
ଦୁର୍ଗାହିଂ ସେ କୁଟୁମ୍ବ ଦୁର୍ଗାହିଂ ସେ ସମସ୍ତ ବକ୍ର ରୂପ ଧରନ୍ତା
ଦୁର୍ଗାହିଂ ସେ ଚନ୍ତା ଦୁର୍ଗାହିଂ ସେ ଅଚନ୍ତା ।
ଦୁର୍ଗାହିଂ ସେ ଭୁକନ୍ଧ ଦୁର୍ଗାହିଂ ସେ ସର୍ବଗତି
ଦୁର୍ଗାହିଂ ସେ ପ୍ରସନ ଦୁସ୍ତରୁ ହୁଅଇ ଉଧର ।
ଜଳ ସ୍ଥଳ ଅନଳ ପବନ ପାଳ ଯେତୁ
ଆଦ୍ୟ ସମ୍ଭୂତ ଦେବ ଦୁର୍ଗାର ଜନ୍ମୁ ।
ଦୁର୍ଗାର ପ୍ରସନେ ସର୍ବଲୋକ ଜୀବନ୍ତ
ଦୁର୍ଗାହିଂ ସେ ଉତପତ୍ତି କରନ୍ତା ଦୁର୍ଗାହିଂ ସେ ଉଧରନ୍ତ ।
ଈଶ୍ୱରେ ବୋଇଲେ ମାଗୋ ତୁହି ସେ ସଦାନନ୍ଦ
ସୁର ସିଦ୍ଧ୍ୟ ମୁନି ଗୋ ଚରଣେ ତୋର ବନ୍ଦୀ ।
କ୍ଲେଶ ଜନଙ୍କୁ ତୋହୋର ଅକ୍ଲେଶ କରନ୍ତା
ବୁଡନ୍ତେ ଅଗାଧ ଜଳୁଂ ତୁହି ସେ ଉଧରନ୍ତା ।

ଶତ ସହସ୍ର ପ୍ରଣିପତ୍ୟ ହୋଇଲେ ଶୂଳପତି
ଦୁର୍ଗାହିଂ ସେ ତାରନ୍ତି ସକଳ ଜନଙ୍କ ଦୁର୍ଗତି ।
ଜନ୍ମ କର୍ମ ବିପକ୍ଷ ଅର୍ଦ୍ଧ ଅଙ୍ଗେ ବଇରି ବିନାଶି
ଦୁର୍ଗାର ସମ୍ପଦ ବିପଦ ଉଦାସୀ ।
ଦୁର୍ଗାହିଂ ସେ ବେଦମତି ସର୍ବଜନ ସଖା
ଦୁର୍ଗାହିଂ ବାକ୍ୟ ଅବଧାନ ତାରଣ ସହୋଦର ଶାଖା ॥
ଦୁର୍ଗାହିଂ ସେ ଆଇବି ଜୋତି ସିଦ୍ଧମୁନା
ଦୁର୍ଗାହିଂ ସେ ଅନେକ ବଚନ ବଜ୍ରସେନ୍ତ୍ର ।
ଦୁର୍ଗାହିଂ ସେ ଅଜପା ଜପା ଗାୟତ୍ରୀ
ଦୁର୍ଗାହିଂ ସେ ଯୋଗ କାଳ ରାତ୍ରୀ ।
ଦୁର୍ଗାହିଂ ସେ ଭଗତ ତାରେଣୀ ସର୍ବ କାଳେ
ବଦନ୍ତି ସାରୋଳ ଦାସ ଦୁର୍ଗାର ପଦ୍ମପାଦ ତଳେ ।

— ୫ ୦ ୫ —

**ଶୁଣ ହୋ ପରୀକ୍ଷ ରାଜା** ବଦନ୍ତି ଶୁକ ବ୍ରହ୍ମା
ଦୁର୍ଗାର ଶାସ୍ତ୍ର ହାଦେ ଏସନେକ ମହିମା ।
ପ୍ରାଣକୁ ଭଏ କରି ସେ ଦେବ ଶୋଡିଲେ
ନୃତ୍ୟ ଗୀତ କରି ଯେ ବାବନ୍ତି ପଞ୍ଚ ତାଳେ । ୪୩୭୦
ପ୍ରାଣର ଭଏ କରି ସେ କରୁଛନ୍ତି ନୃତ୍ୟ
ପ୍ରାଣ ରକ୍ଷା ନିମନ୍ତେ ସ୍ତୁତି କରୁଅଛନ୍ତି ଅପ୍ରମିତ ।
ବାଆନ୍ତି ସୁସର ସରଗୁଣା ମଧୁର ଅଧାଟି
ପିନାକୀ ସପ୍ତସର ବାବନ୍ତି କଣ୍ଠାଟି ।
ପ୍ରାଣ ରକ୍ଷା ନିମନ୍ତେ ଦଶ ନହି ମୁଖେ
ଏସନେକ ଅବସ୍ଥା ହୋଇଲେ ପ୍ରତକ୍ଷେ ।
ଅହୋ ପରୀକ୍ଷ ଈଶ୍ୱରଙ୍କ ଅବସ୍ଥା ଦେଖିଣ ଗୋସାମଣି
ଦୟା ବସିଲା ଦେବୀ ଦୁର୍ଗତି ତାରେଣୀ ।
ଦୁର୍ଗା ସହ୍ୟେଂ ବୋଇଲେ ହୋ କଲୁ ତୁହି ମୋତେ ବନ୍ଦୀ
ମାଗର ଜଟିଆ ବାଞ୍ଛା ତୋର ସିଦ୍ଧି ।
ଅହୋ ପ୍ରଣିପତ୍ୟ ହୋଇଂ ସେ ବୋଇଲେ ଦେବ କାଶୀ
ବିନା କପଟ ବର ଗୋ ହୁଅଇ ଉଦାସୀ ।
ଅନେକ ବିନୟରେ ରଞ୍ଜିଲୁ ମୋର ମନ
ମାଗରେ ଜଟିଆ ସତ୍ୟ ସତ୍ୟ ମୋହୋର ବଚନ ।

ଈଶ୍ୱରେ ବୋଇଲେ ମାତ ଗୋ ଏହେତେ ପୁଣ୍ୟ ମୋର ନାହିଁ
ପରମ ସାଧବୀ ମାଈ ଗୋ ମୋତେ ଜୀବନ ଦାନ ଦେଇ ।
ଶୁଣିଣ ଦୁର୍ଗା ଯେ ମସ୍ତକେ ଦେଲେ ହସ୍ତ
ଆହ୍ମଭନ୍ତ ଚିରଞ୍ଜୀବ ହୋଇବୁ ତୁ ସୁସ୍ଥ ।
ଶୁଣିଣ ବୋଇଲେ ଯେ ଦୁର୍ଗତି ତାରେଣୀ
ଆବର ଝୁଂ ବର ମାଗ ଦେବ ଏହିକ୍ଷଣି ।
ଈଶ୍ୱରେ ବୋଇଲେ ମାତ ଗୋ ମାଗିବି ଯେବେ ବର
ଏ ଦଗ ବଚନ ଗ୍ରୁତଟି ତୋହୋର ଶରୀର ।
ଦୁର୍ଗାଏ ବୋଇଲେ ଯେ ମୋହୋର ଦୃଢ ବ୍ରତ
ଜଳ ସ୍ଥଳ ପୃଥିବୀ ଜାଣନ୍ତି ସମସ୍ତ ।
ଆହେ। ପରୀକ୍ଷ ଦୀର୍ଘାୟୁଷ ହୋଇ ଯେ ବୋଇଲେ ଦେବରାଜ
ପ୍ରସନ ହୋଇଂ ଯେବେ ହୋଇବୁ ମୋହୋର ସ୍ୱରଜା ।
ବର ମାଗି ଈଶ୍ୱରେ ଯାଉଛନ୍ତି ଆଗ ବଢି
ରହ ରହ ଈଶ୍ୱର ବୋଲି ବୋଇଲେ ଦେବ ନାରୀ ।
ଦୁର୍ଗାର ବଚନ କରି ସେ ରହିଲେ ବିଶ୍ୱନାଥ
ଆନନ୍ଦେ ଦୁର୍ଗା ଯାଇ ଧଇଲେ ତାଙ୍କ ହସ୍ତ ।
ଶ୍ରୀ ଭୁବନେଶ ଜୟମାଳା ଦେଲେଶ କାନ୍ତାୟିନୀ
ଆନନ୍ଦେ ବରିଲେ ପ୍ରସନେ ଭବାନୀ ।
ଦୁର୍ଗାଏ ବୋଇଲେ ତୁହି ଉଲଗ୍ନ ମୁହିଂ ବିବସନ ଶାଙ୍ଖ
ପ୍ରଭୁ ଭାରଯା ପ୍ରାଏ ହୋଇଲେ ତୁହା ସ୍ନେହିଂ ।
ଆନନ୍ଦେ ସଦାଶିବ ଧଇଲେ ତାହାଙ୍କୁ ଯାଇ କୋଳେ
ଭୁବନେଶ ଭକ୍ତି ସେ ଗୁପିଲେ ବକସ୍ଥଳେ ।
ଜଟା ମେଲିଣ ସେ ଦେଲେ ଦେବରାଏ
ଅଦୃଶ ହୋଇଲ ସେ ଦେବୀଙ୍କର କାଏ ।
ଏକାମାନ୍ତ୍ର ଦଶିଲ ଚନ୍ଦ୍ର ବଦନ ଗୋଟି
ଭୁବନେଶ ଭଣ୍ଡଣି କୋଲ କଲେକ ଧୂର୍ଜଟୀ ।
ଆହେ। ପରୀକ୍ଷ ସେ ଯେ ହୋଇଲେ ସ୍ୱେକ ଯୋଗ
ନାରଦ କହିଲେ ସେ ପିତାମହଙ୍କର ଆଗ ।
ଉପାଏ ଜାଣିଲେ ସେ ଦେବ ପଶୁପତି
ନୃତ୍ୟ ଦେଖି ଦେବୀ ହୋଇଲେ ଶାନ୍ତ ମୂର୍ତ୍ତି ।
ଦୁର୍ଗାଏ ବୋଇଲେ ହୋ ବର ମାଗ ଧୂର୍ଜଟୀ
ଅନେକ ବନୋଇଂ ଯେ ବୋଇଲେ ଧୂର୍ଜଟୀ ।

ପୁଣ ପୁଣ ବର ମାଗ ବୋଇଲେ ଗିରିଜା
ଈଶ୍ୱର ବୋଇଲେ ତୁ ମୋହୋର ହୋଇବୁ ଭାରିଯା ।
ସତ୍ୟେଣ ମର୍ଚ୍ଛିଲେ ସେ ଯେ ଅଭଏ କାନ୍ତାମା
କୋଳେ ଧଇଲେ ସେ ଦେବୀ ଯେ ଭବାନୀ ।
ନାରଦ ବୋଇଲେ ଉମା ମହେଶ୍ୱର ଏକ ସ୍ଥାନେ
ଭ୍ରମନ କଲେ ଯାଇଂ ବୃନ୍ଦାର୍କମାନେ ।
ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ପବନ
ଆବର ବରୁଣ ସକଳ ଦେବ ଲୋକମାନ
ତେତିଶ କୋଟି ଦେବେ ଅନେକ ଆନନ୍ଦେ
ପ୍ରଣପତ୍ୟ ହେଲେ ଯାଇଂ ଆଦ୍ୟମାତା ପଦ୍ମପାଦେ ।
ବଞ୍ଚିଲୁ ଦୁର୍ଦ୍ଦାନ୍ତକ କଷ୍ଟ ତେ ହୋର ପରସନେ
ବସିଲୁ ସ୍ୱର୍ଗସ୍ଥାନେ ତୋହୋର ଆଗ୍ୟାଂ ପରମାଣେ ।
ଆହୋ ପକ୍ଷୀ ଶ୍ରୀକରେ ଅର୍ଗ ଘେନଣ ପିତାମହ
ଦୁର୍ଗାର ସନ୍ନିଧ୍ୟେ ଯାଇଂ ବିନଏ ସନ୍ଦେହ । ୪୪୦୧ ।
ଦୁର୍ଗା ବୋଇଲେ ବ୍ରହ୍ମେ ଶୁଣ ଦେବ ଧାତା
ମୋତେ ଅର୍ଘ୍ୟ ନଦିଅ ତୋତେ କହଇ ତତ୍ତ୍ୱକଥା ।
ଆହୋ ଜଳଫାଶୀ ଘେନ ସେ ମହିଷାସୁରକୁ ଗୁଡ଼ିଆଇଂ
ଆଣ୍ଠୋଷି ଉଚ୍ଛୁଡ଼ିଲା ସେ ଅସକନ୍ଦ ବନେ ଯାଇ ।
ଆହୋ ଦେବତାମାନେ ମୁଂ ହେଠବୁଡ଼ ହୋଇଥିଲି ସିନ୍ଧୁ ଜଳେ
ମହିଷାସୁରକୁ ଘେନ ମୁ ଲଟିଲି ଆସି କୂଳେ ।
ସମସ୍ତ ଦେବୀମାନେ କାହିଂ ପଢ଼ିଲେ କେହି ନାହିଂ ସାହା
ଶୂଳ ମାନ ମାଡ଼ି ବସିଛୁ ମୋହୋର ସହସ୍ର ବାହା ।
ତ୍ୟେ ମୋତେ ବୋଇଲ ଗୋ ଏ ରୂପ କର ତେଜା
ଏଣେ ବଧ ନୁହଇ ମହିଂଷାସୁର ଦନୁଯା ।
ଦାନବର ମରଣ କହିଲ ଯେ ମୋତେ
ହୋଇଲି ବିବସନ ମୁ ତହିଂର ସମନ୍ତେ ।
ଆହୋ ବହ୍ମା ଲୋକେ ବିମୁଖ ହୋଇଂ ଛୁଡ଼ିନ୍ତ ଲେଉଡ଼ି ମଏଷାଙ୍କୁ
ଅଦଭୁତେ ଏ ପ୍ରସନ ହୋଇଲାକ ମୂକୁ ।
ମୋତେ ଉଧାରଣ କଲ ଏ ଅଗାଦ ସାଗରୁ
ସେହି ଲୋକଜନଙ୍କର ଏ ଅପାର ଦୁଃଖ ହରୁ ।
ଆହୋ ପକ୍ଷୀ ଦୁର୍ଗାର ଆଗ୍ୟାଂ ପ୍ରମାଣେ
ଉଦ୍ଧବେ ବନ୍ଦୋଇଲେ ଦୁର୍ଗାର ପଦ୍ମ ଚରଣେ ॥

ନମସ୍ତେ କାନ୍ତାନୀ ଗୋ ଦଧିମଙ୍ଗଳ ଯାର ରୂପ
ସଦା ସମ୍ପଦ ଗୋ ବୃଦ୍ଧିନ୍ତ ଅନରୂପ । ୪୪୧୦ ।
କୁଙ୍କୁମ ଜଳ ଜାଣି ଶରୀର ଆକର୍ଷଣୀ (ଅନ୍ଧସନୀ)
ସଦା ଅମୃତ ଦୃଷ୍ଟି ଯେ ଜଗୁଜନ ମୋହନୀ ।
ଯାହାର ମହିମା ଅକାଳ କାଳ ବଞ୍ଚା
ସୁବୁଦ୍ଧି ଶଙ୍ଖଳ ତାରଣୀ ଭବ ବାଞ୍ଛା ।
କାଳ ଅନଳ ଯେ ଏ ହାଦେ ଅପର୍ଣ୍ଣା
ଭାଗ୍ୟ ଅଭାଗ୍ୟ କରତା ସେ ଅଭେଦ ଅଭଏ ସେନ୍ହା ।
ଜାତ ଅନ୍ତ ମଧ୍ୟେଂ ତନ ବର୍ଣ୍ଣ ଅବକାର
ମହା ଜଏ ସଂପୂର୍ଣ୍ଣ ସେ ନାମ ଯାହାର ।
ଅହୋ ଦକ୍ଷ ଦୃଗାଙ୍କ ଅଗୋଚର ଯାହାର ଚରିତ
ମୂଢ଼ଂ କସ କ୍ଷେମ ହୋଇବ ମାନବ ଦେହେ ଜାତ ।
ଆହେ ପଣ୍ଡିତ ଜନେ ଧନ ସନ୍ତାନ ମନେ ବାଞ୍ଛା
ଆରୋଗ୍ୟ ଆପାଦ ଖଣ୍ଡଇ ସର୍ବ ମଙ୍ଗଳ ବାଞ୍ଛା ।
ହେ ବୁଧ ଜନେ ଆଶିନ୍ୟ ମାସ ଶୁକଳ ପକ୍ଷ ଅଷ୍ଟମୀର ଦନ
ଭୃଗୁ ବାର ଉତ୍ତରଷାଢ଼ା ନକ୍ଷତ୍ର ପୁଣ୍ୟମାନ ।
ରାତକୁ ସୌଭାଗ୍ୟ ନବମୀ ଗୁରୁବାର
ରାତ ଅର୍ଦ୍ଧେ ବିଜେ କଲେ ରତ୍ନଗିର ଉପର ।
କୃଷ୍ଣ ଅଷ୍ଟମୀ ଦନ ଚଣ୍ଡ ମୁଣ୍ଡ ନାଶଗଲ
ଷୋଳ ଦନ ପର୍ଯ୍ୟନ୍ତେ ସେ ସମର ହୋଇଲା ।
ଆହେ କୋଟିଏ କୋଟି ବଳ ଯେ ମହିଷାସୁର ବଳ
ପନ୍ଦର ଦନ ଯୁଦ୍ଧରେ ପଡ଼ିଲେ ସକଳ । ୪୪୨୦ ।
ଆଶ୍ୱିନ ଶୁକ୍ଳ ନବମୀ ଦନ ହୋଇଲା ମହାମାରୁ
ଉଦ୍ଧାର ହୋଇଲ ଅସୁର ଅସୁଖ ଆଦ କରୁ ।
ସେହୁ ରାଜ୍ୟ ମହାମାରୁ ଯେ ହୋଇଲ
ତେଣୁ ମହାନବମୀ ବୋଲି ନାମ ଯେ ବହିଲ ।
ଏହୁ ଶୁକଳ ଯେ ଦଶମୀର ଦନ
ବୃହସ୍ପତି ବାର ଶ୍ରବଣା ନକ୍ଷତ୍ର ସେ ପୂର୍ଣ୍ଣ ।
ତଉଲ୍ୟ ନାମେ କରଣ ଶ୍ରୀଢ ନାମେ ଯୋଗେ
ଈଶ୍ୱର ଦେବତାଙ୍କ କୋଳେ ବସିଲେ ଦେବୀ ଦୁର୍ଗେ ।
ସର୍ବ ଶୁଭ ହୋଇଲା ସେ ଦଶମୀର ତିଥି
ସର୍ବ ଶୁଭ ଯୋଗେଣ ସେ ଏଥୁ ଉତପତ୍ତି ।

ଯାଗ୍ୟରୁ ଜନ୍ମ କୁମାରେକ ଉହ୍ନାଇଲା
ତେଣୁ କରି ଶୁକ ମୁନି ଜନ୍ମଜନ୍ମେ ନାମ ଦେଲା ।
ଆହୋ ବଡ଼ଚନ୍ଦ୍ର ସୋମ ବଂଶ ଉଧରିଲା ଶାସ୍ତ୍ର ବଳେ
ଧ୍ରୁବ ଲଭ କରେ ଶ୍ରୀ ଚଣ୍ଡିକା ଶାସ୍ତ୍ର ଶୁଣିଲେ ।
ଅନେକ ଆନନ୍ଦ ସେ ପରୀକ୍ଷ ମହାରାଜା
ଶୁକମୁନି ପାଦ ତଳେ ସେ କଲାକ ଅନେକ ପୂଜା ।
ବସନ କୁଣ୍ଡଳ ରତ୍ନମାଳା ଧୂପ ଦୀପ
ଦେଇଂ ସହସ୍ର ଦଣ୍ଡବତ ହୋଇଲା ପ୍ରଣପତ୍ୟ ।
ପଞ୍ଚ କୋଟି ରତ୍ନ ପାନେଣ ଭରି
କରଇ ପାଦ ପୂଜା ସେ ପରୀକ୍ଷ ଦଣ୍ଡଧାରୀ । ୪୪୩୦ ।
ହେ ପଣ୍ଡିତ ଜନେ ଯେହୁ ଚଣ୍ଡୀ ସେ ଆପନ କରନ୍ତି ଦେବତାଏ
ଶୁଣନ୍ତି ଧନ ଜନ ସମ୍ପଦ ଅର୍ଥ ସେ ଯେ ପାଏ ।
ସିଦ ଅବା ପାତକ ଥାଇଂ ତାହାର ଶରୀରେ
ଯେସନେକେ ପଦ୍ମ ପତ୍ରେ ନ ଲାଗଇ ନୀରେ ।
ଅନେକ ଜନ୍ମର ପାପ କ୍ଷଏ ଯାଇ
ଧନ ଜନ ସମ୍ପଦ ସେ ଦିଅନ୍ତି ମହାମାଇ ।
ଶତ୍ରୁକୁ ଯେବଣ ଜନ କ୍ଷେମା କରଇଟି ରଣେ
ଏକ ଲଏ କରି ହୋ ଚଣ୍ଡିକା ଶାସ୍ତ୍ର ଶୁଣେ ।
ରାଜ ଦଣ୍ଡ ଯବ ପଡ଼ିବାକ ଭଏ
ସମସ୍ତ ବାଞ୍ଛା ସିଦ୍ଧ ହୋଅଇ ନିର୍ମଳ ହୋଅଇ କାଏ ।
ଯେବଣ ଜନଙ୍କର ହୋ ନାହିଁଟି ସନ୍ତାନ
ଚଣ୍ଡିକା ଶାସ୍ତ୍ର ଶୁଣିଲେ ହୁଅଇ ବର୍ଦ୍ଧମାନ ।
ଅଥବା ଉତପାତ ମନେଣ ଯାହାର ଭ୍ରାନ୍ତି
ଏ ଶାହାସ୍ତ୍ର ଶୁଣନ୍ତେ ଏ ଉତପାତ ହୁଅଇ ବିନମ୍ୟତ ।
ବ୍ରହ୍ମା ସେ ଧ୍ୟାଏ କରଇ ଯାହାର ନାମ
ମୁହିଂ ତାହା ସଞ୍ଚି କହିବାକୁ କିସ ହୋଇବି ଯେ କ୍ଷେମ ।
କୃପାଜଳ ନାମେଣ ଥିଲା ଶୁଣ ମୁନି ବ୍ରହ୍ମା
ସେ ଅନ୍ତ କରି ନ ପାରଇ ଯେବଣ ଦେବୀର ମହିମା ।
ରେଣୁକା ନନ୍ଦନ ପ୍ରଶୁରାମ ସେ ଯାହାକୁ କରନ୍ତି ପୂଜା
କ୍ରୋଧରେ ତର୍ପଣ କରି ସେ ତୋଷିଲା ଗିରିଜା । ୪୪୪୦ ।
ଭରତ ଖଣ୍ଡ ମଣ୍ଡଳେ ଯେବଣ ଯକ୍ଷେରପୁର ବାସୀ
ଇହ ହସ୍ତରେ ପର ହସ୍ତରେ ଯେ କଳିକାଳ ଧ୍ୱଂସି ।

ମନୁ ଅନ୍ତ ବଞ୍ଚାଇଲା ଯେବଣ ଦେବୀର ଲଏ
ସେ ଦେବୀର ପ୍ରସନେ ମୋହୋର ହୋଇଲା ଗ୍ୟାନମଏ ।
ଜନ୍ମେ ଜନ୍ମେ ଦାସ ମୁ ଦେବୀର ପଦ୍ମପାଦେ
ନ ପଢ଼ି ପଣ୍ଡିତ ମୁହିଂ ସେ ଦେବୀର ପରସାଦେ ।
ନ ଜାଣଇ ଜପ ମନ୍ତ୍ର ବର ତପ କଥା
ଶ୍ରୀ ଚଣ୍ଡୀ ଶାରେଲା ମୋତେ ଅଭଏ ବର ଦାତା ।
ସେହୁ ମୋତେ ଯାହା କହଇ ବିଦ୍ୟମାନେ
ମୁହିଂ ତାହା ବଞ୍ଚାଇଲି ଦ୍ରବ୍ୟ ଯେ ଲେଖନେ ।
ହେ ବୁଧ ଜନେ ନ ଧରିବା ମୋହୋର ଯେ ଦୋଷ
ବହୁତ ଜନ ବାକ୍ୟେ ମୋହୋର ବୁଦ୍ଧି କସ ।
ଶ୍ରୀ ଶାରେଲା ଚଣ୍ଡୀ ଚରଣେ ନିତ୍ୟେ ସେବି
ବଦାଯୁନ୍ତ ଶୂଦ୍ରମୁନି ସାରେଲ ଦାସ କବି । ୪୪୫୦ ।



## ଶ୍ରୀ ଚଣ୍ଡୀ ଯୁଧ୍ୟ ମହାପୁରାଣେ ସଦାଜଏ ସମ୍ପୂର୍ଣ୍ଣ

# ଶୁଦ୍ଧିପତ୍ର

| ପୃ | ଅଶୁଦ୍ଧ | ଶୁଦ୍ଧ |
|---|---|---|
| ୨ । | ସ୍ୱଭାଗ୍ୟକାର | ସୌଭାଗ୍ୟକର |
| ୩ । | ଅନ୍ତର୍ଜାଳେ | ଅନ୍ତର୍କଲେ |
| ୪ । | ବରେଧିଲ | ବସେଧିଲ |
| | ଗାଠିଏ | ଷାଠିଏ |
| | ଢୋହ୍ୱଡା | ଦୋହ୍ୱଡା |
| | ଅଟନ୍ତି | ଅଂଶେ |
| | ଗହ୍ୱନ | ଗହ୍ୱନ |
| | ଯଷ୍ଟ | ନଢ |
| | ବଡ଼ିନ୍ତ | ବଢ଼ନ୍ତି |
| ୭ । | ପଳାଇ ହେ | ପଳାଇଲେ |
| ୮ । | ଶଶ୍ୱର | ଶଶ୍ୱର |
| | କଣାସ୍ତୁ | କହନ୍ତୁ |
| ୯ । | ହୋଏ ଦେଖି | ହୋଏ ପୁଣି ଦେଖି |
| | ଧର୍ମରଙ୍ଗା | ଧର୍ମରେଖା |
| ୧୦ । | ରହିଲ | ରହିଲ |
| | ମହ୍ୱଷ୍ଟାସଂଘ | ମହ୍ୱଷ୍ଟା ସିଂଘ |
| | ଭନ୍ତ୍ର | ରୁଦ୍ର |
| ୧୧ । | ସମ୍ଭୁପେତ | ସମବେତ |
| ୧୩ । | ଆଗ୍ରି ହେ ସେ | ଆଗ୍ରିହ ସେ |
| | ଉପ୍ରରେ | ଉପରେ |
| | କ୍ରୁଷ୍ଟିଣ | ବେଗେଣ |
| ୧୪ । | ବନ୍ଧୁନ୍ତା | ବହନ୍ତା |
| ୧୬ । | ରୃପ | ଋଷି |
| ୧୭ । | କେଳାଳ | ବେମାଳ |

| | | |
|---|---|---|
| ୧୮ । | କେହ୍ବ କେହ୍ଵ | କେହ୍ୱ |
| | ବିଜାଏ | ବିଜଏ |
| ୨୦ । | କୋକ୍ରେକ | କୋନ୍ତ୍ରେ |
| ୨୩ । | ଘକର | ଘକାର |
| ୨୫ । | ବାହୁଦ୍ଧ | ବାହୁଡ଼ି |
| ୨୮ । | ଆଗମେ | ଆଗମ |
| | ଆଗେ | ପାଶେ |
| ୨୯ । | ମୋଢେ | ମୋତେ |
| ୩୦ । | ପେଷିବ | ପେଷିବ |
| | ଉଚ୍ଛୁଳ | ଉଚ୍ଛୁଳି |
| ୩୨ । | ରଣେ | ରଣ |
| | ମଧ୍ୟେ | ମଧ୍ୟେ |
| ୩୪ । | ଦୁହିଁନ୍ତ | ଦୁହିଁନ୍ତ |
| | ମମସ୍ତ | ସମସ୍ତ |
| | ଧାଗ | ଦାଗ |
| ୩୫ । | ପଶ୍ଚିମ | ଦକ୍ଷିଣ |
| ୪୧ । | ପ୍ରଦ୍ଧପବା | ପ୍ରଦ୍ଧପଦା |
| ୪୪ । | ପିକାର | ପିତାର |
| | ଏଠେ | ଏତ |
| ୫୧ । | ଲ୍ଘେଲେ | ଲଂଘିଲେ |
| | ହୋଇଲ | ହୋଇଲା |
| | ସଖି | ସଖା |
| ୫୪ । | ଜାହା | ତାହା |
| ୫୫ । | ପାବତଳେ | ପାଦତଳେ |
| | ଧ୍ବଂସନେ | ଧ୍ୱଂସନେ |
| ୫୭ । | ଏଦ୍ବେନ୍ଦ୍ର | ଏଦ୍ୱେନ୍ଦ୍ର |
| ୫୮ । | ଆଇମ୍ପ | ଆଇଷ୍ୟ |
| | ଯେତେକ | ସେତେକ |
| | ଛଢ଼ମାସ | ଛଡ଼ମାସ |
| | ଅସି | ଆସି |
| ୫୯ । | ବସିଲେ | ପଶିଲେ |

| | | |
|---|---|---|
| ୬୧ । | ଶାଖାସୁର | ଶାଖାପୁର |
| ୬୩ । | ମେ | ସେ |
| ୬୪ । | ଜୀବ | ଯିବ |
| ୬୭ । | ନୋହର | ଲୋହାର |
| ୬୮ । | କାନ୍ତମାଳ | କାନ୍ତମାଳା |
| | ବସାଇଣୁ | ବସାଇଣ |
| | ଲେହ | ଲେହା |
| | ବ୍ରଜ | ବଜ୍ର |
| ୬୯ । | ଦଇଢ଼ | ଦଇତ |
| ୭୦ । | ନିହାଇଁ | ଲିହଇଁ |
| ୭୧ । | ବତନ | ବଚନ |
| ୭୨ । | ମନ୍ତୁ | ମନ୍ତ୍ର |
| | ତୋହର | ମୋହର |
| ୮୮ । | ରୁନ୍ଧିଲେ | ଗୃନ୍ଧିଲେ |
| ୯୬ । | ସାନ | ସାମାନ୍ତ |
| ୧୦୦ । | ତାହ | ତାହା |
| | ପରେ | ରୂପରେ |
| | ଦେହିଲେ | ଦାହିଲେ |
| ୧୦୪ । | ଭୃପୁହ | ଭୃଗୁହ |
| | ପଶୁ | ପ୍ରଶୁ |
| | ପଳଫାଶି | କାଳଫାଶି |
| | ଚେଲେ | ଦେଲେ |
| ୧୦୫ । | ଦେଦ | ବେଦ |
| ୧୧୬ । | ଯେବେଣ | ଯେବଣ |
| ୧୧୭ । | ଗାରଣେ | କାରଣେ |
| | ନାଖ୍ୟସ | ନାରାୟଣ |
| ୧୨୦ । | ଭୂମି | ଭୂମି |
| | କୃତ | କୃତ୍ୟ |
| ୧୧୯ । | ତାହାର | ମୋହର |
| ୧୨୦ । | ଭ୍ରବଣେ | ଶ୍ରବଣେ |
| | ହୋଙ୍ଗବୁ | ହୋଇବୁ |

| | | |
|---|---|---|
| | ଚଳନ | ଚଳନ୍ତ |
| | ଦଣ୍ଡେ | ଦଣ୍ଡ |
| | ଯେତେନ୍ତ | ଯେତେହେ |
| ୧୨୧ । | ରୂପଲ | ରୂପିଲ |
| | କାଲେ | କଲେ |
| ୧୨୩ । | ଅଶୋରନ୍ତେ | ଅଶୋଭନ୍ତେ |
| | ଶୋଖରର | ଶୋଭକର |
| ୧୨୪ । | ବଳସ | କଳସ |
| | ଶ୍ରେଷ୍ଠ | ଶ୍ରେଷ |
| ୧୨୫ । | ଜଭତ | ଜଗତ |
| ୧୨୬ । | ତାହାଙ୍କ | ତାହାର |
| | ଲିଙ୍ଗ | ଲିଙ୍ଗ |
| | ତେଜନ | ଦେନ |
| ୧୨୭ । | ବୋଲେ | ବୋଲେ |
| ୧୨୮ । | ବଢ଼ାଇହେ | ବଢ଼ାଇଲେ |
| | ଧାହାନ୍ତି | ପାଦାନ୍ତି |
| ୧୨୯ । | ଘାର | ଘଣ୍ଡି |
| | ଗଡ଼ିଲ | ପଢ଼ିଲ |
| | କାମ | କାମ |
| | ମାମ | ମମ |
| | ଅକାଳିତ | ଅକଳିତ |
| | ଦେ | କେ |
| | ଏକେଣେକବଚନ ସଙ୍କେତ | |
| | ଗୁଣବନ୍ତୀ | ଅଧିକାପଦ |
| ୧୩୦ । | କନ୍ୟାଏ | କନ୍ୟାଏ |
| ୧୩୧ । | ରମ୍ଭଙ୍କୁ | ଆମ୍ଭଙ୍କୁ |
| | ହୃଦ | ବହୁଢ |
| | ଭନେସି | ଉନେସି |
| ୧୩୨ । | କୁଥିବାଳି | ପୃଷ୍ଠବାକି |
| ୧୩୪ । | ହାବେ | ହାଦେ |
| ୧୩୭ । | ସଂକେତନେ | ସଂକେତନେ |

| | | |
|---|---|---|
| | ମୁଁ କର | ମୁକନ୍ଦ |
| ୧୩୮ । | ନକାଲ | ବକାଲ |
| | ରୁଢ଼ାଇଲୁ | ବୁଢ଼ାଇଲୁ |
| | ଏଙ୍ଖ ମମନ୍ତ୍ର | ଏହ୍ମ ମନ୍ତ୍ରେ |
| ୧୩୮ । | ନୃପକ୍ଷଣି | ନୃପମଣି |
| | ମ୍ଭ | ମୁଁ |
| ୧୩୯ । | ଶନୃଗିର | ଭନୃଗିର |
| ୧୪୦ । | ପ୍ରଷ୍ଠପା ଳ | ପ୍ରଷ୍ଠପାଲ |
| | ଚିହ୍ନଙ୍କର | ତାହାଙ୍କର |
| ୧୪୧ । | ଭାହ୍ନଙ୍କର | ତାହାଙ୍କର |
| | ତାଉ | ତାର |
| ୧୪୩ । | ଢେଢ଼ଇଁ | ଡେଢ଼ଇଁ |
| | କର୍ମିଲ | କର୍ମିଲ |
| ୧୪୫ । | ଅର୍ଦ୍ଧାବଳି | ଆର୍ଦ୍ଧାବଳି |
| | ଶବ୍କରୁ | ଶବଦ୍‌ରୁ |
| ୧୪୬ । | ଶ୍ୱଗ୍ରରୁ | ଶ୍ୱଶ୍ରରୁ |
| ୧୪୭ । | ଏଙ୍କେଣ | ଏକତା |
| | ଢେବଙ୍କୁ | ଦେବଙ୍କୁ |
| | ଭଟ୍ଟ | ଭଟ୍ଟ |
| ୧୪୯ । | ନାହେଶ୍ୱରୀ | ମାହେଶ୍ୱରୀ |
| ୧୫୨ । | ମିଧେବୀ | ମାଧେବୀ |
| | ଗୃପଲ୍ଲ | ଗୃପିଲ୍ଲ |
| ୧୫୩ । | କେଦଣ୍ଡ | କୋଦଣ୍ଡ |
| ୧୫୪ । | ରପରକୁ | ଉପରକୁ |
| ୧୫୫ । | ବାଳ | କାଳ |
| | କାଙ୍କାଳି | କଙ୍କାଳି |
| ୧୫୬ । | ସଂଯବଙ୍କା | ସଂଯମନୀ |
| | ମନ ମନ | ମନ |
| | କାନ୍ତମାଳ | କାନ୍ତମାଳା |
| ୧୫୭ । | ସାଗରୁ | ସାଗରୁ |
| | ବୋଲଲେ | ବୋଇଲେ |

| | | |
|---|---|---|
| ୧୫୮ । | ଢେବଢା | ଦେବଢା |
| ୧୫୯ । | ସାଦ୍ଧେ'ାଲେ | ଯୋଚ |
| | ଦେର୍ଢିବ | ଦୋର୍ହଣ |
| | କଣ୍ଠ | କର୍ଣ୍ଣ |
| ୧୬୦ । | ତୁଣ | ତୂଣ୍ |
| | ଗାଞ୍ଜି | ଗାଜି |
| ୧୬୧ । | ମଞ୍ଜୁଳ | ବଞ୍ଜୁଳ |
| | ଭଲ | ବାଲ |
| | କୋଠର | କୋଠାର |
| | କାନେବେ | ଦାନେବେ |
| | ହ୍ରାକନ୍ତ | ହ୍ରାକନ୍ତ |
| ୧୬୨ । | କଳି | କଳୀ |
| | ବନ୍ଧଘ | ବନ୍ଧଇ |
| ୧୬୪ । | ଅନେଜ | ଅନେକ |
| ୧୬୫ । | କନ୍ଧବ | କନ୍ଧବ |
| ୧୬୭ । | କେବ | ଦେବ |
| | ଭୂ | ଭୂମି |
| ୧୬୮ । | ନଶାଣିକେ | ବିଶାଣତେ |
| | ଶାଙ୍ଗର | ଖାଙ୍ଗର |
| ୧୬୯ । | ଉକନ୍ତ | ଓାକନ୍ତ |
| | ଶବସ | ଧବସ |
| ୧୭୧ । | ହୋଦଲ | ହୋଇଲ |
| ୧୭୫ । | ସୂଯ | ସୂର୍ଯ୍ୟ |
| | ବିଲୋଚନ | ଦେ ଲୋଚନ |
| ୧୭୬ । | ଦୁହାଗ୍ନି | ଗୁହାଗ୍ନି |
| ୧୭୭ । | ଅଡସ୍ଥା | ଅବସ୍ଥା |
| | କଲି | କଲି |
| ୧୭୮ । | ସଂଘାତ | ଘାତ |
| | କହିଲ | କହିଲ |
| | ମହେଶ୍ୱର | ମହେଶ୍ୱର |
| ୧୭୯ । | ସାଥ | ମାଥ |

| | | |
|---|---|---|
| | ଭକ୍ରୁଣି | ଭ୍ରକୁଟୀ |
| ୧୮୦ । | ପଢଇ | ପଡ଼ଇ |
| ୧୮୧ । | ଲେନ୍ଦ୍ରାସୁର | ଲେହ୍ଵାସୁର |
| ୮୨ । | ଶତ୍ତ୍ରିମନୁ | ଶାତମନୁ |
| ୧୮୪ । | ମବାତେଜ | ମହାତେଜ |
| ୧୯୬ । | ରହ୍ଳ | ରହ୍ଲ |
| ୨୦୧ । | ମାଢ | ମାଡ |
| | ଅଭ୍ରଏ | ଅଭଏ |
| ୨୦୬ । | ଦେଷ୍ଟିରେ | ଦେଖିଲେ |
| ୨୦୭ । | ଗର୍ତ୍ତେ | ଗାଜେ |
| | ପ୍ରଢ | ପ୍ରୀତ |
| ୨୦୯ । | ଯୋକନେ | ଯୋଜନେ |
| ୨୧୦ । | ମସ୍ୱାକ୍ଷ | ପଦ୍ମାକ୍ଷ |
| ୨୧୧ । | ତୂଲ୍ଲେଣ | ତୂଲେଣ |
| ୨୧୨ । | ମହ୍ଵାଲନ | ମହ୍ଵାବଲୀ |
| ୨୧୪ । | ପଡ଼ନ୍ତେ | ପଢନ୍ତେ |
| ୨୧୭ । | ହେଇଲୁ | ହୋଇଲୁ |
| | ପଗୃଶୁଣି | ପିଗୃଶୁଣି |
| | ହୋଡ | ଯୋଡ଼ |
| | ମଢା | ମଡ଼ା |
| ୨୧୯ । | ନହ୍ନି | ନାହ୍ନି |
| ୨୨୦ । | ଷାଠେଏ | ଷାଠିଏ |
| | ମରଢ | ମୃରଢ |
| ୨୨୪ । | ପାଦ | ପଦ |
| ୨୨୮ । | ଦାଦ୍ଵବ | ଦାନବ |
| ୨୨୯ । | ଜନ୍ୟା | କନ୍ୟା |
| ୨୩୦ । | ବଗୃର | ବଗୃର |
| | ପଗ୍ରାକ୍ଷ | ପଦ୍ମାକ୍ଷ |
| | ବାକ୍ୟେ | ବାକ୍ୟ |
| ୨୩୨ । | କଡ଼ା | କଢ଼ା |
| | ମାଗେ | ମାଗୋ |

| | | |
|---|---|---|
| ୧୩୪ । | ପାଦ୍ୱପଦ୍ମେ | ପାଦପଦ୍ମ |
| ୧୩୭ । | ମଏଁଷ | ମଏଂଷା |
| ୧୩୮ । | ଦ୍ରବ | ଦ୍ରୁଷ |
| ୧୪୦ । | ସନଲ | ସକଲ |
| ୧୪୧ । | ମୂର୍ଦ୍ଧି | ମୂର୍ଦ୍ଧଁ |
| ୧୪୩ । | ଭୂନନେ | ଭୁବନେ |
| | ଥାଲି | ଥିଲେ |
| | ଉଗ୍ରଚାର | ଉଗ୍ରଚାର |
| ୧୪୪ । | ହ୍ୱାଥିଲେ | ହାଣିଲେ |
| ୧୪୭ । | ମଢଗ | ମଦର |
| ୧୪୮ । | ଭକ୍ଷୁ | ଭକ୍ଷ୍ୟ |
| ୧୫୪ । | ଫଣଜଳି | ପରିଜଳି |
| | ମହ୍ୱଷାସୁର | ମହିଷାସୁର |
| ୧୫୫ । | ଶେକ | ଶୋକ |
| ୧୫୯ । | ଜାଣେଣ | ଜାଣିଣ |
| ୧୬୩ । | କନ୍ଧୁ | ବନ୍ଧୁ' |
| ୧୬୫ । | ମେଘାଶଭେଦ | ମେଘାଶରେକ |
| ୧୭୩ । | ଭ୍ରମ | ଭବ |
| ୧୮୪ । | ବଡ଼ନ୍ତେ | ବୃଡ଼ନ୍ତେ |
| | କର୍ଦ୍ଧମାନ | ବର୍ଦ୍ଧମାନ |